



# ଭଗବତୀ ସ୍ମରଣେ

ସେଇ
ମନ୍ତ୍ରର
ଦୁର୍ବାର
ଶକ୍ତିରେ ...

ଭଗବତୀ ଜନ୍ମ ଶତବାର୍ଷିକୀ କମିଟି



## ଭଗବତୀ ଚରଣ ପାଣିଗ୍ରାହୀଙ୍କର
## ଜନ୍ମ ଶତବାର୍ଷିକୀରେ ଶ୍ରଦ୍ଧା ନିବେଦନ

# ଭଗବତୀ ସ୍ମରଣେ



୨୦୦୮ ଫେବୃୟାରୀ ୧ ତାରିଖ

ସଂପାଦନା ମଣ୍ଡଳୀ :

ଶ୍ରୀ ଅବନୀ କୁମାର ବରାଳ

ଶ୍ରୀ ପ୍ରଦୋଷ ପଟ୍ଟନାୟକ

ଶ୍ରୀ ଅମରେଶ ପଟ୍ଟନାୟକ

ଶ୍ରୀ ରାମକୃଷ୍ଣ ପଣ୍ଡା





# ଆମ କଥା......

ସାଥୀ ଭଗବତୀ ଥିଲେ ଏକ ଚଳମାନ ସ୍ଫୁଲିଙ୍ଗ । ଆଲୋକବର୍ତ୍ତିକା, ସ୍ଫୁଲିଙ୍ଗ ପରି ସ୍ୱଳ୍ପକାଳର ଜୀବନ ଭିତରେ ଚିନ୍ତା ଚେତନା, କର୍ମରେ, ସୃଷ୍ଟି ଓ ସାଧନାରେ ସେ କେବଳ ସାରା ପ୍ରଦେଶ, ଦେଶକୁ ଉଦ୍‌ଭାସିତ କରିନାହାନ୍ତି, ସମସାମୟିକ ଯୁବଶକ୍ତିକୁ କର୍ମପ୍ରେରଣାରେ, ଦିଗ୍‌ଦର୍ଶନରେ ପ୍ରଚୋଦିତ କରିଛନ୍ତି, ପ୍ରେରଣା ଦେଇଛନ୍ତି; ସବୁ ବାଧା ବନ୍ଧକୁ ପ୍ରଗତି ଓ ପରିବର୍ତ୍ତନର ଧାରାକୁ ଗତିଶୀଳ କରିବାକୁ - ପ୍ରଖରତର କରିବାକୁ । ଜଡତାକୁ ଭାଙ୍ଗିବାକୁ ଏବଂ ପ୍ରଦେଶ, ଦେଶକୁ ଅତିକ୍ରମ କରି ଆନ୍ତର୍ଜାତୀୟତାବାଦର ଚିନ୍ତନ ଅନୁରଣିତ କରିବାକୁ ।

ସାଥୀ ଭଗବତୀଙ୍କର ଜୀବନର ପରିଧୀ ଅତି ସ୍ୱଳ୍ପ ଓ ସୀମିତ । ୧୯୦୮ ମସିହା ଫେବୃଆରୀ ପହିଲାରେ ସେ ଭୂମିଷ୍ଠ ହୁଅନ୍ତି ଏବଂ ତାଙ୍କର ତିରୋଧାନ ହୁଏ ୧୯୪୩ ମସିହା ଅକ୍ଟୋବର ୨୩ ତାରିଖ ସକାଳେ । ୩୪/୩୫ ବର୍ଷର ଆୟୁ ମଧ୍ୟରେ ମାତ୍ର ୯/୧୦ ବର୍ଷ ସମୟ କାଳ ତାଙ୍କର କର୍ମମୟ ଜୀବନର ବ୍ୟାପ୍ତି । ସେଥି ଭିତରୁ ଦେଢ /ଦୁଇବର୍ଷ କାରାବାସ ।

ମାର୍କ୍ସବାଦ-ଲେନିନ୍‌ବାଦର ଅଧ୍ୟୟନ ଓ ଚେତନା ଭଗବତୀଙ୍କ ମଧ୍ୟରେ ନବ ରୂପାନ୍ତର ସଂଘଟିତ କରିଥିଲା । ସମାଜର ପରିବର୍ତ୍ତନର ପଥ ଖୋଜୁଥିବା ଭଗବତୀ, ଅତି ସହଜରେ ତାଙ୍କର ସମଯୋଦ୍ଧା ସାଥୀ ଗୁରୁଚରଣ ପଟ୍ଟନାୟକ ଓ ସାଥୀ ପ୍ରାଣନାଥ ପଟ୍ଟନାୟକଙ୍କ ସହିତ ଯାଇ କଲିକତାରେ ଗୋପନୀୟ କମ୍ୟୁନିଷ୍ଟ ପାର୍ଟିର ସଭ୍ୟପଦ ନେଇଥିଲେ । ନବକୃଷ୍ଣ ଚୌଧୁରୀଙ୍କ ସହିତ ମିଳିମିଶି, ଚିନ୍ତାରାଜ୍ୟରେ ଆଲୋକ ଆଣିବା ପାଇଁ ପ୍ରକାଶ ପାଉଥିବା 'ସାରଥୀ'ରୁ, ପରବର୍ତ୍ତୀ କାଳରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ମୁଖପତ୍ର 'କୃଷକ' ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନର ଲିଫ୍‌ଲେଟ୍ ପରି ପତ୍ର 'ରଣଭେରୀ' 'ଆଗେଚାଲ' ଆଦି ନବଯୁଗ ସାହିତ୍ୟ ସଂସଦର ମୁଖପତ୍ର 'ଆଧୁନିକ'ରେ ରୂପାନ୍ତରିତ ହୋଇଛି ।

'ଛାତ୍ରସଂଗଠନ', 'ଯୁବସଂଗଠନ', 'ସାହିତ୍ୟ ସଂଗଠନ', 'କୃଷକ ସଂଗଠନ' ଗଡଜାତ ପ୍ରଜାମଣ୍ଡଳର ସଂଗଠନ ଓ ଲଢେଇ, କୃଷକଙ୍କର ରାଜା-ଜମିଦାର ଅତ୍ୟାଚାର-ଶୋଷଣ ବିରୁଦ୍ଧରେ ଲଢେଇ, ସବୁଥିରେ ଭଗବତୀଙ୍କର ଚିନ୍ତନ ଓ ଆଦର୍ଶ ତାଙ୍କ ସମଯୋଦ୍ଧାମାନଙ୍କ ସହଯୋଗୀତାରେ, ସାରା ପ୍ରଦେଶରେ ଯଥାର୍ଥରେ ସ୍ଫୁଲିଙ୍ଗର ଅଗ୍ନିକଣାପରି ବିଚ୍ଛୁରିତ ହୋଇଛି । ଭଗବତୀ ଆଉ ପଛକୁ ଫେରି ଚାହିଁ ନାହାନ୍ତି - ଆଗକୁ ଆଗକୁ ଯିବାକୁ ଦିଗ ନିର୍ଦ୍ଦେଶ କରିଛନ୍ତି - ଆଗେଇଛନ୍ତି ।

ଚିନ୍ତନ - ସଂଗଠନ - ପାର୍ଟି ଓ ସାହିତ୍ୟ ହୋଇଛି ତାଙ୍କର ଶାଣିତ ହତିଆର ।

ସେ ହତିଆର ସେ ଆମ ହାତକୁ ଯୁଝିବା ପାଇଁ, ବୁଝିବା ପାଇଁ, ଆଗେଇବା ପାଇଁ, ସମାଜରୁ ପ୍ରତିକ୍ରିୟାକୁ ଜଗତ କ୍ଷେତ୍ରରେ ପୁଞ୍ଜିବାଦକୁ ମଣିଷର ମଣିଷ ଉପରେ ଶୋଷଣକୁ ନିପାତ୍ କରିବାପାଇଁ ଟେକିଦେଇଛନ୍ତି । ଆଉ ଆମ ହାତକୁ ଟେକି ଦେଇଚନ୍ତି, ସେ ଉଠାଇଥିବା ଅଗଣନ ମଣିଷଙ୍କର ଲହୁରେ ଲାଲ୍ ହୋଇଥିବା କୃଷକ-ଶ୍ରମିକର ପ୍ରତୀକ ଦା ହାତୁଡି ଲାଞ୍ଛିତ ରକ୍ତ ପତାକାକୁ ।

ସେ ଲାଲ ପତାକାକୁ ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱକୁ ଟେକିଧରିବା ପାଇଁ, ତାଙ୍କ ଚିନ୍ତନକୁ ସଂପ୍ରସାରିତ କରିବା ପାଇଁ ଓ ତାଙ୍କ ହତିଆରକୁ ଆହୁରି ଶାଣିତ କରି ଲଢିବାପାଇଁ ତାଙ୍କ ଦିଗ୍‌ନିର୍ଦ୍ଦେଶ ।

ଆମେ ଯେଉଁମାନେ ସାଥୀ ଭଗବତୀଙ୍କର, ଜନ୍ମର ଶତବର୍ଷରେ ଶତବାର୍ଷିକୀ ଜୟନ୍ତୀ ପାଳନ କରୁଛୁ, ସେମାନେ ବୁଝିବା ଲୋଡା ଯେ, ସାମ୍ରାଜ୍ୟବାଦ ନବରୂପରେ, ନୂଆ ଭେଲିକିରେ ଜଗତିକରଣ, ଉଦାରୀକରଣ ରୂପରେ ଶୋଷଣ - କଷଣ ଜାହିର ରଖିଛି - ଭଗବତୀଙ୍କର 'ଘିନୁଆ' ଆଜି ଗୋବିନ୍ଦ ସରଦାର ବିରୁଦ୍ଧରେ କେବଳ ନୁହେଁ, ତା'ଠାରୁ ଅସୀମ ବଳଶାଳୀ ଗୋବିନ୍ଦ ସରଦାର ପାଖରେ ତାର ଜମି-ଜଙ୍ଗଲ-ଜଳ ଭିଟାମାଟି ହରାଇ ବଣ - ଜଙ୍ଗଲରେ ଘୁରିବୁଲୁଛି । ଆଜି ବି ଝିଅବୋହୂଙ୍କ ଇଜ୍ଜତ ବିକ୍ରୀ ହେଉଛି ବଜାରରେ । ତା ଝିଅ - ବୋହୂ ବିଦେଶକୁ, ଭିନ୍ନଦେଶକୁ ଚାଲାଣ ହେଉଛି । ଶିଳ୍ପ ନାଁରେ ଚାଷୀ ହାତରୁ ଜମି ଚାଲିଯାଉଛି । ଚାଷୀ ତା' ଭୂମିରୁ ଉତ୍‌ଖାତ ହେଉଛି । କଳାବଜାରୀ, ମୁନଫାଖୋରଙ୍କର ଶକ୍ତି ଆହୁରି ସଂପ୍ରସାରିତ ହୋଇଛି, ବ୍ୟାପ୍ତ ହୋଇଛି ।

ପ୍ରଚଣ୍ଡ ପ୍ରତ୍ୟାଘାତ କରିବା ପାଇଁ ଭଗବତୀ କହିଯାଇଛନ୍ତି, "ବାଡି ଭାଙ୍ଗି ଯାଉ ପଛେ ସାପ ମରୁ" ତା'ଠାରୁ ପାଦେ ଆଗେଇ ଆମେ ହୁଏତ କହିବାର ଶକ୍ତି ଅର୍ଜନ କରିବାର ଥିଲା ଯେ, "ବାଡି ଭାଙ୍ଗିବନାହିଁ - ସାପକୁ କିନ୍ତୁ ଅଲବତ୍ ମାରିବୁ ।"

ଆଜି ତାଙ୍କ ଜନ୍ମ ଶତବାର୍ଷିକୀରେ ଏହି ସଂକଳ୍ପ, ଶପଥ ନେବା ପାଇଁ ଆହ୍ୱାନ ।

ଭଗବତୀଙ୍କୁ ଲାଲ ସଲାମ ।

**ସଂପାଦକ ମଣ୍ଡଳୀ**

ଭଗବତୀଙ୍କର ବହୁ ସମଯୋଦ୍ଧା ସାଥୀଙ୍କର ଲେଖା ଆହୃତ କରି ସଂକଳିତ କରିଛୁ, ତାଙ୍କର ଉତ୍ତର ପୁରୁଷ ନିକଟରେ ତାଙ୍କର ସମକାଳୀନ ରୂପର ପରିଚୟ ଟେକିଧରିବା ପାଇଁ । କେତେକଙ୍କଠାରୁ ଅନୁମତି ଭିକ୍ଷା କରିଛୁ ହୁଏତ କେତେକଙ୍କଠାରୁ ଅନୁମତି ନେଇପାରିନାହୁଁ । ସମସ୍ତଙ୍କଠାରୁ କ୍ଷମା ମାଗିଦେଉଛୁ । ବହୁ ସତୀର୍ଥ, ସମଯୋଦ୍ଧାଙ୍କୁ କଳେବରବୃଦ୍ଧି ହେତୁ ସ୍ଥାନିତ କରିପାରିନାହୁଁ ।



# ଭଗବତୀ ସ୍ମରଣେ

## ୨୦୦୮ : ଫେବୃଆରୀ ୧ ତାରିଖ - ଜନ୍ମଶତବାର୍ଷିକୀରେ

# ପ୍ରଥମ ଅଂଶ

ଭଗବତୀଙ୍କର ସତୀର୍ଥ ଓ ସମଯୋଦ୍ଧା ସାଥୀଙ୍କର ସ୍ମୃତିରେ ଭଗବତୀ ଯେଉଁପରି ରୂପାୟିତ, ପୁରାତନ ନଥିପତ୍ରରୁ କେତେକ ଲେଖା ଆମେ ଭଗବତୀ ଜନ୍ମଜୟନ୍ତୀ ଶତବାର୍ଷିକୀ ସଂକଳନରେ ସ୍ଥାନିତ କରୁଛୁ । ସେମାନେ ହେଲେ ।

- ଚାରଣ କବି - ମନମୋହନ ମିଶ୍ର
- ସ୍ୱନାମଧନ୍ୟ କବି - ଅନନ୍ତ ପଟ୍ଟନାୟକ
- ସୁପ୍ରସିଦ୍ଧ ଶ୍ରମିକ ନେତା-ଦୁର୍ଗାଚରଣ ମହାନ୍ତି
- ବିଶିଷ୍ଟ ଆଇନଜୀବୀ - ଶ୍ରୀଯୁକ୍ତ ଗଙ୍ଗାଧର ରଥ
- ବିଶିଷ୍ଟ ସମାଜସେବୀ - କୁନ୍ଦନରାମ
- ସୁପ୍ରସିଦ୍ଧ କବି - ପଦ୍ମଶ୍ରୀ ସଚ୍ଚି ରାଉତରାୟ
- ଭଗବତୀଙ୍କ କନ୍ୟା - ସୁଷମା ପାଣିଗ୍ରାହୀ
- ନ୍ୟାୟମୂର୍ତ୍ତି - ରାଜକିଶୋର ଦାସ
- ଭଗବତୀଙ୍କ ସହଯୋଦ୍ଧା - ପ୍ରାଣନାଥ ପଟ୍ଟନାୟକ
- ଭଗବତୀଙ୍କ ସହଯୋଦ୍ଧା - ଗୁରୁଚରଣ ପଟ୍ଟନାୟକ





# ସାଥୀ ଭଗବତୀ : ନୂଆ ଗପଟିଏ ଲେଖ

- ମନମୋହନ ମିଶ୍ର

ଭଗବତୀ ପ୍ରିୟ ସାଥୀ
ସେ ଦିନେ ନିର୍ଜନ ରାତି
ଆଦିବାସୀ ଛୁଆ ଘିନୁଆ ବାଣୁଆ
ପାରିଧିରେ ଥିଲା ମାତି ।
ପଶୁ ମହାବଳ ପଶିଥିଲା ଗୋଠେ
ମଣିଷ ରକତ ଭରି ନିଶ ଓଠେ
ମାଇଲା ଘିନୁଆ ବନ୍ଧୁକ ଚୋଟେ
ହୁକୁମ ହୋଇଲା ଦଶଟଙ୍କା ମୋଟେ
ତଥାପି ସେ ଗୋରା ପ୍ରଶଂସା ପତର
ଲେଖି ଦେଲା ହାତ କାଟି ।
କେତେ ଦିନ ଗଲା ବିତି
ମଣିଷ-ବାଘର ହୋଇଲେ ଶିକାର
କେତେ ଲୋକ ନିତି ନିତି ।
କାହା ଭୂଇଁ ଗଲା, ଗଲା କାହା ଘର
କା' ହଳ ଫିଟିଲା କେ ଗୋଟି ଚାକର
କୁଳ ଭୂଆଷୁଣି ଝିଅ ବୋହୂଙ୍କର
ମହତ ହୋଇଲା ଦୂଠର ପଥର
ଜଣେ ଅଧେ ନୁହେଁ ଶହ ଶହ ଘର
ହା' ହା' କାରେ ଗଲା ଫାଟି ।
ସେ ଦିନ ନିର୍ଜନରାତି !
ଲହୁ ସର ସର ଗାମୁଛା ଗୁଡାଇ
ଚାଲିଛି ଘିନୁଆ ତରବର ହୋଇ
ପହିଲି କଚେରୀ ସକାଳୁ ବସଇ
ହାକିମ ଆସିବା ମଟର ଶୁଭଇ
ଜମା ହେଲେ ଲୋକେ କିଭଳି ବାଘ ସେ
ବାଣୁଆ ଆଣିଛି କାଟି !
ହଟିଗଲେ ଲୋକେ ଏତ ରାମ କାର୍ଜି !
ଶୁଣିବୁ ସାହେବ କହିଲା ଘିନୁଆ
ବାଘ ମହାବଳ ହେଲେ ପଶୁଛୁଆ,
ମଣିଷ ପେଟରୁ ଜନମି ଏ ଶଳା
ମଣିଷ ସର୍ଜନା ନିତି ପଦା କଲା
ଶହେ ବାଘ ଠାରୁ ଅଧିକ ଏ ଶଳା
ବଧାଇ ନଦେବୁ କାଟି
ଏଥର ତାଲୁକା ଉଶ୍ୱାସ ହୋଇଛି
ଉଶ୍ୱାସ ହୋଇଛି ମାଟି ।
ଗରଜେ ନିର୍ଜନ ରାତି,
ଭଗବତୀ ପ୍ରିୟ ସାଥୀ

ବଧାଇ ବେଳର ଘଣ୍ଟି ବାଜିଲା
ହାତ ଗୋଡ ବେଢି ଛନ୍ଦ ଶୁଭିଲା
ତେଲ ସରସର ଚିକ୍‌କଣ ସେ ରସି
ବଧାଇ ପାଗଳ ସେ ବାଣୁଆ ହସି
ହସି ଛାତି ଦେଲା ପାତି,
ପେଶଳ ବୁକୁର ଶିରା ଫୁଲି ଫୁଲି
ଚୁମିଲା ଜନମ ମାଟି !
ଗରଜିଲା ନିଶାରାତି
ବାଘର ପାରିଧି ଆଉ ହୁଏ ନାହିଁ
କାହାର ନ ପାଏ ଛାତି ।
ବହୁଦିନ ତଳେ ଥରେ
ଫାଶି ପାଇଥିଲା ଲେନିନ୍‌ର ଭାଇ
ରୁଷିଆର ବନ୍ଦୀ ଘରେ ।
ପୋଛି ପୁତ୍ରହରା ଜନନୀର ଚକ୍ଷୁଲୁହ
ପୁକାରିଲା ଦମ୍ଭେ ମଣିଷର ଶ୍ରେଷ୍ଠ ପୁଅ;
ନୁହେଁ ଏଇ ବାଟ ବଜାରେ ଦଳିତ ବାଜା
ତୋ ବୁକୁ ଲହୁରେ ତୋ ନିଶାଣ ତୁହି ଭିଜା ।
ଜାଗରେ ସର୍ବହରା,
ହାରିବାକୁ ହେବ ବନ୍ଧନ ଫାଶ
ଜିଣିବାକୁ ହେବ ଧରା ।
ଘିନୁଆ ଛାଡିଛି ଡାକ
ବିପୁଳ ମୋ କାନ୍ଧ ଉପରେ ଏ ପଟେ
ମୋ ଜାତି ନିଶାଣ ଟେକ ।
ଶିଆଳର ପରି ପଳାଉ ଶେଠଜୀ
ମରୁ ମହାରାଜା ବିଲାତକୁ ଭଜି
ଜାତିର ସମରୁ ଯାଇଅଛି ହଜି
କଂଗ୍ରେସୀ ବୁର୍ଜୁଆ ରଜା ।
ଆଜି ନୂଆ କରି ଜାତି ଗଢା ହେବ
ବଜାଅ ସମର ବାଜା ।
ଭଗବତୀ ପ୍ରିୟ ସାଥୀ
ଫୁଲି ଫୁଲି ଉଠେ ଲହୁର ଲହରି !
ଟୋଳି ଏ ମହାନ୍ ଜାତି ।
ଘିନୁଆର ଏବେ ହେବ ନବ ଅଭିଷେକ
ସାଥୀ ଭଗବତୀ ନୂଆ ଗପଟିଏ ଲେଖ !





# ସ୍ମୃତିରୁ ଯିଏ-

## (୧)

- ଅନନ୍ତ ପଟ୍ଟନାୟକ

ମଧୁସୂଦନ, ଗୋପବନ୍ଧୁ, ଭଗବତୀ-ଓଡ଼ିଶାର ଆଧୁନିକ ଇତିହାସର ଯାତ୍ରା ପଥରେ ତିନିହେଁ ତିନୋଟି ଉତ୍ସ ! ନୂତନ ଓଡ଼ିଶାର ସୁନିର୍ମାଣ ସଂପନ୍ନ ହେବା ପର୍ଯ୍ୟନ୍ତ ନୁହେଁ କେବଳ, ଇତିହାସରେ ବହୁଯୁଗଯାଏ, ଏହି ତିନୋଟିରୁ ଉତ୍ସରିତ ହୋଇ ବିଚ୍ଛୁରିତ ହେଉଥିବ ଜୀବନସଂଚାରୀ ଜ୍ଞାନ ଓ କର୍ମର ରଶ୍ମି ।

ଏଣୁ ସୂଚନାକ୍ରମେ ଦେଖିଲେ -

ପ୍ରଥମ 'ମଧୁସୂଦନ' ଥିଲେ - ବ୍ରିଟିଶ ଶାସନରେ ବିପର୍ଯ୍ୟସ୍ତ ଖଣ୍ଡବିଖଣ୍ଡିତ ଆତ୍ମବିସ୍ମୃତ ଓଡ଼ିଆ ଜାତିର ଜାତୀୟ ଚେତନାର ଉଦ୍‌ବୋଧକ । ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳର ଏକତ୍ରୀକରଣ ଆୟୋଜକ, ଧନୀ ନିର୍ଦ୍ଧନ ନିର୍ବିଶେଷରେ 'ଓଡ଼ିଆ' ଜାତିର ସାମୂହିକ 'ଆତ୍ମଚେତନା'ର ଦିକ୍-ନିର୍ଣ୍ଣୟକ, ଭାରତର ଜାତୀୟ ଚେତନାର ସଂଗଠନରେ ଓଡ଼ିଶାର ସ୍ୱକୀୟ ପ୍ରତିଭାର ଆଦ୍ୟ ପତାକାବାହୀ ।

ଦ୍ୱିତୀୟ; 'ଗୋପବନ୍ଧୁ' ଥିଲେ - ଜନଆନ୍ଦୋଳନର ପୁରୋବର୍ତ୍ତୀ; ସନ୍ତ୍ରାସବାଦୀ ମାର୍ଗରୁ ସାମ୍ବିଧାନିକ ମାର୍ଗ ଧରି ଓଡ଼ିଆ ଜାତିର ଜାଗରଣରେ, ଓଡ଼ିଆ ଅଞ୍ଚଳର ମିଶ୍ରଣରେ ଅଗ୍ରଣୀ, ମହାଭାରତୀୟ ମୁକ୍ତି ଆନ୍ଦୋଳନର ସାର୍ଥକ ଉଦ୍‌ଗାତା ଓ ସଂଗଠନକାରୀ; ଦୁଃସ୍ଥ, ଦଳିତ, ନିର୍ଯ୍ୟାତିତ, ବନ୍ୟା-ଦୁର୍ଭିକ୍ଷ ପ୍ରପୀଡ଼ିତଙ୍କର ସେବାରେ ଉତ୍ସର୍ଗୀକୃତ ପ୍ରାଣ । "ଓଡ଼ିଶାର ସମସ୍ୟା ଭାରତୀୟ ସମସ୍ୟାବଳୀର ଅନ୍ତର୍ଭୁକ୍ତ, ଭାରତର ମୁକ୍ତି ବ୍ୟତୀତ ଓଡ଼ିଶାର ଜାତୀୟ ଜୀବନର କାହିଁ, ସଂସ୍କୃତି କାହିଁ ?" - ଏହି ଭାବର ପ୍ରଥମ ପ୍ରବକ୍ତା, ମହାଭାରତୀୟ ଆନ୍ଦୋଳନରେ ଓଡ଼ିଶାର ସଂଯୋଗ ବିଧାୟୀ ଜନନାୟକ ।

ତୃତୀୟ; 'ଭଗବତୀ' ଥିଲେ - ଐତିହାସିକ ବିବର୍ତ୍ତନରେ ନୂତନତ୍ୱର ଶଙ୍ଖବାଦକ -; ମତାଦର୍ଶର ବିକାଶ କ୍ଷେତ୍ରରେ ଆବାହକ । ସମାଜବାଦୀ ଚିନ୍ତା ଓ ଚେତନାର - ଜାତୀୟବାଦୀଭାବରେ ଆକୃଷ୍ଟକୁ ସନ୍ତ୍ରାସବାଦ ପ୍ରତି ! ପୃଥିବୀର ସୁବିଶାଳ ଶ୍ରମଜୀବୀ ଜନସମଷ୍ଟିର ଅଂଶବିଶେଷ - ଓଡ଼ିଶାର କାହିଁକି, ସମଗ୍ର ଭାରତର ଶ୍ରମିକ, କୃଷକ, ବୁଦ୍ଧିଜୀବୀ ଜନସାଧାରଣ - ବିଶ୍ୱର ଦଳିତ ଜନସାଧାରଣଙ୍କ ମୁକ୍ତିରେ ହିଁ ସମଗ୍ର ଭାରତର ମୁକ୍ତି ଏଣୁ ଓଡ଼ିଶାର ରାଜନୈତିକ ଅର୍ଥନୈତିକ ପରାଧୀନତାରୁ ମୁକ୍ତି, - ଏହାର ବାର୍ତ୍ତାବହ ଥିଲେ ସେ । ବୈଜ୍ଞାନିକ ସାମ୍ୟବାଦର ଆଦର୍ଶ ଓ କଳ୍ପନାକୁ ବିପ୍ଳବାତ୍ମକ ରୀତିରେ ବାସ୍ତବାୟିତ କରିବାରେ ପ୍ରଥମ ଅଗ୍ରଯାୟୀ । ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ଅନ୍ୟତମ ଆଦ୍ୟ ପ୍ରତିଷ୍ଠାତା ଭାବରେ ଓଡ଼ିଶାର ଇତିହାସକୁ ପ୍ରସାରିତ କରିଥିଲେ ସେ ବିଶ୍ୱ ଇତିହାସର ମହାନ୍ ପରିସରକୁ । ତାଙ୍କ ପୂର୍ବରୁ ଓଡ଼ିଶାରେ କୌଣସି ନେତା କି କର୍ମୀ ବିଶ୍ୱ ଦୃଷ୍ଟି ସହ ମୁକ୍ତିସଂଗ୍ରାମରେ ଦେଶ ଦେଶ ମଧ୍ୟରେ ସଂଯୋଗ ବିଧାନ ପ୍ରତି ଆଗ୍ରହୀ ଉଦ୍‌ଯୋଗୀ ଥିଲେ, ଏହା ନିର୍ବିବାଦରେ କୁହାଯାଇ ନପାରେ ।

## (୨)

ଭଗବତୀ ଜନ୍ମିଥିଲେ ପୁରୀ ଜିଲ୍ଲାର କୁଶଭଦ୍ରା ନଦୀକୂଳଠାରୁ ଅଳ୍ପ ଦୂରରେ ବିଶ୍ୱନାଥପୁର ଗ୍ରାମରେ, ଫେବୃଆରୀ ୧, ୧୯୦୮ରେ, ଏକ ବୁଦ୍ଧିଜୀବୀ ପରିବାରରେ । ତାଙ୍କର ବଡ଼ ଭାଇନା ଦିବ୍ୟସିଂହ, ମଝି ଭାଇନା କାଳିନ୍ଦୀ ଚରଣ, ଦୁହେଁ ଓଡ଼ିଶାର ସାହିତ୍ୟକ୍ଷେତ୍ରରେ ସୁପରିଚିତ । ଭଗବତୀଙ୍କର 'ନନା' ବା ବାପା ସ୍ୱପ୍ନେଶ୍ୱର ଥିଲେ ପୁରୀର ଆଇନଜୀବୀ, ସ୍ୱାଧୀନଚେତା, ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର, ଧନମାନରେ ସ୍ୱଚ୍ଛଳ । ଭଗବତୀଙ୍କର ସ୍ନେହମୟୀ ଜନନୀ ଥିଲେ ଅତି ମୃଦୁ ମଧୁର ସ୍ୱଭାବର । ଚାକିରି ପ୍ରତି ସମ୍ମୋହିତ ନ ହୋଇ ଓକିଲାତି କରିଥିଲେ 'ଦିବ୍ୟସିଂହ' ।

ସ୍ୱପ୍ନେଶ୍ୱର ପରିବାରର ସମ୍ପର୍କ ଥିଲା ଗୋପବନ୍ଧୁ, ଆଚାର୍ଯ୍ୟ ହରିହର, ନୀଳକଣ୍ଠ, କୃପାସିନ୍ଧୁଙ୍କ ସମେତ ଜଗବନ୍ଧୁ ସିଂହ, ବନମାଳୀ ଦାସ ପ୍ରଭୃତି ଦେଶପ୍ରେମୀ ଆଇନଜୀବୀ, ପୁରୀର ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ସହିତ । ଉତ୍କଳ ସମ୍ମିଳନୀଠାରୁ ଆରମ୍ଭ କରି ଗାନ୍ଧୀଜୀଙ୍କ ଅସହଯୋଗ ଆନ୍ଦୋଳନରେ କେବେ ପ୍ରତ୍ୟକ୍ଷରେ କେବେ ପରୋକ୍ଷରେ ଯୋଗଦେଉଥିଲେ ସେମାନେ । ଗାନ୍ଧିଜୀଙ୍କ ଆହ୍ୱାନରେ କଚେରୀ ବର୍ଜ୍ଜନ କରିଥିଲେ ଓକିଲ ଦିବ୍ୟସିଂହ । ସ୍କୁଲ୍ ଛାଡି 'କାଳିନ୍ଦୀ ଚରଣ' ଅଂଶଗ୍ରହଣ କରିଥିଲେ ଆନ୍ଦୋଳନରେ ଅଳ୍ପ ସମୟ ପାଇଁ । ଅତୀତ ଗୌରବ 'ଉଦ୍‌ବୋଧନ'ରେ ଦେଶପ୍ରେମର ବହ୍ନି ଜାଳିବା





ଥିଲା ଏହି ସମୟର 'ଜାତୀୟ' ଆନ୍ଦୋଳନର ଚରିତ୍ରର ମୁଖ୍ୟ ବିଭାବ । ଏହା ବୋଲି ପାଶ୍ଚାତ୍ୟ ଭାବଧାରା ଯେ ଅଗ୍ରହଣୀୟ ଥିଲା, ଏହା ନୁହେଁ । ସମସ୍ତ ଜାତୀୟ ଉଦ୍ୟମ ପ୍ରେରଣାର ସୂତ୍ର ନିହିତ ଥିଲା ପାଶ୍ଚାତ୍ୟ ଚିନ୍ତାଧାରାରେ, ଗଣତାନ୍ତ୍ରିକ ରାଜନୀତିକ ଆଦର୍ଶ ଓ ପାଶ୍ଚାତ୍ୟ ସାହିତ୍ୟରେ । ଏହା ଆହୁରି ବିଶଦ ଭାବରେ ପ୍ରକାଶ ପାଇଥିଲା ଅନ୍ନଦା ଶଙ୍କର, କାଳିନ୍ଦୀଚରଣ; ପରେ ବୈକୁଣ୍ଠନାଥ ପ୍ରଭୃତିଙ୍କ 'ପାଶ୍ଚାତ୍ୟ' ରୋମାଣ୍ଟିକ୍ କାବ୍ୟ ଉପନ୍ୟାସର ଅନୁଶୀଳନରେ । ଭଗବତୀଙ୍କ ଘରେ ସ୍ୱତଃ ଗଢି ଉଠିଥିଲା ବହୁ ପୁସ୍ତକର ପୁଞ୍ଜି, ପାରିବାରିକ ଲାଇବ୍ରେରୀ - ଚାଲୁଥିଲା ସାହିତ୍ୟପ୍ରେମୀ ଯୁବ 'ବନ୍ଧୁ ଗୋଷ୍ଠୀ'ର ସାହିତ୍ୟ, ସଂଗୀତ, ଧର୍ମ, ରାଜନୀତି ପ୍ରଭୃତି ଘେନି ଆଲୋଚନା- ପ୍ରାଚୀନତା ପ୍ରତି ଅନୀହାରେ ନୁହେଁ ଠିକ୍ ବିଶ୍ଳେଷଣ-ବିରହିତ ମୋହରେ-- ପୁଣି ଯାହା ନୂତନ ସମାଗତପ୍ରାୟ, ତାହାରି ଚମତ୍କୃତି ପ୍ରତି ଆକର୍ଷଣରେ ଗଢି ଉଠୁଥିଲା ଭଗବତୀଙ୍କ ବୌଦ୍ଧିକ ମୁହୂର୍ତ୍ତ ଗୁଡ଼ିକ ଏବଂ ସେଥି ସଙ୍ଗକୁ ଥିଲା ତାଙ୍କ ପରିବାରର, ତାଙ୍କ ନିଜର ଗାଁ ସାଇଭାଇଙ୍କ ସହିତ ସମ୍ବନ୍ଧ । ସେମାନଙ୍କ ମଧ୍ୟରେ ଅନେକ ସେତେବେଳେ ଥିଲେ ଦରିଦ୍ର । ପୁଣି ତାଙ୍କ ସାହି ପାଖରେ ହିଁ ଥିଲେ ଅସ୍ପୃଶ୍ୟ ଲୋକ - ବ୍ରାହ୍ମଣ ସାମନ୍ତଙ୍କ କୋଠିଆ ବେଠିଆଏ । ସେଇସବୁ ଗ୍ରାମବାସୀଙ୍କ ସଂସ୍ପର୍ଶରେ ଆସି ଗାଆଁରେ ପିଲା ସେ ଦେଖୁଥିଲେ ଅଭାବ ଉତ୍ପୀଡନର ଚିତ୍ର । ଭଗବତୀଙ୍କର କୋମଳ ହୃଦୟରେ ସେସବୁର ଛାୟାପାତ ହେଉଥିଲା ରୁଦ୍ଧ ପ୍ରତିକ୍ରିୟାରେ ।

ସ୍ନେହମୟୀ ଜନନୀଙ୍କର ଏପରିକି ନନା ବଡ଼ ଭାଇନାଙ୍କର ସାଧାରଣ ଭାବେ ଦୁଃଖିରଙ୍କିଙ୍କୁ ଦାନଧର୍ମ ଲକ୍ଷ୍ୟ କରୁଥିଲେ ଭଗବତୀ । ଅଭିଜାତ ସାମନ୍ତବାଦୀ ଉଦାର ଦୃଷ୍ଟିଭଙ୍ଗୀ ହେତୁ ପ୍ରାଚୀନ ଗୌରବମୟ ଐତିହ୍ୟର ପୁନଃପ୍ରତିଷ୍ଠାରେ ଅତୀତାଭିମୁଖୀ ସ୍ୱପ୍ନ ସହ ପାଶ୍ଚାତ୍ୟ ରୋମାଣ୍ଟିକ ସାହିତ୍ୟ ସଂସ୍କୃତିର ମନୋରମ ମିଶ୍ରଣ, ଏ ଭାବ ପ୍ରବାହ ଉପରେ ଆଉ ଏକ ଅନ୍ତଃସଲିଳା ଭାବଫଲ୍‌ଗୁର ପ୍ରଭାବ ପଡୁଥିଲା ତାଙ୍କ ଜନନୀଙ୍କର । ତାଙ୍କଠାରୁ ସେ ଆହରଣ କରିଥିଲେ ଆମ ଓଡ଼ିଆ ଜୀବନର ଚଳଣି ଓ କରଣିର ମର୍ମ, ଜଗଜ୍‌ମାଳିଠାରୁ ଆରମ୍ଭ କରି ଛାନ୍ଦ ଚଉପଦୀ ଗଳ୍ପ ଉପାଖ୍ୟାନର ସରସତା । ବ୍ରାହ୍ମଣ ଅବ୍ରାହ୍ମଣ ସବୁ ବର୍ଣ୍ଣର ଦରିଦ୍ର ଲୋକଙ୍କ ଦୁଃଖ ଦୁର୍ଦ୍ଦଶାର ସହ ପରିଚୟ ଥିଲା ତାଙ୍କର ସମବୟସ୍କ ପିଲାଙ୍କ ସଙ୍ଗରେ ମିଶି - ଜାଣୁଥିଲେ ସେ ସେମାନଙ୍କର ଅଭାବ, ନିପୀଡନ, ଯନ୍ତଣାର କାହାଣୀ । ଏଣୁ ଛାତ୍ର ଅବସ୍ଥାରୁ ସେ ଥିଲେ 'ନିରାଡମ୍ବର' ସୁରୁଚିରେ କିନ୍ତୁ ପରିଷ୍କାର ପରିଚ୍ଛନ୍ନ ବେଶପୋଷାକରେ । କେବଳ 'ଲୁଗା କାନିଟି' ବେରେହି ହୋଇ ପ୍ରାୟ ଖୋଲା ଦେହରେ ବୁଲୁଥିବାର ଯିଏ ଦେଖୁଥିଲା ଗାଆଁରେ ମୁହୂର୍ତ୍ତକରେ ଅତି ଆପଣାର ବୋଲି ଗ୍ରହଣ କରିନେଉଥିଲା ତାଙ୍କୁ ।

ପୁରୀ ଜିଲ୍ଲାସ୍କୁଲରେ ପଢିଲାବେଳେ ଭଗବତୀଙ୍କର ସହଚରରୂପେ ଘନିଷ୍ଠ ହୋଇଥିଲେ 'ପ୍ରାଣନାଥ' । ସେ ଥିଲେ ତଳ କ୍ଲାସରେ, ପ୍ରାଣନାଥ ଉପର କ୍ଲାସ୍‌ରେ । କିନ୍ତୁ ପାରିବାରିକ ସମ୍ବନ୍ଧ ହେତୁ ପ୍ରାଣନାଥଙ୍କ ଯା'ଆସ ଥିଲା ଭଗବତୀଙ୍କ ଘରକୁ । ଦୁହେଁ ସ୍କୁଲ 'ପାଠ୍ୟ' ବହି ଛଡା ପଢୁଥିଲେ ଅନ୍ୟ ପୁସ୍ତକ ପୁସ୍ତିକା । ଭଗବତୀଙ୍କର ସାହିତ୍ୟ ପ୍ରତି ପ୍ରଗାଢ ଅନୁରାଗ ଆଣିଥିଲା ଏହାହିଁ । ଦୁଇ ଭାଇନାଙ୍କ ଆଦର୍ଶରେ ପାଠ୍ୟ ଅତିରିକ୍ତ ସାହିତ୍ୟ ପୁସ୍ତକରେ ମନୋନିବେଶ, ଘରେ ଭାଗବତ ପାଠ ଗାଁଆରେ ପୁରାଣ ପାଠ ଶ୍ରବଣ, ପୁଣି ପ୍ରାଚୀନ କାବ୍ୟକବିତା 'ସୁଆଙ୍ଗ' ସଙ୍ଗୀତ ଚର୍ଚ୍ଚା ପ୍ରତି ଆଦର, ଗଳ୍ପ ଉପନ୍ୟାସ - ଇଂରେଜୀ ଓ ବଙ୍ଗଳା ପତ୍ରପତ୍ରିକା Modern Review, Indian Review, Hindustan Review, ବଙ୍ଗଳା 'ବସୁମତୀ' 'ପ୍ରବାସୀ' 'ଭାରତବର୍ଷ' ପଢିବାରେ ସୁଯୋଗ, ତାଙ୍କୁ ସାହିତ୍ୟରସରେ ଅବଗାହୀ କରିଥିଲା ଛାତ୍ର ଅବସ୍ଥାରୁ ।

ସେତେବେଳେ 'ସତ୍ୟବାଦୀ' 'ବନବିଦ୍ୟାଳୟ'ର ସୁଖ୍ୟାତି । ଗୋପବନ୍ଧୁ ଅସହଯୋଗରେ ଯୋଗ ଦେଲାପରେ ପଣ୍ଡିତ ନୀଳକଣ୍ଠ, ହରିହର ପ୍ରଭୃତି ବିଦ୍ୟାଳୟକୁ ଜୀବନ୍ତ ରଖିଥାଆନ୍ତି । ସେଥିରେ ଶିକ୍ଷାଲାଭ ପାଇଁ 'ଜାତୀୟବାଦୀ' ଭଗବତୀ ଉତ୍ସୁକ ହୋଇ ଉଠିଲେ । ସମୟ ଆସିଲା, ପୁରୀ ଜିଲ୍ଲା ସ୍କୁଲରେ ଛାତ୍ର ଧର୍ମଘଟ ଚାଲିଲା, କେତେକ ପିଲା ସ୍କୁଲ ଛାଡିଲେ । ସ୍କୁଲ ଛାଡି ରହିଲା ପରେ ଗୋଟିଏ ବର୍ଷ, ଭଗବତୀଙ୍କୁ ସୁଯୋଗ ମିଳିଲା ବନବିଦ୍ୟାଳୟରେ ଅଧ୍ୟୟନ ପାଇଁ । ସେଥିର ସବୁ ଛାତ୍ରମାନେ ଥିଲେ ଦୁଇଟି ଶ୍ରେଣୀର - ଧନୀ ଆଉ ଦରିଦ୍ର ପରିବାରର । କେତେକ ଥିଲେ ଉଚ୍ଚ ଚାକିରି - ଅଭିଳାଷୀ, ଆଉ କେତେକ ଦେଶସେବା-ଲୋକସେବା ପାଇଁ ଆଗ୍ରହୀ । ସେହି ସମୟରୁ ତାଙ୍କର ଅତି ଅନ୍ତରଙ୍ଗ ବନ୍ଧୁ ହୋଇଥିଲେ 'ସଦାଶିବ' - ଅନ୍ୟ ସଙ୍ଗୀମାନଙ୍କ ମଧ୍ୟରୁ ଅଧିକାଂଶ ପରେ ଜୀବନ ବିତାଇଥିଲେ 'ସଦାଶିବ' - ଅନ୍ୟ ସଙ୍ଗୀମାନଙ୍କ ମଧ୍ୟରେ ଅଧିକାଂଶ ପରେ ଜୀବନ ବିତାଇଥିଲେ ଜୀବିକାର୍ଜ୍ଜନରେ । 'ଭଗବତୀ' ହିଁ ଥିଲେ ଏକାବେଳକେ ଅନନ୍ୟ - ଛାତ୍ର ଭାବରେ ତୀକ୍ଷ୍ଣଧୀ, କିନ୍ତୁ ପାଠ୍ୟକ୍ରମରେ 'ପ୍ରଶଂସା' ହାସଲରେ ମଧ୍ୟମ ବର୍ଗୀୟ, ସାଧାରଣ ସେବାମୂଳକ କାର୍ଯ୍ୟରେ ବିଶେଷରେ ଜାତୀୟ ଆନ୍ଦୋଳନରେ ଉତ୍ସାହୀ, ଆବେଗ କମ୍ପିତ ଅଗ୍ନିଶିଖା ।



## (୩)

ଭଗବତୀ ପାଟନାରୁ ଏମ.ଏ.ପାଶ୍ କରି ଆସି ରେଭେନ୍ସା କଲେଜରେ ଆଇନ୍ ଶ୍ରେଣୀର ଛାତ୍ର ହେଲେ । ସେତେବେଳକୁ ଜାତୀୟ 'ମୁକ୍ତି ଆନ୍ଦୋଳନ'ରେ ବିଚାର ବିଭ୍ରାଟ୍ ଦେଖା ଦେଇସାରିଥାଏ । 'ଲବଣ ସତ୍ୟାଗ୍ରହ' ପରେ 'ଗାନ୍ଧି-ଇରଉଇନ୍' ଚୁକ୍ତି, ଗୋଲଟେବୁଲ୍ ବୈଠକ - ସେଥିରେ ଆନ୍ଦୋଳନର ଗତି ମନ୍ଦୀଭୂତ ହୋଇ ଆସିଥାଏ । ଗାନ୍ଧିଜୀ ଦ୍ୱିତୀୟ ପର୍ଯ୍ୟାୟର ଆନ୍ଦୋଳନ 'ଉପବାସ' ଯୋଗେ ଆରମ୍ଭ କରିଦେଲେ, ହରିଜନ ସଂଗଠନରେ । ତେଣେ ଅନ୍ୟ ଦିଗରେ ଶ୍ରମିକ ଆନ୍ଦୋଳନ ତେଜି ଉଠୁଥାଏ, ବିପ୍ଳବୀମାନଙ୍କୁ ଧରପଗଡ ପରେ ବିଚାର ଚାଲିଥାଏ ଆକ୍ରୋଶମୂଳକ ଭାବରେ ବ୍ରିଟିଶ କୋର୍ଟରେ । ପଣ୍ଡିତ ନେହେରୁ, ସୁଭାଷ ବୋଷଙ୍କର ଆହ୍ୱାନ ଶୁଭୁଥାଏ ଯୁବଶକ୍ତି ପ୍ରତି ! କଂଗ୍ରେସ କର୍ମୀ ମହଲରେ ଭାଗବତ, ଆଦର୍ଶ ଓ ଲକ୍ଷ୍ୟଗତ ଆଲୋଡନ ସୃଷ୍ଟି ହୋଇଥାଏ ଗଭୀର ସଂଶୟରେ ଆତ୍ମଜିଜ୍ଞାସାରେ ।

ଭଗବତୀ ସେ ସବୁ ଲକ୍ଷ୍ୟ କରୁଥାନ୍ତି । ନିଜେ ଅବଶ୍ୟ ସତ୍ୟାଗ୍ରହରେ ଯୋଗ ଦେଉ ଦେଉ 'ପାରିବାରିକ' ଚକ୍ରାନ୍ତରେ ବାଧା ପାଇ ଅଟକି ଯାଇଥିଲେ; କୌଣସି ରଚନାତ୍ମକ ଆନ୍ଦୋଳନରେ ଯୋଗଦେଇ ପାରି ନଥିଲେ । ପଢାରେ ନିର୍ଦ୍ଦିଷ୍ଟ ଥିଲେ ପାଟନାରେ । ଓଡ଼ିଶାରେ ତାଙ୍କ ବନ୍ଧୁ ପ୍ରାଣନାଥ ସେତେବେଳକୁ ସତ୍ୟାଗ୍ରହରେ ବାରମ୍ବାର କାରାବରଣ କରିଥାନ୍ତି । ଅନ୍ୟ ବନ୍ଧୁମାନଙ୍କ ମଧ୍ୟରୁ 'ଦୀନବନ୍ଧୁ', 'ଶ୍ୟାମସୁନ୍ଦର' ପ୍ରଭୃତି ହିଁ କେତେକ ଜାତୀୟ ଆନ୍ଦୋଳନର ଖୋଲାଖୋଲି ସମର୍ଥକ ହୋଇଥାନ୍ତି ।

ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ଭଗବତୀ ପାଟନାରେ ଅଧ୍ୟୟନ ସମୟରେ ସମ୍ୟକ ରୂପେ ପରିଚିତ ହୋଇଥିଲେ ଅର୍ଥନୀତି-ବିଜ୍ଞାନ କ୍ଷେତ୍ରରେ ପୁଞ୍ଜିବାଦୀ, ନୈରାଜ୍ୟବାଦୀ, ସାମ୍ରାଜ୍ୟବାଦୀ ପ୍ରଭୃତି ଚିନ୍ତା-ଧାରା ସହିତ । ସେ ଯୁଗରେ କ୍ୱଚିତ୍ କେଉଁଠି ଜଣେ ଅଧେ 'ସୋସିଲିଷ୍ଟ', ବା 'ସାମ୍ୟବାଦୀ' ପ୍ରତି ଆକୃଷ୍ଟ ଶିକ୍ଷାବିତ୍ ଅଧ୍ୟାପକ ଥାଆନ୍ତି । ସେଭଳି ଶିକ୍ଷାବିତ୍‌ମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଥିଲେ ପାଟନା କଲେଜର ଅଧ୍ୟାପକ ଡକ୍ଟର ଜ୍ଞାନଚାନ୍ଦ, ତାଙ୍କର ଦୃଷ୍ଟିଭଙ୍ଗୀରେ ପ୍ରଭାବିତ ହୋଇଥାନ୍ତି ଭଗବତୀ । ଅନ୍ୟ କେତେକ ବନ୍ଧୁ ସାଧାରଣଭାବେ ପୁଞ୍ଜିବାଦୀ ଅର୍ଥନୀତିକୁ ଗ୍ରହଣ କରି ଭାରତରେ ଜାତୀୟ ଜୀବନର ବିକାଶରେ ତାହା ଏକମାତ୍ର ସହାୟକ ବା କରଣୀୟ ପନ୍ଥା ବୋଲି ବିବେଚନା କଲାବେଳେ ଭଗବତୀଙ୍କ ମନକୁ ଆଲୋଡିତ କରିଥାଏ - ନୈରାଜ୍ୟବାଦୀ (ପ୍ରୁଧୋଙ୍କର) ଆଦର୍ଶ, ସାମ୍ୟବାଦୀ ଅର୍ଥନୀତିର ନୀତିସୂତ୍ରଗୁଡ଼ିକ । ଏକ ଦିଗରେ ବାର୍ଣ୍ଣଡ୍ ଶ' ଏଚ୍.ଜି. ୱେଲେସ୍, ଅପଟନ ସିଙ୍କଲେୟାର ପ୍ରଭୃତି ସାହିତ୍ୟକାରଙ୍କ ରଚନା, ଲେବର ପାର୍ଟିର ମୁଖ୍ୟ ତତ୍ତ୍ୱକାର ଅଧ୍ୟାପକ ହାରଲଡ୍ ଲାସ୍କି, ରବର୍ଟସନ୍ ପ୍ରଭୃତିଙ୍କ ନିବନ୍ଧ ଓ ପୁସ୍ତକରେ ସୋସିଆଲିଜ୍‌ମ୍‌ର ବର୍ଣ୍ଣନା ଓ ବାଖ୍ୟା, ଅନ୍ୟ ଦିଗରେ ବୈପ୍ଳବିକ ରୀତିରେ ହିନ୍ଦୁସ୍ଥାନ ସୋସାଲିଷ୍ଟ ପାର୍ଟିର ଆହ୍ୱାନ - ଏହାରି ମଧ୍ୟରେ ଘୂର୍ଣ୍ଣୀ ଉଠୁଥାଏ ଚିନ୍ତାର । ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ମାର୍ଗରେ ଖୁବ୍ ହେଲେ ମିଳିବ ଡୋମିନିଅନ୍ ଷ୍ଟାଟସ । ଦାରିଦ୍ର୍ୟରୁ, ଦୁଃଖରୁ ଜନସାଧାରଣଙ୍କର ମୁକ୍ତି ଆସିବ ନାହିଁ । ବାଣିଜ୍ୟିକ ଶୋଷଣ ବା ଦେଖାଦେବ ସାମାନ୍ୟ ବାହ୍ୟ ପରିବର୍ତ୍ତନ । ତାହାର ବିଲୋପ ଘଟିବ ନାହିଁ ଆଦୌ । ଏହିସବୁ ପ୍ରଶ୍ନ ଆଇନ୍ ଅଧ୍ୟୟନ ବେଳକୁ ତାଙ୍କ ମନରେ ପ୍ରବଳ ବିକ୍ଷୋଭ ସୃଷ୍ଟି କରିଥିଲା ଲକ୍ଷ୍ୟ ଓ ପନ୍ଥା ସଂପର୍କରେ । ଗାନ୍ଧିଜୀଙ୍କର ମାର୍ଗ ଯେ ପ୍ରାଚୀନତାର ଅଭିମୁଖୀ, ଆଦିମ ମାନବିକତା-ଭିତ୍ତିକ ଚିନ୍ତାଧାରାରେ ବ୍ୟବସ୍ଥିତ ହୋଇ ଧର୍ମ-ପରାୟଣତା ସତ୍ତ୍ୱେ ସାମନ୍ତବାଦୀ ସମାଜର ପୃଷ୍ଠିପୋଷକ-ଏହା ତାଙ୍କ ମନରେ ଉଦ୍‌ବେଳନ ଆଣୁଥିଲା ସଂଶୟର, ଦ୍ୱନ୍ଦ୍ୱର ।

## (୪)

ସେହି ସମୟରେ ସେ 'ଲ' କ୍ଲାସରେ ବସୁଥାନ୍ତି ମାତ୍ର ! କିଛିଦିନ ନିଜ ମଝିଆ ଭାଇନାଙ୍କ ପାଖରେ ରହିଲା ପରେ ପଶ୍ଚିମ ଛାତ୍ରବାସକୁ ଆସିଲେ । ତାଙ୍କର ପୂର୍ବରୁ ପରିଚୟ ଥାଏ କଂଗ୍ରେସୀ କଲେଜ ଛାତ୍ର ଅନନ୍ତଙ୍କ ସହିତ । କ୍ରମେ ବୈଦ୍ୟନାଥ, ବିଶ୍ୱନାଥ, ଅଶୋକ ଆଦି, କଂଗ୍ରେସୀ କଲେଜ ଛାତ୍ରଙ୍କ ସହିତ ସେ ପରିଚିତ ହେଲେ । ସେମାନଙ୍କ ଭିତରେ ବିଭିନ୍ନ ବିଷୟ ଘେନି ପ୍ରଧାନତଃ 'ରାଜନୈତିକ' ମତବାଦ ଓ କ୍ରିୟାକଳାପ ଘେନି, ପ୍ରାୟ ପ୍ରତ୍ୟହ ପ୍ରବଳ ଆଲୋଚନା ଚାଲିଲା । ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଆନ୍ଦୋଳନରୁ କଂଗ୍ରେସ୍ ଯୁବକର୍ମୀଙ୍କ ଆସ୍ଥା ତୁଟି ଆସିବା ସଂଗେ ସଂଗେ ନୂତନ ଆଦର୍ଶ ଓ ପନ୍ଥାର ସଂଧାନ ଲାଗି ତ ବ୍ୟାକୁଳତା ପ୍ରକାଶ ପାଉଥାଏ । ସାମ୍ୟବାଦୀ ଆଦର୍ଶ ଓ ପଦ୍ଧତି ଯେ ଋଷରେ ବାସ୍ତବ ହେଉଛି ଏହାହିଁ ଯେ ଏକାନ୍ତଭାବେ ଗ୍ରହଣୀୟ - ଏହା ଅନୁଭୂତ ହେଉଥାଏ ।

ଏହାପରେ ଭଗବତୀ କଂଗ୍ରେସ ଛାତ୍ରବନ୍ଧୁ ଦୁଇତିନି ଜଣଙ୍କ ସହଯୋଗରେ ପୂର୍ବର ଯୁବ କଂଗ୍ରେସ କର୍ମୀ ଗୋଷ୍ଠୀ ସହିତ ପରିଚିତ ହେଲେ । ପରେ କଟକର କଂଗ୍ରେସ କର୍ମୀଙ୍କ ସଂପର୍କରେ ଆସିଲେ । କଂଗ୍ରେସ ଯୁବକର୍ମୀଙ୍କ ମଧ୍ୟରୁକେତେକ 'ସନ୍ତ୍ରାସବାଦ' ଆଡକୁ





ମୁହାଁଉଥାନ୍ତି । ପୁରୀର ଗୋକୁଳିମୋହନ, ଗଙ୍ଗାଧର ମିଶ୍ର, ପ୍ରଭୃତି କେତେ ଜଣ ପୁରୀକୁ ବଙ୍ଗଳାରୁ ଆସୁଥିବା 'ସନ୍ତ୍ରାସବାଦୀ'ଙ୍କ ସଂସ୍ପର୍ଶରେ ଆସୁଥାନ୍ତି । ସେହି ସମୟରେ ବଙ୍ଗଳାର ଜଣେ ସନ୍ତ୍ରାସବାଦୀ ସତ୍ୟେନ ଗୁହଙ୍କୁ ପୁରୀରେ ରଖାଯାଇଥାଏ, ସ୍ୱାସ୍ଥ୍ୟଲାଭ ଦୃଷ୍ଟିରୁ ଅନ୍ତରୀଣ ବନ୍ଦ ଭାବରେ । ତାଙ୍କ ସହିତ ଯୋଗାଯୋଗ ସ୍ଥାପନ, ସନ୍ତ୍ରାସବାଦୀ ଅଭିମୁଖୀ ଯୁବ-କଂଗ୍ରେସ କର୍ମୀଙ୍କ ପକ୍ଷରେ ସହଜରେ ସମ୍ଭବ ହେଲା ।

କ୍ରମେ ଭଗବତୀ, ଅନନ୍ତ ବୈଦ୍ୟନାଥ, ଗୋକୁଳି, ଗଙ୍ଗାଧର ମିଶ୍ର ପ୍ରଭୃତିଙ୍କୁ ଘେନି ଗୋଟିଏ ସନ୍ତ୍ରାସବାଦୀ ଆଦର୍ଶାନୁଗାମୀ ଗୋଷ୍ଠୀ ଗଢ଼ା ହୋଇଗଲା । ଏହାର ପ୍ରଧାନ ଲକ୍ଷ୍ୟ ରହିଲା – ଏଭଳି କିଛି ଚମକପ୍ରଦ କରିବାକୁ ହେବ ଯାହାକି ନିଶ୍ଚଳ ଜଡ଼ିମାଗ୍ରସ୍ତ ଜାତିର ଚୈତ୍ୟନକୁ ଚହଲାଇ ଦେବ । ସେହି ଦୃଷ୍ଟିରୁ ଅସ୍ତ୍ରଶସ୍ତ୍ର ସଂଗ୍ରହ (ମୁଖ୍ୟତଃ ପିସ୍ତଲ ସଂଗ୍ରହ) ବ୍ୟବସ୍ଥା କରିବା ସଂଗେ ସଂଗେ ପ୍ରଚାରପତ୍ର ବାଣ୍ଟି ଲୋକ ମନକୁ ବିପ୍ଳବ ପ୍ରତି ଆକର୍ଷଣ କରିବାକୁ ହେବ । ଏହି ଲକ୍ଷ ହାସଲରେ ଲାଗିପଡି ପ୍ରଥମେ ପ୍ରଚାରପତ୍ର ଲିଥୋ କରାଯାଇ ବଣ୍ଟାଗଲା । ଏହି ପ୍ରଚାରପତ୍ରର ନାମ ଥିଲା ସମ୍ଭବତଃ "ଆଗେ ଚାଲ" । ଏହି ନାମରେ ପରେ ବେଆଇନ୍ କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ "ଲିଥୋ" ପ୍ରଚାରପତ୍ର ବାହାରିଥିଲା । ଏହି ଗୋଷ୍ଠୀର ଅଧିନାୟକରୂପେ ରହିଥାନ୍ତି ଭଗବତୀ । ସେହିଁ ସଂପାଦନା କରୁଥାନ୍ତି ଲେଖୁଥାନ୍ତି । ପ୍ରଚାରପତ୍ର । ଏ ପ୍ରଚାରପତ୍ର ଲୋକଙ୍କ ଆଖିରେ ଯେତେ ପଡ଼ି ନଥିଲା ତାର ସହସ୍ର ଗୁଣ ପଡିଥିଲା ପୁଲିସ୍ ଆଖିରେ । ଏହି କାର୍ଯ୍ୟକୁ ପ୍ରସାରିତ ଆଉ ଆର୍ଥିକ ଦିଗରୁ ସକ୍ରିୟ କରିବା ଲାଗି ପୁରୀ ବଡ଼ଦାଣ୍ଡରେ ହୋଟେଲ୍ (ନ୍ୟାସନାଲ୍) ଖୋଲାଗଲା – ଏହା ପରିଚାଳନାରେ ଅନ୍ୟମାନେ ଥିଲେ ମଧ ଦାୟିତ୍ୱ ରହିଲା ଭଗବତୀଙ୍କର ।

ସନ୍ତ୍ରାସବାଦ ପ୍ରତି ଢଳିବା ସଂଗେ ସଂଗେ ଭଗବତୀଙ୍କ ମନରେ ଜନ୍ମିଥାଏ ପ୍ରବଳ ଆଲୋଡନ – ସନ୍ତ୍ରାସବାଦର ବିଭିନ୍ନ ରୂପ, ବିଭିନ୍ନ ଅଭିବ୍ୟକ୍ତି ବିଶେଷତଃ ବଙ୍ଗଳାର 'ଯୁଗାନ୍ତର' 'ଅନୁଶୀଳନ'ର ଏ ଦୁଇଟି ସନ୍ତ୍ରାସବାଦୀ ଦଳ କାର୍ଯ୍ୟପନ୍ଥା, ତେଣେ ନେହେରୁ ଓ ସୁଭାଷ ବୋଷ ଏ ଦୁହିଁଙ୍କ ପ୍ରଭାବ – ତାଙ୍କୁ ଓ ତାଙ୍କ ବନ୍ଧୁମାନଙ୍କୁ ବିଚଳିତ କରୁଥାଏ । ନେହେରୁଙ୍କ ମତାମତ ପ୍ରତି ଆକର୍ଷଣ ଥାଏ ଅଧିକ । ନେହେରୁଙ୍କ ଲେଖା ଓ ବକ୍ତବ୍ୟରୁ 'ସାମ୍ୟବାଦ'ର ପ୍ରଚାର 'କଂଗ୍ରେସ' ମହଲରେ ଯେତେ ବ୍ୟାପକ ହେଉଥାଏ ନେହେରୁ ଓ ସୁଭାଷଙ୍କ ବିରୁଦ୍ଧରେ ରକ୍ଷଣଶୀଳ ମନୋଭାବ ସେତେ ତୀବ୍ରରୂପେ ପ୍ରକଟିତ ହେଉଥାଏ ।

କଂଗ୍ରେସ ମହଲରେ ବାମପନ୍ଥୀ ବିଚାରଧାରା ଓ ରୀତିଗତିରେ ସମର୍ଥକ ଯୁବଗୋଷ୍ଠୀର ପୁରୋଭାଗରେ ଥାଆନ୍ତି ବୌଦ୍ଧିକ କ୍ଷେତ୍ରରେ ତେଜସ୍ୱୀ ମନୀଷୀ ନବକୃଷ୍ଣ ଚୌଧୁରୀ ଆଉ ତାଙ୍କର ସହଧର୍ମୀଣୀ ମନସ୍ୱିନୀ ବିପ୍ଳବର ଜ୍ୱଳନ୍ତ ପ୍ରତିମୂର୍ତ୍ତି ମାଳତୀ ଚୌଧୁରୀ । ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଅହିଂସା ମାର୍ଗରେ ବାରମ୍ବାର ଆପୋଷ ଆଲୋଚନା ସୂତ୍ରରେ ସ୍ୱାଧୀନତା ଲାଭର ସମ୍ଭାବନାରେ ସଂଶୟ, ବୈପ୍ଳବିକ ପନ୍ଥା ପ୍ରତି ଆଗ୍ରହ ପ୍ରକାଶ ସତ୍ତ୍ୱେ ଗାନ୍ଧିଜୀଙ୍କ ପ୍ରଦର୍ଶିତ 'ସତ୍ୟାଗ୍ରହ' ପ୍ରଣାଳୀ ବ୍ୟତୀତ ଆତଙ୍କବାଦୀ ସହିଂସ ପନ୍ଥାର କାର୍ଯ୍ୟକାରିତାରେ ସନ୍ଦେହ – ତେଣେ ସମାଜବାଦୀ ଚିନ୍ତାଧାରାର ଉତ୍ସରଣ ଓ ଉତ୍କର୍ଷରେ ଉତ୍‌ଫୁଲ୍ଲତା ଏହି ସବୁ ଓ ଅନ୍ୟାନ୍ୟ ଆନୁଷଙ୍ଗିକ ପ୍ରଶ୍ନ ହିଁ ଆନ୍ଦୋଳିତ କରୁଥିଲା ପ୍ରତ୍ୟେକ ବାମପନ୍ଥୀର ଚିତ୍ତକୁ ଏବଂ ଏସବୁର ପ୍ରମୁଖ ଆଲୋଚକ ଥିଲେ ନବକୃଷ୍ଣ । ତାଙ୍କ ନେତୃତ୍ୱରେ ସଙ୍ଗଠିତ ହେଉଥାନ୍ତି ନିଷ୍ଠାପର କଂଗ୍ରେସ ଯୁବକର୍ମୀ । ଉପର୍ଯ୍ୟୁକ୍ତ କଂଗ୍ରେସ ଗ୍ରହଣରେ ଭଗବତୀ ଯୋଗଦେଲେ ନବକୃଷ୍ଣଙ୍କ ନେତୃତ୍ୱରେ ପରିଚାଳିତ 'ବନ୍ଧୁ ଗୋଷ୍ଠୀ'ରେ । ସେଥିପୂର୍ବରୁ ନବକୃଷ୍ଣଙ୍କ ସହ ପରିଚୟ ଥିଲେ ସୁଦ୍ଧା ଭଗବତୀଙ୍କର ସଂଯୋଗ ନଥିଲା କର୍ମ କ୍ଷେତ୍ରରେ ।

ଗୋଟିଏ ଐତିହାସିକ ପରିବର୍ତ୍ତନ ମୁହୂର୍ତ୍ତରେ ଚିନ୍ତାରେ ଓ କର୍ମରେ ସମାନୁରୂପତା ପ୍ରକାଶ ପାଏ ବିଭିନ୍ନ ସ୍ଥାନରେ, ବିଭିନ୍ନ ବ୍ୟକ୍ତିବିଶେଷ, ଗୋଷ୍ଠୀବିଶେଷରେ । ଭାରତର ପ୍ରାୟ ପ୍ରତ୍ୟେକ ଅଞ୍ଚଳରେ ସ୍ୱାଧୀନତା ସଂଗ୍ରାମୀ କଂଗ୍ରେସ କର୍ମୀମାନଙ୍କ ମଧ୍ୟରେ ଅନ୍ୟାନ୍ୟ ବୁଦ୍ଧିଜୀବୀ ମହଲରେ 'ସମାଜବାଦ' ହିଁ ବିଚାରଣୀୟ ଧର୍ମ ଓ ଆଚରଣୀୟ କର୍ମ ହୋଇଉଠିଲା – ଏଣୁ ଏହି ସମୟରେ ହିଁ ଗୋଟିଏ ଦିଗରେ ନବକୃଷ୍ଣ ମାଳତୀ ଦେବୀଙ୍କ ନେତୃତ୍ୱରେ ସମାଜବାଦୀ ଗୋଷ୍ଠୀ ଗଢ଼ିବାକୁ ପ୍ରୟାସ କଲାବେଳେ ଅନ୍ୟ ଦିଗରେ ଭଗବତୀ ଓ ତାଙ୍କର ବନ୍ଧୁମାନେ ଏକତ୍ର ହୋଇ ରାଜନୈତିକ ଆଲୋଚନାରେ ପ୍ରବୃତ୍ତ ରହିଲେ । ପୁଣି, ପ୍ରାୟ ପ୍ରତ୍ୟେକ ଦିନ ସମସ୍ତଙ୍କର ମିଳିତ ବୈଠକ ବସିବା ଆରମ୍ଭ ହୋଇଗଲା କାଠଯୋଡି କୂଳ ନବକୃଷ୍ଣ ନିବାସରେ । ବୈଠକଗୁଡ଼ିକରେ ବରା ଗୁଲୁଗୁଲା ଭୋଜି ଭିତରେ ରାଜନୀତି, ଅର୍ଥନୀତି, ବିଜ୍ଞାନ, ସାହିତ୍ୟ ସମେତ ପ୍ରତ୍ୟେକ 'ବନ୍ଧୁ' ସଭ୍ୟଙ୍କର ମତିଗତି ଆଚାର ବିଚାର ଘେନି କେଉଁ କଥା ଯେ ଆଲୋଚନାରୁ ବାଦ ପଡିଲା, ନୁହେଁ । ଏହା ଫଳରେ ବନ୍ଧୁତା ଓ ସାଥୀତ୍ୱ ଦିନକୁ ଦିନ ନିବିଡ ହୋଇ ଉଠିଲା – ସନ୍ତ୍ରାସବାଦୀ



ରବି ଘୋଷ, ନୃପେନ୍ ସେନ୍ ମାର୍କସବାଦୀ ବ୍ରଜେନ୍ଦ୍ର ପାଲଙ୍କଠୁ ଆରମ୍ଭ କରି ସାଧାରଣ ଛାତ୍ର, ବୁଦ୍ଧିଜୀବୀ, ଓକିଲ, ଡାକ୍ତର ଏହି ବୈଠକରେ ଯୋଗ ଦେଉଥାନ୍ତି । ଏମାନେ ପ୍ରାୟ ପ୍ରତ୍ୟେକ କୌଣସି ହେଲେ କୌଣସି ଦେଶସେବାମୂଳକ କାର୍ଯ୍ୟରେ ଆତ୍ମନିୟୋଗ କରିଥାନ୍ତି ।

ଏଠି ଟିକିଏ ଅପ୍ରାସଙ୍ଗିକ ଭାବେ ନିତାନ୍ତ ପ୍ରାସଙ୍ଗିକ ଘଟନାର ଉଲ୍ଲେଖ ଗୁରୁତ୍ୱପୂର୍ଣ୍ଣ ହେଉଛି - ଏହା ହେଉଛି - ସେତେବେଳେ ଉତ୍କଳ ସାହିତ୍ୟ ସମାଜ ଥାଏ ବ୍ୟବସାୟୀ ମାରୁଆଡିଙ୍କ ହାତରେ । ଶ୍ରୀ ରାମଚନ୍ଦ୍ର ଭବନର ସାମନା ପିଣ୍ଡାରେ ଗୋଟିଏ ରିଡିଙ୍ଗ୍ ରୁମ୍ ଖୋଲାଯାଇଥାଏ । ପ୍ରତ୍ୟହ ଅପରାହ୍ଣ ୪ଟାରେ ଅନନ୍ତ, ଅଶୋକ ପ୍ରଭୃତି ଚଳଉଥାନ୍ତି ସେ ରିଡିଙ୍ଗ୍ ରୁମ୍ । ସେହି ରିଡିଙ୍ଗ୍ ରୁମ୍ ପାଇଁ ପ୍ରତ୍ୟହ ନାନା ପ୍ରକାର ଦୈନିକ ସାପ୍ତାହିକ, ମାସିକ ପତ୍ରପତ୍ରିକା ସଂଗ୍ରହ କରାଯାଉଥାଏ । 'ୟଙ୍ଗ ଉତ୍କଳ' ଇଂରେଜୀ ସାପ୍ତାହିକ ଅଫିସରୁ, କଂଗ୍ରେସର ବରେଣ୍ୟ ନେତା ଭୁବନାନନ୍ଦ ଦାସ ଏମ.ପି.ଙ୍କ ଘରୁ ହିଁ ଅଣାଯାଇଥାଏ ପତ୍ରପତ୍ରିକା । ଏହି ପତ୍ରପତ୍ରିକାରେ ସ୍ତୂପ ଭିତରୁ ଦିନେ ଆଖିରେ ପଡି ସହଜରେ ସଂଗୃହୀତ ହେଲା ଇଂରାଜୀରେ ଅନୁଦିତ ଟୀକା ସମ୍ବଳିତ କମ୍ୟୁନିଷ୍ଟ ମ୍ୟାନିଫେଷ୍ଟ । ସେ ପର୍ଯ୍ୟନ୍ତ ବଙ୍ଗଳାରେ ସୌମ୍ୟେନ୍ ଠାକୁରଙ୍କ ଅନୁଦିତ କମ୍ୟୁନିଷ୍ଟ ଇସ୍ତାହାର ଦେଖିବାକୁ ମିଳିଥାଏ । ମ୍ୟାନିଫେଷ୍ଟୋ ଇଂରାଜୀ ତର୍ଜମା ପାଇଲାମାତ୍ରେ ଆନନ୍ଦରେ ନାଚି ଉଠିଲେ ଭଗବତୀ । କିଛି କିଛି ଦିନ ଅନ୍ତରରେ ସେହି ସ୍ମରଣୀୟ ଭୁବନାନନ୍ଦ ଦାସ (ବି. ଦାସଙ୍କ ଘରୁ ହିଁ ତାଙ୍କର ପାର୍ଲିଆମେଣ୍ଟ କାଗଜପତ୍ର ଗହଳରୁ ପୁଣି ହାତକୁ ଆସିଲା "ମସ୍କୋ ଓୟାଲଗ" ବୁଖାରୀନ୍‌ଙ୍କ "ଐତିହାସିକ ବସ୍ତୁବାଦ", "ଷ୍ଟାଲିନଙ୍କ ରଚନାବଳୀ" ଆଉ କେତୋଟି ସୋଭିଏତ୍ ଉପନ୍ୟାସ ସହିତ "ମିରଟ ଷଡଯନ୍ତ୍ର ମାମଲାର ବନ୍ଦୀମାନଙ୍କ ଜମାନବନ୍ଦୀ", ଖଣ୍ଡେ ଡାଙ୍ଗେଙ୍କର, ଆଉ ଖଣ୍ଡେ ମିଳିତଭାବେ ଅନ୍ୟମାନଙ୍କର । ପ୍ରବଳ ଉତ୍ସାହରେ ଏସବୁର ଅଧ୍ୟୟନ ଓ ଅନୁଧ୍ୟାନରେ ନିମଗ୍ନ ହୋଇଗଲେ ଭଗବତୀ । ଆଇନ୍ ବହିଗୁଡ଼ିକର ଆଢୁଆଳରେ ବସି ଅତି ଦ୍ରୁତ ରୀତିରେ କମ୍ୟୁନିଷ୍ଟ ଭାବଦର୍ଶ ଓ କର୍ମପନ୍ଥା ଘେନି ଆଲୋଚନା କରି ଚାଲିଲେ ଦୁଇ ତିନି ଜଣ ବନ୍ଧୁଙ୍କ ସହିତ । ଭାରତରେ ଶ୍ରମିକ ଆନ୍ଦୋଳନ, ସମାଜବାଦୀ ପତ୍ର ପତ୍ରିକାର ପ୍ରକାଶ, କମ୍ୟୁନିଷ୍ଟ ପାର୍ଟି ସମ୍ପର୍କରେ ଛାଇଛାଇଆ ଖବର - କାଗଜିଆ ଧାରଣା ଯାହାଥିଲା ତାହା ସ୍ପଷ୍ଟ ଓ ପ୍ରାଞ୍ଜଳ ହୋଇ ଉଠିଲା କମ୍ୟୁନିଷ୍ଟ ମ୍ୟାନିଫେଷ୍ଟୋ ସହିତ ମିରଟ ଷଡଯନ୍ତ୍ର ମାମଲାର ଜମାନବନ୍ଦୀରେ ପ୍ରକାଶିତ ତତ୍ତ୍ୱ ଓ ତଥ୍ୟର ତୁଳନାତ୍ମକ ସମୀକ୍ଷଣରେ ସନ୍ତ୍ରାସବାଦ ପ୍ରତି ଯେଉଁ ପ୍ରବଣତା ଥିଲା ତାହା ହ୍ରାସ ପାଇ ଆସିଲା । ଭାଗବତୀ ଓ ତାଙ୍କ ବନ୍ଧୁ କେତେକଙ୍କ ମନରୁ । ସେମାନଙ୍କ ସମକ୍ଷରେ ପ୍ରଶ୍ନ ହେଲା, ବେଆଇନ୍ କମ୍ୟୁନିଷ୍ଟ ପାର୍ଟିର ସନ୍ଧାନ ମିଳିବ କିପରି, ତା ସହିତ ସଂଯୋଗ ହେବ କିପରି ?

## (୪)

ଅଳ୍ପ ଦିନ ମଧ୍ୟରେ ବନ୍ଧୁବାସିଆ ଆଲୋଚନାରେ ଆସି ଯୋଗ ଦେଲେ ଭଗବତୀଙ୍କ ବନ୍ଧୁ ପ୍ରାଣନାଥ ଓ ଗୁରୁଚରଣ । ସତ୍ୟାଗ୍ରହ ସଂଗ୍ରାମରେ କଂଗ୍ରେସ କାମରେ ବାରମ୍ବାର ଝାସ ଦେଇ କାରାବରଣ କରି ସେମାନେ ସେତେବେଳେ ଜ୍ଞାନ ଆହରଣ କାମନାରେ ଯାଇ ପଢୁଥାନ୍ତି ବନାରସର କାଶୀ ବିଦ୍ୟାପୀଠରେ । ସେହି ବିଦ୍ୟାପୀଠରେ ଆଗରୁ ଶିକ୍ଷାଲାଭ କରିଥାନ୍ତି ଶରତ ପଟ୍ଟନାୟକ । କାଶୀ ବିଦ୍ୟାପୀଠ ଥାଏ ସେତେବେଳେ ଦେଶର ସକଳ ପ୍ରକାର ଜ୍ଞାନବିଜ୍ଞାନର - ଅର୍ଥନୀତି, ରାଜନୀତି, ଇତିହାସ ବିଷୟକ ତତ୍ତ୍ୱ ଓ ତଥ୍ୟର - ଆଲୋଡନ ଓ ଅନୁଶୀଳନର କେନ୍ଦ୍ର; ଏଣୁ ବୈପ୍ଳବିକ ଭାବଧାରା ଓ କ୍ରିୟାକର୍ମର ବିଚାରଣା ସ୍ଥଳେ । ସ୍ୱାଧୀନତା ସଂଗ୍ରାମରେ ନୂତନ ଦିଗ୍‌ଦ୍ରଷ୍ଟା ନେତୃମଣ୍ଡଳୀ ପଣ୍ଡିତ ନେହେରୁ, ଶ୍ରୀ ପ୍ରକାଶ, ସମ୍ପୂର୍ଣ୍ଣାନନ୍ଦ, ଲାଲ ବାହାଦୁର ଶାସ୍ତ୍ରୀ, କିଦୱାଇ, ଆଚାର୍ଯ୍ୟ ନରେନ୍ଦ୍ର ଦେବ ପ୍ରଭୃତିଙ୍କର ପ୍ରତ୍ୟକ୍ଷ ଓ ପରୋକ୍ଷ ଗଭୀର ସମ୍ପର୍କ ଥାଏ ସେହି ବିଦ୍ୟାପୀଠ ସହିତ । ପ୍ରତିଷ୍ଠାତା ଥିଲେ ଶ୍ରୀପ୍ରକାଶଙ୍କ ପିତା ଶ୍ରୀ ଭଗବାନ ଦାସ । ସମାଜବାଦୀ ଆଦର୍ଶରେ ଅନୁପ୍ରାଣିତ ହୋଇ ସେହିଥିରେ ହିଁ ଦୀକ୍ଷିତ ହେଉଥାନ୍ତି ସେଠାକାର ଛାତ୍ରମାନେ । ଏଣୁ ପ୍ରାଣନାଥ, ଗୁରୁଚରଣଙ୍କ ସମାଜବାଦୀ ଆଦର୍ଶ ଗ୍ରହଣ ସହଜ ହୋଇଥାଏ । ଏମାନଙ୍କ ସହିତ ଭଗବତୀ ପ୍ରଭୃତିଙ୍କର ସମ୍ପର୍କ କମ୍ୟୁନିଜମ ସଂକ୍ରାନ୍ତ ବିଚାରକୁ ଗଭୀର ଓ ପୁରୀର ଯୁବ କଂଗ୍ରେସ କର୍ମୀଗୋଷ୍ଠୀର ଚେତନାକୁ ପ୍ରଖର କରିଦେଲା ।

ପୁରୀ କର୍ମୀ ଗୋଷ୍ଠୀର ପ୍ରମୁଖ ସଭ୍ୟ ଥିଲେ ପ୍ରାଣନାଥ ଓ ଗୁରୁଚରଣ ଗୋକୁଳ ମୋହନ, ଗଙ୍ଗାଧର ମିଶ୍ର, ପର୍ଶୁରାମ ପତାଦିକ ରାୟ, ଗଙ୍ଗାଧର ପାଇକରାୟ, ପୂର୍ଣ୍ଣଚନ୍ଦ୍ର ମହାନ୍ତି ଦାମୋଦର ମିଶ୍ର ପ୍ରଭୃତି ଅନ୍ୟ ସଭ୍ୟମାନେ ସେମାନଙ୍କ ସମାଜବାଦୀ ଚିନ୍ତାଧାରାରେ ପ୍ରଭାବିତ ହେବାକୁ ଲାଗିଲେ । ସେମାନଙ୍କର ଅତି ନିକଟରେ ଥିଲେ ପୁରୀ କଂଗ୍ରେସରେ ବାମପନ୍ଥୀ ଭାବଧାରାର ପ୍ରବକ୍ତା ପ୍ରତିଭାଶାଳୀ ସୁଲେଖକ ବାଗ୍ମୀ ମୋହନ ଦାସ । ସେମାନଙ୍କ ମଧ୍ୟରେ ଆଲୋଚନା ଚାଲିଥିବା ସମୟରେ ତେଣେ କଟକରେ "ନବକୃଷ୍ଣ ନିବାସ"ରେ ସମାଜବାଦ-ଅଭିମୁଖୀ ବନ୍ଧୁ ଗୋଷ୍ଠୀର ଆଲୋଚନା ପ୍ରବଳ ହୋଇ ଆସୁଥାଏ ।





ନବକୃଷ୍ଣ, ମାଳତୀ ଦେବୀ, ଭଗବତୀ ପ୍ରଭୃତିଙ୍କ ଉଦ୍ୟମରେ ପ୍ରକାଶ ପାଇଲା ଓଡ଼ିଶାରେ ପ୍ରଥମ ସମାଜବାଦୀ ପତ୍ରିକା ସାପ୍ତାହିକ 'ସାରଥୀ', ମାଳତୀ ଦେବୀଙ୍କର ଅଳଙ୍କାର ବିକ୍ରୟ ବାବତ୍ କିଛି ପାଣ୍ଠି, ଆଉ ଜଣେ ସମମତାବଲମ୍ବୀ କବିରାଜ ୰ ରାଧାନାଥ ଶତପଥୀଙ୍କର ହାତ ପ୍ରେସରେ ମୁଦ୍ରଣ ବାବତ୍ ଖର୍ଚ୍ଚ ବହନଯୋଗେ । 'ସାରଥୀ'ରେ ପ୍ରକାଶିତ ନବକୃଷ୍ଣ ଓ ଭଗବତୀଙ୍କର ଲେଖା କେତୋଟି ହିଁ ନୂତନ ସମାଜବାଦୀ ଭାବଧାରାର ଥିଲା ଆଦ୍ୟ ସଂକେତ । ଅର୍ଥନୈତିକ ଦିଗରୁ ସାମ୍ରାଜ୍ୟବାଦ-ବିରୋଧି ଭାବଧାରା ଉପରେ ଯଥାର୍ଥ ଗୁରୁତ୍ୱ ଦେଇ ଭାବପ୍ରବଣତାରେ ନୁହେଁ । କର୍ମୀକୁଳମନର ସ୍ୱପ୍ନ ଓ କଳ୍ପନାର କ୍ଷେତ୍ରରେ ମନ୍ଥନ ସୃଷ୍ଟି କରି ସମାଜବାଦୀ ଆଦର୍ଶ ଓ ଚିନ୍ତାର ସଂଗଠିତ ପ୍ରକାଶ ପ୍ରତି ସ୍ୱାଗତ ଜଣାଇଲା । ଏହା ପ୍ରକାଶ ପାଇଥିଲା କଂଗ୍ରେସ ସୋସଲିଷ୍ଟ ପାର୍ଟିର ଜନ୍ମ ପୂର୍ବରୁ ।

ଏଥି ସଂଗେ ସଂଗେ ସମାଜବାଦୀ ବିଚାର ଆଲୋଚନାକୁ ପ୍ରସାରଣଶୀଳ କରିବା ଦୃଷ୍ଟିରୁ "ନବଯୁଗ ମଣ୍ଡଳୀ" ନାମରେ ଗୋଟିଏ ପାଠଚକ୍ର ସଂଗଠିତ ହେଲା । ଏହାର ସପ୍ତାହକ ପରେ ପାକ୍ଷିକ ମାସିକ, ସାମୟିକ ବୈଠକମାନ ବସିଲା ନବକୃଷ୍ଣ ନିବାସରେ - ଭ୍ରାମ୍ୟମାଣ ରୀତିରେ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ, ଶ୍ରୀ ଶ୍ୟାମସୁନ୍ଦର ମିଶ୍ର, ଶ୍ରୀ ବ୍ରଜକିଶୋର ଦାସ, ଦିନବନ୍ଧୁ ସାହୁ, ଭଗବତୀ, ଅନନ୍ତ ପ୍ରଭୃତିଙ୍କ ବାସଗୃହରେ । ବୈଜ୍ଞାନିକ ଦୃଷ୍ଟିକୋଣରୁ ସୁ-ଲିଖିତ ବିଭିନ୍ନ ବିଷୟକ ସନ୍ଦର୍ଭମାନ ଏହି ବୈଠକଗୁଡ଼ିକରେ ଆଲୋଚିତ ହେଉଥାଏ । ବର୍ତ୍ତମାନର ଅବସରପ୍ରାପ୍ତ ବିଚାରପତି ଶ୍ରୀ ରାଜକିଶୋର ଦାସ, ଦିନବନ୍ଧୁ ସାହୁ, ବାରିଷ୍ଟର ମୁରଲୀଧର ମହାନ୍ତି, ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ, ସାରଙ୍ଗଧର ଦାସ, ଜଗନ୍ନାଥ ଦାସ, ଏମ.ପି. ଅନୁସୂୟା ପ୍ରାସାଦ ପାଠକ, ରବି ଘୋଷ, ଗୌରାଙ୍ଗଚରଣ ଦାସ, ଗୌର ଦାସ, ପ୍ରାଣନାଥ, ଗୁରୁଚରଣ, ସୁରେନ୍ଦ୍ର, ପରମାନନ୍ଦ, ଦୁର୍ଗା ଦାସ, ବିଶ୍ୱନାଥ ଓ ଅନନ୍ତ ପ୍ରଭୃତି ଯୋଗ ଦେଉଥାନ୍ତି । ଏମାନଙ୍କ ବ୍ୟତୀତ କେତେକ କଂଗ୍ରେସ କର୍ମୀ, ଡାକ୍ତର ଓ କଲେଜ ଛାତ୍ର ଭାଗ ନେଉଥାନ୍ତି । ଏହି 'ମଣ୍ଡଳ'ର ଆଲୋଚନାମାନ ପ୍ରତ୍ୟେକ ଅଂଶଗ୍ରହଣକାରୀଙ୍କ ପୂର୍ବର କେତେ ବଦ୍ଧମୂଳ ଧାରଣାକୁ ଦୋହଲାଇ ଦେଇଥିଲା, ଜୀବନରେ ନୂତନ ଦିଗ୍‌ବଳୟ ଆଭାସ ଆଣିଥିଲା । ସେମାନଙ୍କ ମଧ୍ୟରୁ ପରେ ଅନେକେ ସରକାରୀ ଓ ବେସରକାରୀ ଉଚ୍ଚ ପଦପଦବୀରେ ଅଧିଷ୍ଠିତ ହୋଇଥିଲେ । କେତେକ ସାଧାରଣ ଜନସେବା ଓ ରାଜନୀତି - କ୍ଷେତ୍ରରେ ଖ୍ୟାତି ଅର୍ଜନ କରିଥିଲେ ।

୧୯୩୨ ମସିହା ବେଳକୁ କାଶୀ ବିଦ୍ୟାପୀଠର ଅଧ୍ୟକ୍ଷ ସୁ-ମହାନ ପଣ୍ଡିତ ଆଚାର୍ଯ୍ୟ ନରେନ୍ଦ୍ର ଦେବ ଶ୍ୱାସ ରୋଗରେ ପୀଡିତ ହୋଇ ପ୍ରାୟ ସବୁ ଗ୍ରୀଷ୍ମ ସମୟରେ ପୁରୀକୁ ଆସିବା ଆରମ୍ଭ କରିଥାନ୍ତି । ତାଙ୍କର ପୁରୀର ଅବସ୍ଥାନ ସମୟରେ ଭଗବତୀ, ବୈଦ୍ୟନାଥ, ଅନନ୍ତ, ଗୋକୁଳି, ପ୍ରଭୃତି କେତେକ ଶିକ୍ଷିତ ଯୁବକ ତାଙ୍କଠାରୁ ସମାଜବାଦ ସମ୍ପର୍କରେ ଶିକ୍ଷାଲାଭର ସୁଯୋଗ ପାଇ ଧନ୍ୟ ହେଲେ । ସମସାମୟିକ ପୃଥିବୀର ରାଜନୈତିକ , ଅର୍ଥନୈତିକ ଘଟଣାବଳୀର ବିଶ୍ଳେଷଣ ତାଙ୍କର ନୂତନ ଦିଗ୍‌ଦର୍ଶନରେ ଚମତ୍କୃତ ହେଲେ । ଆଚାର୍ଯ୍ୟ ଦେବଙ୍କର ଅଗାଧ ପାଣ୍ଡିତ୍ୟ, ଶିକ୍ଷାଦାନରେ ଗଭୀର ଆନ୍ତରିକତା, ସ୍ନେହମୟ ସାଥୀତ୍ୱ ସମସ୍ତଙ୍କୁ ମୁଗ୍ଧ କରୁଥାଏ । ପୁରୀରେ ଭଗବତୀଙ୍କର ବହୁ ସମୟ ତାଙ୍କ ରାମଚଣ୍ଡୀ ସାହି ସାନିଧ୍ୟରେ ବିତୁଥିଲା । ଭଗବତୀ ପ୍ରାୟ ସେତେବେଳେ ସସ୍ତ୍ରୀକ ରହୁଥାନ୍ତି ପୁରୀର ବାସ ଗୃହରେ ।

## (୬)

କଂଗ୍ରେସର ସାଙ୍ଗଠନିକ କାର୍ଯ୍ୟ ସାଙ୍ଗକୁ ଓଡ଼ିଶାର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟଥାଏ ବଢ଼ି, ଝଡି ରିଲିଫ୍ ବା ସାହାଯ୍ୟ ବଣ୍ଟନ । କଂଗ୍ରେସର ନିଷ୍ପାପର କର୍ମୀ, ଅସ୍ପୃଶ୍ୟତା ଦୂରୀକରଣ, ନିଶାନିବାରଣ, ସୂତାକଟା ଓ ଖଦିବୁଣା ପ୍ରଭୃତି କାମରେ ଆତ୍ମନିୟୋଗ କରି ସୁଖୀ ନଥାନ୍ତି । ସେମାନେ ସମ୍ମୁଖୀନ ହେଉଥାନ୍ତି ରାଜା ଜମିଦାର, ମହନ୍ତ ମହାଜନଙ୍କ ଦ୍ୱାରା ଉତ୍ପୀଡିତ କୃଷକ ମାନଙ୍କର ତ୍ରସ୍ତ ପ୍ରାଣର ନୀରବ ହାହାକାରର, ଜୀବନ ମରଣ ସମସ୍ୟାବଳୀର । ପୁରୀ, କଟକ, ବାଲେଶ୍ୱରର, କେତେକ ଅଞ୍ଚଳରେ ବେଠି, ଭେଟି ରୋସମ ଖରଡାପଣି ଆବୁଆବ ପ୍ରଭୃତି ଘେନି ଘୋର ଅସନ୍ତୋଷ ବିକ୍ଷୋଭର ଝଙ୍କାର ମଧ ରହି ରହି ପ୍ରକାଶ ପାଉଥାଏ । କଳା ଗୋରା ବ୍ରିଟିଶ ଶାସକ ଗୋଷ୍ଠୀର ହାକିମହୁକୁମାଙ୍କର ନିର୍ମମ ଅତ୍ୟାଚାର ବିରୁଦ୍ଧରେ ସେହି କର୍ମୀମାନଙ୍କୁ ସ୍ୱର ଉତ୍ତୋଳନ କରି ମଧ ଲଢ଼ିବାକୁ ପଡୁଥାଏ । ଏଣୁ ଯୁବ କଂଗ୍ରେସ କର୍ମୀମାନଙ୍କ ମନରେ କେବଳ ନିଶା ନିବାରଣ, ଖଦି କାମରେ ତୁଷ୍ଟ ରହିବା ଆଉ ସମ୍ଭବପର ହେଉନଥାଏ । ତେବେ ୧୯୩୪ ମସିହା ବେଳକୁ ଗାନ୍ଧିଜୀ ହରିଜନ ଆନ୍ଦୋଳନ ଆରମ୍ଭ କରିଦେଲେ । ଓଡ଼ିଶାରେ ତାଙ୍କର ପଦଯାତ୍ରା ଗତାନୁଗତିକ ପନ୍ଥାର ଯାତ୍ରୀ କେତେ କଂଗ୍ରେସଙ୍କ ମହଲରେ କିଛି ଚମକ ସୃଷ୍ଟି କଲା ମାତ୍ର ବିକ୍ଷୁବ୍ଧ ଯୁବ କଂଗ୍ରେସ କର୍ମୀମାନଙ୍କ ମଧ୍ୟରେ ବିଶେଷ ପ୍ରଭାବ ଆଣି ଦେଶର ସ୍ୱାଧୀନତା ହାସଲ ଲାଗି ଆଶା ଓ ବିଶ୍ୱାସ ସଂଚାର କଲାନାହିଁ । ପଣ୍ଡିତ ନେହେରୁ ପ୍ରଭୃତିଙ୍କ ଭାଷଣ ଓ ମତାମତ ପ୍ରକାଶରେ ଏହାହିଁ



ସମଗ୍ର ଦେଶରେ ପ୍ରତିଭାତ ହେଲା - ସେମାନଙ୍କ ଆହ୍ୱାନ ଯୋଗୁଁ ସମାଜବାଦୀ ବାୟୁମଣ୍ଡଳ ସୃଷ୍ଟି ହୋଇ ଆସିଲା ।

ସମାଜବାଦୀ ଦଳ ଗଠନ କରିବାକୁ ହେବ, ଏଥିଲାଗି ବିଲାତରୁ ଉଚ୍ଚ ଶିକ୍ଷା ପାଇ ପ୍ରତ୍ୟାଗତ କମ୍ୟୁନିଷ୍ଟ ସୋସାଲିଷ୍ଟ ବୁଦ୍ଧିଜୀବୀ ଯୁବକ କେତେକ ଜୋରସୋରରେ ସାଙ୍ଗଠନିକ ପ୍ରଚାର ଚଳାଇଥାନ୍ତି । ଯୁବ କଂଗ୍ରେସ କର୍ମୀ ପ୍ରଚ୍ଛନ୍ନ କମ୍ୟୁନିଷ୍ଟ ପ୍ରଭୃତିଙ୍କୁ ଘେନି କଂଗ୍ରେସ ସୋସାଲିଷ୍ଟ ପାର୍ଟି ଗଠିତ ହେଲା । ଓଡ଼ିଶାରେ ଏହି ପାର୍ଟିର ସଙ୍ଗଠନ ସହଜ ହେଲା । କାରଣ ସେଥିପାଇଁ ୧୯୩୨-୩୩ ମସିହାରୁ କ୍ଷେତ୍ର ପ୍ରସ୍ତୁତ ହୋଇସାରିଥିଲା । ନବକୃଷ୍ଣ, ମାଳତୀ ଦେବୀ ଓ ଭଗବତୀଙ୍କ ଉଦ୍ୟମରେ କଟକରେ ଏହାର ପ୍ରଥମ ଅଧିବେଶନ ୧୯୩୪ ଫେବୃଆରୀ ମାସରେ ଅନୁଷ୍ଠିତ ହେଲା । ଏଥିରେ ସଭାପତିତ୍ୱ କଲେ ପ୍ରାଣନାଥ, ସମ୍ପାଦକ ରୂପେ ନିର୍ବାଚିତ ହେଲେ ଭଗବତୀ । ଏହାପରେ ୧୯୩୦ ଅଗଷ୍ଟରେ ପାଟନାରେ ନିଖିଳ ଭାରତ କଂଗ୍ରେସ ସମାଜବାଦୀ ସମ୍ମିଳନୀ ବସିଥିଲା । ଏହି ବୈଠକରେ କେତେକ କଂଗ୍ରେସ କର୍ମୀ ଯୋଗ ଦେଇଥିଲେ ଯେଉଁମାନେ କି ପରେ ଏହି ଦଳର ଅନ୍ତର୍ଭୁକ୍ତ ହୋଇନଥିଲେ । ନବକୃଷ୍ଣ, ମାଳତୀ ଦେବୀଙ୍କ ଆଦର୍ଶ ଅନୁଗାମୀ ସହଚାରୀ, କଟକ ଜିଲ୍ଲାର ଯୁବକଂଗ୍ରେସ କର୍ମୀ ଗୌରାଙ୍ଗ ଚରଣ ଦାସ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ବାଲେଶ୍ୱରର ଗୌର ଦାସ ପ୍ରଭୃତି କେତେ ଜଣଙ୍କ ସମେତ ପୁରୀ ଜିଲ୍ଲାର କର୍ମୀ ଗୋଷ୍ଠୀଙ୍କ ଯୋଗଦାନ ହେତୁ ଏହି ଦଳ ସବଳ ପୁଷ୍ଟ ହୋଇଉଠିଲା । ଶ୍ରୀ ମୋହନ ଦାସ, ବାମପନ୍ଥୀ କଂଗ୍ରେସ ନେତୃବୃନ୍ଦ ଏହି ଦଳ ସହିତ ସଂପୃକ୍ତ ହୋଇ ରହିଥିଲେ ।

କଂଗ୍ରେସ ସମାଜବାଦୀ ଦଳ ଗଠିତ ହେବାର ପରିକଳ୍ପନା ସମୟରେ ତାର ଅବ୍ୟବହିତ ପୂର୍ବରୁ ଭଗବତୀ ବ୍ୟସ୍ତ ହୋଇଉଠିଥାନ୍ତି; ଯେପରି ହେଉ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ଗଠନ କରିବାକୁ ହେବ । ଭାରତୀୟ କମ୍ୟୁନିଷ୍ଟ ପାର୍ଟି କେନ୍ଦ୍ରର ସଂଧାନ ନେଇ ତାହା ସହିତ ସଂପୃକ୍ତ ହେବାକୁ ହେବ । ଅନ୍ୟ ପ୍ରଦେଶରେ ଥିବା କମ୍ୟୁନିଷ୍ଟ କେନ୍ଦ୍ରର ସଂଧାନ ପାଇବା ଲାଗି ଓଡ଼ିଶାରେ ସୁଯୋଗ ଓ ସୁବିଧା ବା ଥାଏ କେଉଁଠି ?

ସେତେବେଳେ କମ୍ୟୁନିଷ୍ଟ କାର୍ଯ୍ୟକଳାପରେ ଏତେ ଗୋପନୀୟତା ଥାଏ, ଏତେ କଠୋର ଶୃଙ୍ଖଳାଗତ ବିଧିବିଧାନ ଯୋଗେ ଗତିରୀତିର ନିୟନ୍ତ୍ରଣ ଥାଏ ଯେ କୌଣସି କମ୍ୟୁନିଷ୍ଟ ଭାବପନ୍ନ ଗୋଷ୍ଠୀର ସନ୍ଧାନ ପାଇବା ସହଜସାଧ୍ୟ ନଥାଏ । ଗୁରୁଚରଣ, ପ୍ରାଣନାଥଙ୍କ ସହ ଆଲୋଚନାରେ ସ୍ଥିର ହେଲା ଯେ ସେହିମାନେହିଁ ଓଡ଼ିଶାର ବାହାରକୁ ଯା'ଆସ କରୁଛନ୍ତି ଏଣୁ କମ୍ୟୁନିଷ୍ଟ କେନ୍ଦ୍ର ସହ ନିଶ୍ଚିତଭାବେ ସମ୍ପର୍କ ସ୍ଥାପନ କରିପାରିବେ । ଶୁଣିବାକୁ ମିଳିଥାଏ ପ୍ରାଣନାଥ ଗୁରୁଚରଣ କାଶୀ ବିଦ୍ୟାପୀଠରେ ଅନ୍ୟ କେତେକ ଅନ୍ତେଃବାସୀଙ୍କ ସହିତ ମିଶି କମ୍ୟୁନିଷ୍ଟ ଗୋଷ୍ଠିଟିଏ ଗଢିବାକୁ ଚେଷ୍ଟା କରିଥାଆନ୍ତି । ସେହି ଗୋଷ୍ଠୀର ପରେ ସମ୍ପାଦକ ହୋଇଥାଆନ୍ତି ଗୁରୁଚରଣ । ୧୯୩୪ ମସିହା ବିହାର ଭୂମିକମ୍ପରେ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ନେତୃତ୍ୱରେ ସ୍ୱେଚ୍ଛାସେବୀରୂପେ କାମକରି ଗୁରୁଚରଣ କଲିକତାରେ ୧୯୩୫ରେ ରହିବା ସମୟରେ ବଙ୍ଗଳାରେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହେଲାପରେ ପ୍ରାଣନାଥ ମଧ୍ୟ ସଭ୍ୟରୂପେ ଯୋଗଦେଲେ । ସେହି ସମୟରେ ଭଗବତୀଙ୍କୁ କଲିକତାରେ ତାଙ୍କର ବଡ଼ ଭାଉଜଙ୍କ ଅସୁସ୍ଥତା ହେତୁ ରହିବାକୁ ପଡୁଥାଏ । ଏଣୁ ସେ ବଙ୍ଗଳା କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହେଲେ । ଅତି ଅଳ୍ପ ସମୟ ମଧ୍ୟରେ ଭଗବତୀ, ପ୍ରାଣନାଥ, ଗୁରୁଚରଣ, ଅନନ୍ତ ଓ ବୈଦ୍ୟନାଥଙ୍କୁ ନେଇ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ଗଠିତ ହେଲା । ତା'ର ସମ୍ପାଦକ ରହିଲେ ଭଗବତୀ । ଅଳ୍ପ ସମୟ ବ୍ୟବଧାନରେ ସେଥିରେ ଯୋଗଦେଲେ ବିଶ୍ୱନାଥ, ଗୋକୁଳି-ମୋହନ, ଗଙ୍ଗାଧର ମିଶ୍ର (ପୁରୀ) ଗଙ୍ଗାଧର ପାଇକରାୟ, ପର୍ଶୁରାମ ପଦାତିକ ରାୟ ପ୍ରଭୃତି ପୁରୀର କର୍ମୀଗୋଷ୍ଠୀର ସଭ୍ୟମାନେ । କ୍ରମେ ଛାତ୍ର ଓ ବୁଦ୍ଧିଜୀବୀ ଆନ୍ଦୋଳନରୁ ଆସିଲେ ବିଜୟ ଦାସ, ବନମାଳି ଦାସ - ପରେ ଦୁର୍ଗାଚରଣ ମହାନ୍ତି, ରାମଚନ୍ଦ୍ର ମିଶ୍ର, ରାମଚନ୍ଦ୍ର ରାମ, ଗଙ୍ଗାଧର ରଥ, ଗୋବିନ୍ଦ ମହାନ୍ତି ପ୍ରଭୃତି ଛାତ୍ରଛାତ୍ରୀଗଣ ଏବଂ ପ୍ରାୟ ସମ୍ପାନ ଏକ ସମୟରେ ଆସି ମିଶିଲ ଶରତ ପଟ୍ଟନାୟକ - ଟ୍ରେଡ ୟୁନିୟନ କାମ ଛାଡି - ମିଶିଲେ ସାଧୁ ଚରଣ ମହାନ୍ତି, ରତିକାନ୍ତ ପ୍ରଭୃତି ଅନେକ ।

## (୭)

କଂଗ୍ରେସ ସୋସଲିଷ୍ଟ ପାର୍ଟିର ସମାନ୍ତରାଳ ଭାବରେ ନୁହେଁ, ଦୃଷ୍ଟିର ଅନ୍ତରାଳରେ, ଓଡ଼ିଶାର ବାମପନ୍ଥୀ ଆନ୍ଦୋଳନର ସୂତ୍ରଧର ରୂପେ କାର୍ଯ୍ୟ ଆରମ୍ଭ କଲା, ଏହି କ୍ଷୁଦ୍ର କମ୍ୟୁନିଷ୍ଟ ପାର୍ଟି 'ୟୁନିଟ୍' । ଏହାହିଁ ପରେ ଅନେକାଂଶରେ ବ୍ୟାପକ ଓ ବଳୀୟାନ୍ ହେଇ ଉଠିଲା, ଯେତେବେଳେ ଏଥିରେ ସଂପୃକ୍ତ ହେଲେ ଦେଶ ଓ ଲୋକଙ୍କ ଲାଗି ଉତ୍ସର୍ଗୀକୃତ ହୃଦୟ ଛାତ୍ର ଓ ବୁଦ୍ଧିଜିବୀମାନେ - ଆଉ ବିଭିନ୍ନ ଆନ୍ଦୋଳନ ଜରିଆରେ ଯେଉଁମାନେ ଆସିବାକୁ ଲାଗିଲେ





କ୍ରମାନ୍ୱୟରେ । ତାଙ୍କ ଭିତରୁ ଅବଶ୍ୟ କେତେକଙ୍କୁ ଛାଡି ଅଧିକାଂଶ ମିଶିଗଲେ କମ୍ୟୁନିଷ୍ଟ ପାର୍ଟିରେ ।

କଂଗ୍ରେସ ସୋସଲିଷ୍ଟ ପାର୍ଟି କମ୍ୟୁନିଷ୍ଟ ପାର୍ଟି ଭଳି ଘନ ସନ୍ନିବଦ୍ଧ ବୈପ୍ଳବିକ ଦୃଷ୍ଟିରୁ ସୁଶୃଙ୍ଖଳିତ, ସୁନିୟନ୍ତ୍ରିତ ନଥିଲା । ଭଗବତୀ ଉଭୟ ସଙ୍ଗଠନର ସଂପାଦକ ଥାଇ ନିଜର ବିଚକ୍ଷଣ ବୁଦ୍ଧିମତ୍ତା, ବିଶ୍ଳେଷଣାତ୍ମକ ଶିକ୍ଷା ଓ ଦୀକ୍ଷା ପ୍ରଦାନ ଯୋଗେ ସାମ୍ୟବାଦୀ ସମାଜର ପ୍ରତିଷ୍ଠା ଲାଗି ଆବେଗପ୍ରବଣ ହୃଦୟବାନ ଯୁବକମାନଙ୍କୁ କମ୍ୟୁନିଷ୍ଟ ପାର୍ଟିକୁ ଟାଣି ଆଣି ପାରିଥିଲେ । କମ୍ୟୁନିଷ୍ଟ ପାର୍ଟିର ଗୁପ୍ତ ପାଠଚକ୍ରମାନ ଚଳାଉଥିଲେ ।

ଉଭୟ ପାର୍ଟିର ନିର୍ଦ୍ଧାରଣ ଯୋଗେ କର୍ମପନ୍ଥାର ପ୍ରଥମ ପଦକ୍ଷେପ ଗ୍ରହଣ କରାଗଲା ବିଦେଶୀ ସରକାରର ଦମନମୂଳକ ନୀତି ଓ କୌଶଳରେ ନିଶ୍ଚେତନ ଛାତ୍ର ବୁଦ୍ଧିଜୀବୀମାନଙ୍କୁ ନିର୍ଘାତ୍ ଭାବରେ ପ୍ରହାର କରି ସଚେତ କରିବାକୁ ହେବ । ପ୍ରଥମେ ଦେଖାଗଲା, ଓଡ଼ିଶାର ଛାତ୍ର ସମ୍ମିଳନୀର ନେତୃତ୍ୱରୁ ପ୍ରାତଃ ସ୍ମରଣୀୟ ଗୋପବନ୍ଧୁ ୧୯୨୨ରେ ପ୍ରାୟ ଓହରିଗଲେ । ପରେ ପୁରାପୁରି ତାହା ବ୍ରିଟିଶ୍ ଦାସାନୁଦାସଙ୍କ ପ୍ରଚାରର ମାଧ୍ୟମ ହେଉଛି । କେତେକାଂଶରେ ଉଦାରନୈତିକ ଦୃଷ୍ଟିକୋଣରୁ ସମାଜସଂସ୍କାରକ ଉଦାରପନ୍ଥୀ ବରେଣ୍ୟ ନେତା ଲକ୍ଷ୍ମୀନାରାୟଣ ସାହୁ ତାକୁ ସେବା - ଅନୁମୁଖୀ କରାଇ କୌଣସିମତେ ଜୀବନ୍ତ ରଖିଥିଲେ । ତାଙ୍କ ପରେ (ଜର୍ଜ ପଟ୍ଟନାୟକ ଓ ବିଜୁ ପଟ୍ଟନାୟକଙ୍କ ପିତା) ଓଡ଼ିଆ ଜାତୀୟତା ପ୍ରେମୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକ (ଯେ କି ସାଧାରଣ ମୁନ୍‌ସଫ-ନିଜର ସ୍ୱାଧୀନ କାର୍ଯ୍ୟକଳାପ ଯୋଗୁଁ ନୌକରୀରେ ଉନ୍ନତି କରିପାରି ନଥିଲେ) ସାହିତ୍ୟ ପୁସ୍ତକ ପ୍ରକାଶ କରିବା ସଂଗେ ସଂଗେ ଓଡ଼ିଆ ଛାତ୍ର ମନକୁ ବିକାଶମୁଖୀ କରିବାକୁ ଚାହୁଁଥିଲେ । ନିଷ୍ପତ୍ତି ଅନୁଯାୟୀ ନୂତନ ଛାତ୍ର ସମ୍ମିଳନୀର ଆୟୋଜନ ଚାଲିଲା । ପ୍ରଥମ ସଭାପତି ହୋଇଥିଲେ ବର୍ତ୍ତମାନର ଅବସରପ୍ରାପ୍ତ ବିଚାରପତି ମନସ୍ୱୀ ଶ୍ରୀ ହରିହର ମହାପାତ୍ର । ଉଦ୍‌ଘାଟକ ରହିଲେ ଆଇନ୍ କଲେଜର ଅଧ୍ୟାପକ ୰ ଶ୍ରୀ ବାନାର୍ଜୀ ଓ ଅଭ୍ୟର୍ଥନା । ସଭାର ସଭାପତି ଅନନ୍ତ । ଏହି ସମ୍ମିଳନୀରେ ସମସ୍ତ ନୀତି ନିର୍ଦ୍ଧାରିତ ହେଉଥିଲା ଭଗବତୀଙ୍କ ନେତୃତ୍ୱରେ, ପରିଚାଳିତ ଗୋଷ୍ଠୀ ଦ୍ୱାରା । ଏହି ସମ୍ମିଳନୀ ପ୍ରଥମେ ଆହ୍ୱାନ ଦେଲା - ଗୁରୁ, ଗାଡିଆନ୍, ଗଭର୍ଣ୍ଣମେଣ୍ଟ ବିରୁଦ୍ଧରେ ସଂଘବଦ୍ଧ ଆନ୍ଦୋଳନ କରିବାକୁ ହେବ ଛାତ୍ରମାନଙ୍କୁ । ସଂଖ୍ୟାରେ ଅତ୍ୟଳ୍ପ ହେଲେ ମଧ୍ୟ ସେ ସମୟର ଅମଲାତାନ୍ତ୍ରିକ ଗୁରୁ ଓ ଗାଡିଆନ୍‌ମାନଙ୍କୁ ଏହା ଚମକାଇ ଦେଇଥିଲା । 'ବେତ ମାଡ ବନ୍ଦ ହେଉ, ଛାତ୍ରମାନଙ୍କୁ ମତ ପ୍ରକାଶର ଅବାଧ ସ୍ୱାଧୀନତା ମିଳୁ' ଏହିଭଳି ସ୍ଲୋଗାନରେ କେଉଁ ସ୍କୁଲ ବା କଲେଜ ପିଲା ସ୍ଥିର ହୋଇ ରହିପାରନ୍ତା ? ଏହା ଫଳରେ ଛାତ୍ର ସମାଜ ସଂଗଠିତ ହେଲା । ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବାକୁ ଏପରିକି ସମାଜବାଦ ଆଦର୍ଶ ଗ୍ରହଣ କରିବାକୁ ଅନେକ ଛାତ୍ର ଆଗ୍ରହୀ ହେଲେ । ମାନ୍ଦ୍ରାଜରେ ନିଖିଳ ଭାରତ ଛାତ୍ରସଂଘ ସମ୍ମିଳନୀରେ ଓଡ଼ିଶାରୁ ପ୍ରତିନିଧିତ୍ୱ କଲେ ଅନନ୍ତ ଓ ବୈଦ୍ୟନାଥ । ଏହାପରେ ଛାତ୍ର ସଂଘ ସୁସଙ୍ଗଠିତ ରୂପ ନେଲା - ଓଡ଼ିଶାର ଛାତ୍ର ଯୁବ ସମାଜ ମହାଭାରତୀୟ କର୍ମ କ୍ଷେତ୍ରରେ ଅବତୀର୍ଣ୍ଣ ହେଲା ।

ଛାତ୍ର ଆନ୍ଦୋଳନର ସାଫଲ୍ୟରେ ଉତ୍ସାହିତ ହୋଇ ଭଗବତୀ ଓ ତାଙ୍କ ସାଥୀମାନେ ରାଜ୍ୟରେ ସ୍ଥିର କଲେ ବୁଦ୍ଧିଜୀବୀମାନଙ୍କୁ ସଚେତନ କରିବାକୁ ହେବ । ଏଥିପାଇଁ ସାହିତ୍ୟ ସଂସ୍କୃତି କ୍ଷେତ୍ରରେ ଉଦ୍‌ବେଳନ ଆଣିବାକୁ ହେବ । ଏଇ ଦୃଷ୍ଟିରୁ ବିଦେଶରୁ ଶିକ୍ଷାପ୍ରାପ୍ତ କେତେଜଣ ଅଧ୍ୟାପକ, ସ୍ୱାଧୀନଚେତା ନିର୍ଭୀକମନା ବୟୋଜ୍ୟେଷ୍ଠ କେତେକ ଶିକ୍ଷାବିତ୍ ପ୍ରଭୃତିଙ୍କୁ ଏକତ୍ର କରି ବିଜ୍ଞାନ, ଦର୍ଶନ, ଅର୍ଥନୀତି, ଇତିହାସ, ସାମାଜିକ ବିଜ୍ଞାନ, ସାହିତ୍ୟ, ସଂସ୍କୃତି ଆଦି ସମ୍ପର୍କରେ ଆଲୋଚନା ଆରମ୍ଭ କରିବାକୁ ହେବ । ଆଶା କରୁଥିଲେ ତାହା ସମାଜବାଦୀ ହେଉ କି ନହେଉ ସାଧାରଣଭାବେ, ସମସ୍ତ ପ୍ରକାର କୁସଂସ୍କାର ବିରୁଦ୍ଧରେ, ସ୍ୱାଧୀନ ଚିନ୍ତା ନିରୋଧକାରୀ ସାମ୍ରାଜ୍ୟବାଦୀ ଦମନ ଓ ଆଧିପତ୍ୟ ବିରୁଦ୍ଧରେ ଅନ୍ତତଃ ଉତ୍ତେଜନା ଓ ଉଦ୍ଦୀପନା ସୃଷ୍ଟି କରିବ । ନବକୃଷ୍ଣ, ମାଳତୀ ଦେବୀ ସହାୟତାରେ ନବଯୁଗ ସାହିତ୍ୟ ସଂସଦର ସପ୍ତାହବ୍ୟାପୀ ଆଦ୍ୟ ଅଧିବେଶନ ୨୯.୧୧.୩୫ ରୁ ୪.୧୨.୩୫ ଯାଏ ଅନୁଷ୍ଠିତ ହେଲା । ଏହି ଅଧିବେଶନରେ ବିଭିନ୍ନ ବିଷୟରେ ପ୍ରବନ୍ଧମାନ ଲିଖିତ ହୋଇ ଆଲୋଚିତ ହେଲା । ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ପ୍ରଭୃତି ମୁକ୍ତିକାମୀ ବରେଣ୍ୟ ସାହିତ୍ୟ ସାଧକମାନଙ୍କର ସ୍ଥାନ ତ ନଥିଲା ଉତ୍କଳ ସାହିତ୍ୟ ସମାଜରେ - ସାହିତ୍ୟ ସମାଜ ଥିଲା କେତେକ ଅର୍ଥଲୋଭୀ ଓକିଲ, ମହକିଲ, ବଣିକ ବେପାରୀଙ୍କ ଆଡ୍ଡାସ୍ଥଳୀ । ରାଜନୀତିରେ ଚରମପନ୍ଥୀ ନହୋଇ ମଧ୍ୟ, ବିଦ୍‌ବତ୍ତା ଓ ସ୍ୱାଭାବିକ ଉଦାରତା ଯୋଗୁଁ ନବଯୁଗ ସାହିତ୍ୟ ସଂସଦକୁ ସ୍ୱାଗତ କଲେ ପଣ୍ଡିତ ନୀଳକଣ୍ଠ । ତାଙ୍କର ନବଭାରତର ବିଶେଷ ସଂଖ୍ୟା ପ୍ରକାଶ ପାଇଲା - ସାହିତ୍ୟକୁ ବାସ୍ତବତାଭିତ୍ତିକ ଓ ସାମ୍ରାଜ୍ୟବାଦୀ ବିରୋଧୀ ସଂଗ୍ରାମଶୀଳ କରିବା ଦିଗରେ ଏହି ସଂସଦ ହିଁ ଓଡ଼ିଶାରେ ଆହ୍ୱାନ ଦେଲା । ଓଡ଼ିଶାର ତରୁଣ ଲେଖକ ଓ



ସାହିତ୍ୟିକମାନେ ଅନୁପ୍ରାଣିତ ହେଲେ, ସାହିତ୍ୟରେ ନୂତନ ଭାବରେ ସଂବେଦନାର ସଂଯୋଗ ପାଇଁ । ବଙ୍ଗଳା ଓ ଆନ୍ଧ୍ର ପ୍ରଗତିଶୀଳ ଲେଖକ ଓ ଅଧ୍ୟାପକମାନେ ଏହି ସଂସଦ ସହିତ ସମ୍ପର୍କ ରଖିଲେ । ଏହି ସଂସଦ ଗଠିତ ହେବା କିଛିଦିନ, କାହିଁକି ବର୍ଷକ ପରେ ଭାରତୀୟ ପ୍ରଗତିଶୀଳ ଲେଖକ ସଂଘ ଗଠିତ ହୋଇଥିଲା । ନବଯୁଗ ସାହିତ୍ୟ ସଂସଦ ଏହି ସଂଘରେ ସଂଯୁକ୍ତ ହୋଇଥିଲା । ପଣ୍ଡିତ ନେହେରୁ ଓଡ଼ିଶାରେ ନିର୍ବାଚନ ପ୍ରଚାର କରିବା ସମୟରେ କଟକରେ ନବଯୁଗ ସାହିତ୍ୟ ସଂସଦରେ ଅଭିନନ୍ଦନ ଗ୍ରହଣ କରି ଉଦ୍‌ବୋଧନ ଦେଇଥିଲେ । ଏହି ସଂସଦର ସଂପାଦକ ଥିଲେ ଅନନ୍ତ, ବିଶ୍ୱନାଥ, ଭଗବତୀ ହିଁ ନେପଥ୍ୟରେ କାର୍ଯ୍ୟ କରୁଥିଲେ ।

ଏଇ ଗୋଷ୍ଠୀ ପ୍ରତି, ତତ୍‌କାଳୀନ ପ୍ରତିଷ୍ଠିତ ସାହିତ୍ୟିକ ନେତାମାନଙ୍କର ମନୋଭାବ "ଉତ୍କଳ ସାହିତ୍ୟ'ର ମନ୍ତବ୍ୟରୁ ହିଁ ପ୍ରକାଶ ପାଏ । "ଦେଶରେ ଅକର୍ମା ସଂଖ୍ୟା ବଢିଲେ, ଖାଇବାକୁ ନ ମିଳିଲେ, ଅବିବାହିତ ଅଥଚ ଶିକ୍ଷିତ ଯୁବକମାନେ ଏଇ ସବୁ ବିପ୍ଳବାତ୍ମକ ଭାବରାଶି ଆହରଣ କରିଥାନ୍ତି ।୨୨ (ବିବିଧ ପ୍ରସଙ୍ଗ, ୩୯।୮ ମାର୍ଗଶିର ୧୩୪୩)

ସ୍ୱତନ୍ତ୍ର ଭାବରେ ଛାତ୍ର ଓ ବୁଦ୍ଧିଜୀବି ସମାଜର ପରିସର ବା କେତେ, ସାମ୍ରାଜ୍ୟବାଦୀ ବିରୋଧୀ ଆନ୍ଦୋଳନରେ - ସମାଜବାଦୀ ଆନ୍ଦୋଳନ ତ ଦୂରର କଥା - ତାହା ପୁଣି କେତେ ସଂକୀର୍ଣ୍ଣ ଓ କେତେ ସୀମାବଦ୍ଧ ଥିଲା ସେ ସମୟରେ ଏହାହିଁ ଅନୁଭୂତ ହେଉଥାଏ । ଏଣୁ ସଂକଳ୍ପ ନିଆଗଲା, ଶ୍ରମଜୀବୀ ଜନ ସାଧାରଣଙ୍କ ପ୍ରାଣରେ ଶକ୍ତି ସଂଚାର ଆଣି ସେମାନଙ୍କୁ ସଂଘବଦ୍ଧ କରି ସଂଗ୍ରାମଶୀଳ କରିବାରେ ଲାଗିବାକୁ ହେବ । ନିଜ ଶୋଷଣର ଶୃଙ୍ଖଳ ସେହି ମାନେ ହିଁ ଛିନ୍ନ କରିପାରିବେ !!

ଏହି ଲକ୍ଷ୍ୟ ସାଧନ ପାଇଁ ମୁଷ୍ଟିମେୟ ହେଲେ ସୁଦ୍ଧା ସମାଜବାଦୀ ଓ ସାମ୍ୟବାଦୀ କେତେ ଜଣ ମାତ୍ର ପ୍ରାଣପଣେ ଲାଗି ପଡିଲେ । କଂଗ୍ରେସ କର୍ମୀମାନେ ତ ରାଜା ଜମିଦାରଙ୍କ ଅତ୍ୟାଚାରର ସମ୍ମୁଖୀନ ହେଉଥାନ୍ତି । ନବକୃଷ୍ଣ, ମୋହନ ଦାସ, ପ୍ରାଣନାଥ, ଗୋକୁଳି ମୋହନ ପ୍ରଭୃତିଙ୍କ ସହିତ ଭଗବତୀ କଂଗ୍ରେସ ଭିତରେ ଥାଇ ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟ ରହି ଜମିଦାର ଓ ସରକାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ଅନ୍ୟାୟ କରଟିକସ, ଦାଖଲ ଖାରଜ, ରୋଷମ୍ ଓ ଅନ୍ୟାନ୍ୟ ପାଉଣାପତ୍ର ରଦ୍ଦ ହେବା ପାଇଁ କଂଗ୍ରେସର ପ୍ରସ୍ତାବ ଗ୍ରହଣ କରାଇଲେ ।

## (୮)

୧୯୩୫ ଭାରତ ଆଇନ୍ ଅନୁଯାୟୀ କଂଗ୍ରେସ ଆସେମ୍ବ୍ଲି ନିର୍ବାଚନରେ ଭାଗ ନେବା ଠିକ୍ କଲା - ବିଦେଶୀ ଶାସନ ଫାଶ ଟିକିଏ କୋହଳ ହୋଇ ଆସିଲା ନାହିଁ, ମସୃଣ ହୋଇ ଉଠିଲା । ଅବାଧରେ ମତ ବ୍ୟକ୍ତ କରି ଜନସାଧାରଣଙ୍କ ମନରେ ଜାଗରଣ ଆଣିବା କେତେକାଂଶରେ ସହଜ ହୋଇଗଲା । ମୋଗଲବନ୍ଦୀ ଅଞ୍ଚଳରେ ଜମିଦାରୀ, ସର୍ବରାକାରୀ, ମୁସ୍ତାଦାରୀ ପ୍ରଥା ହେତୁ ଲୋକଙ୍କ ଉପରେ ଘୋର ଅତ୍ୟାଚାର ଚାଲିଥାଏ । ସେମାନଙ୍କ ଦୁଃଖ ଥାଏ ବର୍ଣ୍ଣନାତୀତ । ଓଡ଼ିଶାରେ କଳକାରଖାନା - ଶ୍ରମିକ ନଥାନ୍ତି । ଓଡ଼ିଶା ଶ୍ରମିକମାନ ଥାଆନ୍ତି ଜାମସେଦପୁର, କଲିକତା, ଆସାମ ଚାହା ବଗିଚାରେ । ସେହି ଶ୍ରମିକମାନେ ଅଧିକାଂଶ ବାସଚ୍ୟୁତ୍ ଭୂମିହୀନ, ତଥାପି ସେମାନଙ୍କର ମୋହ ଥାଏ ନିଜ ନିଜର ଗ୍ରାମ ପ୍ରତି । ଓଡ଼ିଶାର ଭିତରେ ଶ୍ରମିକମାନଙ୍କର ସଙ୍ଗଠନ ନଥାଏ; କିନ୍ତୁ କଲିକତା ପ୍ରଭୃତିରେ ଶ୍ରମିକ ମାଲିକ ସଂଘର୍ଷରେ ପଶି ସେମାନେ ନିଜର ସ୍ୱାର୍ଥ କଥା ଜାଣି ଯାହା ଅଳ୍ପ ବହୁତେ ସଚେତନ ହେଉଥାଆନ୍ତି ।

୧୯୩୪ ମସିହାରୁ କୃଷକ ଆନ୍ଦୋଳନ ଠାଏ ଠାଏ ଆରମ୍ଭ ହୋଇଗଲା; ୧୯୩୫-୩୬ ବେଳକୁ ତେଜି ଉଠିଲା । ଏହି ଆନ୍ଦୋଳନର ନେତୃତ୍ୱ ନେଲେ କଂଗ୍ରେସ ସମାଜବାଦୀ ଦଳ । ୧୯୩୬ ମସିହାରେ ପ୍ରଥମେ କୃଷକ ସମ୍ମିଳନୀ ବସିଲା କଟକରେ 'ମୋହନଲାଲ ଗୌତମ'ଙ୍କ ସଭାପତିତ୍ୱରେ - ଏହି ସମ୍ମିଳନୀରେ ଅଭ୍ୟର୍ଥନା ସମିତିର ସଭାପତି ଥିଲେ ପଣ୍ଡିତ ଗୋଦାବରୀଶ ମିଶ୍ର । ଏଥିରେ ପ୍ରଥମେ ହିଁ ଦାବୀ ଉଠିଲା - 'ଜମିଦାରୀ' ସର୍ବରାକାରୀ' ଉଚ୍ଛେଦ ହେଉ, 'ମୁସ୍ତାଦାରୀ' ରଦ୍ଦ ହେଉ - ଏହାପରେ କୃଷକ ସଙ୍ଗଠନ ବ୍ୟାପକ ହୋଇ ଉଠିଲା । କୃଷକ ସମ୍ମିଳନୀର ଦ୍ୱିତୀୟ ଅଧିବେଶନ ବସିଲା 'ସ୍ୱାମୀ ସହଜାନନ୍ଦ ସରସ୍ୱତୀ'ଙ୍କ ସଭାପତିତ୍ୱରେ, ପୁରୀରେ । ସେତେବେଳେ କଂଗ୍ରେସ ସମାଜବାଦୀ ଦଳରେ, ବହୁ ଛାତ୍ର ଓ କର୍ମୀ ଆସି ଯୋଗ ଦେଇଥାନ୍ତି । ସେମାନଙ୍କର ଅକ୍ଲାନ୍ତ ପରିଶ୍ରମ ହେତୁ କୃଷକ ଆନ୍ଦୋଳନ କ୍ରମେ ପ୍ରଖରରୁ ପ୍ରଖରତର ହେଲା ।

## (୯)

ତେଣେ ସମସ୍ତେ ଆନ୍ଦୋଳନମୂଳକ କାର୍ଯ୍ୟ ସହିତ ସଂଗଠନମୁଖୀ କ୍ରିୟାକର୍ମ ଯୋଗେ ଦୃଢଭାବରେ ଚାଲିଥାଏ ଦଳର ବିକାଶ ସାଧନ । ପାଠଚକ୍ରମାନେ ବସୁଥାଏ ବିଭିନ୍ନ ସ୍ଥାନରେ ।





କଂଗ୍ରେସ ନିର୍ବାଚନ କାର୍ଯ୍ୟରେ ପଶିଲାରୁ ଆସେଂବ୍ଲିକୁ ନିର୍ବାଚିତ ହେଲେ ନବକୃଷ୍ଣ, ପ୍ରାଣନାଥ, ମୋହନ ଦାସ ପ୍ରଭୃତି । କଂଗ୍ରେସ ମନ୍ତ୍ରୀତ୍ୱ ନେବା ହେତୁ ଲୋକେ ନିର୍ଭୟରେ ସଭା ସମିତିରେ ଯୋଗଦେଲେ । କୃଷକ ସଂଗଠନର ମୁଖପତ୍ର ଭାବେ ସାପ୍ତାହିକ 'କୃଷକ' ପ୍ରକାଶିତ ହେବା ସ୍ଥିର ହେଲା ଖୋର୍ଦ୍ଧାଠାରେ । ସେଥିରେ ସଂପାଦକ ରହିଲେ ଭଗବତୀ । ପରିଚାଳନା ଦାୟିତ୍ୱରେ ରହିଲେ ଗୁରୁଚରଣ । ପୁରୀ ଜିଲ୍ଲାରେ ସେହି ଖୋର୍ଦ୍ଧାରେ ହିଁ ଆନ୍ଦୋଳନ ବ୍ୟାପକ ହେଲା । ସମାଜବାଦୀ ଆନ୍ଦୋଳନର ମୁଖ୍ୟସ୍ଥଳୀ ହୋଇଉଠିଲା ଖୋର୍ଦ୍ଧା ।

କୃଷକ ଆନ୍ଦୋଳନ କ୍ଷେତ୍ରରେ ସମାଜବାଦୀଙ୍କ ଆଗରେ ସଂଗ୍ରାମ ଥିଲା ତ୍ରିମୁଖୀ । କଂଗ୍ରେସ ଭିତରେ ଥାଇ ଜମିଦାର ଶ୍ରେଣୀୟ ନେତୃବୃନ୍ଦଙ୍କ ସହିତ ଲଢିବାକୁ ହେଉଥାଏ; କଂଗ୍ରେସ ବାହାରେ ବ୍ରିଟିଶ ବେୟନେଟ୍‌ର ସୁରକ୍ଷିତ ରାଜା, ଜମିଦାର, ମହନ୍ତ, ମହାଜନ, ସର୍ବରାକାର, ମୁସ୍ତାଦାର ପ୍ରଭୃତିଙ୍କ ବିରୁଦ୍ଧରେ ଛିଡା ହେବାକୁ ପଡୁଥାଏ, ଶେଷରେ ସାମ୍ନାକରିବାକୁ ହେଉଥାଏ ବ୍ରିଟିଶ ଶାସକ ଗୋଷ୍ଠୀର ଅମଲାତନ୍ତ୍ରୀମାନଙ୍କୁ । 'ଜମିଦାରୀ, ସରବରାକାରୀ ରଦ୍ଦ ହେଉ' - 'ମଠ ଧନ କୋଠ ହେଉ' ପ୍ରଭୃତି ସ୍ଲୋଗାନ ସହିତ ଇନ୍‌କିଲାବ୍ ଜିନ୍ଦାବାଦ୍ ଧ୍ୱନିତ ହେବାକୁ ଲାଗିଲା । ସଭାସମିତିରେ, ପଟୁଆରରେ ଯୋଗଦେଉଥାଆନ୍ତି । ପ୍ରଚାର ଓ ସଂଗଠନ କାର୍ଯ୍ୟରେ ଭଗବତୀ, ବୁଲୁଥାନ୍ତି ଗାଁ ଗାଁରେ ।

କୃଷକ ଆନ୍ଦୋଳନ ଯୋଗୁଁ ଗଡ଼ଜାତ ଅଞ୍ଚଳରେ ଦେଖା ଦେଲା ପ୍ରବଳ ଉତ୍ସାହ ଓ ଉଦ୍ଦୀପନା । ସେସବୁ ଅଞ୍ଚଳରୁ ବିତାଡିତ ଓ ପଳାତକ ବହୁ କୃଷକ ଆସି ମୋଗଲବନ୍ଦୀ ଅଞ୍ଚଳର କୃଷକ ଆନ୍ଦୋଳନରେ ଯୋଗ ଦେଇଥାନ୍ତି । ଏଣୁ ମୋଗଲବନ୍ଦୀ ଜିଲ୍ଲା ସଂଲଗ୍ନ ଗଡଜାତଗୁଡ଼ିକରେ ପ୍ରଥମ ଗଜତାତ ଆନ୍ଦୋଳନର ସୂତ୍ରପାତ ସମ୍ଭବ ହେଲା । ନୀଳଗିରି, ଢେଙ୍କାନାଳ , ତାଳଚେର, ରଣପୁରରେ ପ୍ରଥମେ ବିଦ୍ରୋହର ବହ୍ନି ଜଳି ଉଠିଲା । ରାଜନ୍ୟବର୍ଗଙ୍କ ଆସନ ଟଳମଳ ହେଲା ଓଡ଼ିଶାରେ । ଏହି ଆନ୍ଦୋଳନର ସଂଚାଳକ ଥିଲେ ନବକୃଷ୍ଣ, ମାଳତୀ ଚୌଧୁରୀ, ଭଗବତୀ ଓ ସେମାନଙ୍କ ସହକର୍ମୀ ସାଥୀବୃନ୍ଦ । ଏହି ଆନ୍ଦୋଳନରେ ଯୋଗଦେଲେ ତ୍ୟାଗୀ ଓ ବିପ୍ଳବୀ ପୁରୁଷ ସାରଙ୍ଗଧର ଦାସ । ଆନ୍ଦୋଳନର ଅଧିକାଂଶ ଉଚ୍ଚ କଂଗ୍ରେସ ନେତୃବୃନ୍ଦ ଥିଲେ ଆପୋଷ ମାର୍ଗୀ ଓ ରାଜା ରାଜୁଡାଙ୍କ ପ୍ରଚ୍ଛନ୍ନ ସମର୍ଥକ । କିନ୍ତୁ ଗଡଜାତ ଆନ୍ଦୋଳନର ପ୍ରକୃତ ସେନାପତିତ୍ୱ କରିଥିଲେ ସେହି ଗଡଜାତ ଅଞ୍ଚଳର ହରମୋହନ ପଟ୍ଟନାୟକ, ବୈଷ୍ଣବ ପଟ୍ଟନାୟକ ପ୍ରଭୃତି । ଆନ୍ଦୋଳନର ଗୋଟିଏ ଭିତରି ବା ଗୋପନୀୟ ବିଭାଗ ଥିଲା, ଯାହା ଗଡଜାତ ଅଞ୍ଚଳରେ ପ୍ରଚାର କାର୍ଯ୍ୟ ପରିଚାଳନା କରୁଥିଲା । ଏହି ଭିତିରି ସଙ୍ଗଠନର ମନ୍ତ୍ର ଗୁରୁ ଓ ପରିଚାଳକ ଥିଲେ ଭଗବତୀ ଓ ତାଙ୍କର କମ୍ୟୁନିଷ୍ଟ ସାଥୀଗଣ । ସେ ସମୟରେ 'ରଣ ଭେରୀ' ନାମରେ ଏକ ପ୍ରଚାରପତ୍ର ପ୍ରକାଶ କରାଯାଉଥାଏ ।

କୃଷକ ଓ ଗଜତାତ ଆନ୍ଦୋଳନ ସଂକ୍ରାନ୍ତ ତଥ୍ୟମାନ ଏପର୍ଯ୍ୟନ୍ତ ନିରପେକ୍ଷ ଦୃଷ୍ଟିରେ ସଙ୍କଳିତ ଓ ବିଚାରିତ ହୋଇନାହିଁ । ଯାହା ପ୍ରକାଶ ପାଇଛି ତାହା କେତେକାଂଶରେ ପକ୍ଷପାତିତା ଦୋଷରେ ଦୃଷ୍ଟି ଓ ବିକୃତ । ସେ ଯାହା ହେଉ ଗଡଜାତ ଆନ୍ଦୋଳନରେ ନୀଳଗିରୀ, ଢେଙ୍କାନାଳ, ତାଳଚେରର ତୁମୁଳ ଜନସଂଗ୍ରାମ ଓ ସତ୍ୟାଗ୍ରହ ପରିଚାଳନାର ଯାବତୀୟ କାର୍ଯ୍ୟରେ ଭଗବତୀ ଥିଲେ ସମ୍ମୁଖ ଭାଗରେ । ଗୋଟିଏ ସତ୍ୟାଗ୍ରହୀ ଫୌଜର ଅଧିନାୟକ ଭାବେ ସେ ଢେଙ୍କାନାଳରେ ପ୍ରବେଶ କରିଥିଲେ, ଯେପରି ପ୍ରବେଶ କରିଥିଲେ ଅନ୍ୟ ଫୌଜର ଅଧିନାୟକ ରୂପେ ନବକୃଷ୍ଣ, ଗୌରାଙ୍ଗ ଦାସ ଓ ଗୋକୁଳି ମୋହନ ପ୍ରଭୃତି ।

ମୋଟ ଉପରେ କୃଷକ ଆନ୍ଦୋଳନ ଓ ଗଡଜାତ ଆନ୍ଦୋଳନର ପ୍ରତ୍ୟେକ ପର୍ଯ୍ୟାୟରେ ପ୍ରତ୍ୟକ୍ଷ ଭାବେ ଅଗ୍ରଭାଗରେ ଥିଲେ ଭଗବତୀ ।

## (୧୦)

ଦ୍ୱିତୀୟ ମହାଯୁଦ୍ଧର ବିଗୁଲ୍ ବାଜି ଉଠିଲା - ଓଡ଼ିଶାରେ ୧୯୩୬ ମସିହାରୁ ଯେଉଁ ଜନ ଆନ୍ଦୋଳନ ପ୍ରବଳ ହୋଇ ଆସଥିଲା, ତାର ଦିଗ୍‌ନିର୍ଣ୍ଣାୟକ ଥିଲେ ଅନ୍ୟ କେତେକ ସାମ୍ୟବାଦୀ ଯୁବକମାନଙ୍କ ସହିତ ଭଗବତୀ । କିନ୍ତୁ ୧୯୩୯-୪୦ ମସିହାରେ କଂଗ୍ରେସ ସମାଜବାଦୀ ଦଳକୁ ଜୟପ୍ରକାଶ ନାରାୟଣ ପ୍ରଭୃତିଙ୍କ ଇଙ୍ଗିତରେ ଭାଙ୍ଗି ଦିଆଗଲା - କାରଣ ସେଥିରେ କମ୍ୟୁନିଷ୍ଟମାନଙ୍କ ଆଧିପତ୍ୟ ବଢିଯାଇଥିଲା । କମ୍ୟୁନିଷ୍ଟମାନେ ସେଥିରୁ ସ୍ୱତନ୍ତ ହେଲାପରେ 'ଆଗେଇ ଚାଲ' ନାମରେ ଏକ ହାତ ଲେଖା ପତ୍ରିକା ପ୍ରକାଶ କଲେ ।

ସେତିକିବେଳେ କିନ୍ତୁ ଗାନ୍ଧିଜୀଙ୍କ ନେତୃତ୍ୱରେ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ ହେଉ ନହେଉଣୁ କମ୍ୟୁନିଷ୍ଟ ଷଡଯନ୍ତ୍ର ମକଦ୍ଦମାରେ ଗିରଫ ହେଲେ ଭଗବତୀ ଓ ତାଙ୍କର ଅନ୍ୟ ସାଥୀ ବୈଦ୍ୟନାଥ,



ଅନନ୍ତ, ଗୁରୁଚରଣ, ବନମାଳି , ବିଜୟ ଦାସ, ଶରତ ପଟ୍ଟନାୟକ, ଦୁର୍ଗାଚରଣ ମହାନ୍ତି । ସେମାନଙ୍କ ବିରୁଦ୍ଧରେ ଅଭିଯୋଗ ଥିଲା, ସେମାନେ ସଶସ୍ତ୍ର ବିଦ୍ରୋହ ଦ୍ୱାରା ଇଂରେଜ ସରକାରଙ୍କୁ ଗାଦିଚ୍ୟୁତ କରିବାକୁ ଷଡଯନ୍ତ୍ର କରୁଛନ୍ତି । ଯୁଦ୍ଧ ବେଳର ଭାରତ ରକ୍ଷା ଆଇନ୍ ସହିତ ରାଷ୍ଟ୍ରଦ୍ରୋହ ସଂକ୍ରାନ୍ତ ଆଇନ୍ର ବିଭିନ୍ ଧାରା ଉପଧାରା ସେମାନଙ୍କ ବିରୁଦ୍ଧରେ ଲାଗୁ ହେଲା ।

କମ୍ୟୁନିଷ୍ଟ ଷଡଯନ୍ତ୍ର ମକଦ୍ଦମାରେ କମ୍ୟୁନିଷ୍ଟମାନଙ୍କ ପକ୍ଷରେ ଲଢିଥିଲେ ବର୍ତ୍ତମାନର ଅବସରପ୍ରାପ୍ତ ବିଚାରପତି ଶ୍ରୀଯୁକ୍ତ ରାଜକିଶୋର ଦାସ, ସ୍ୱର୍ଗତ ଦୀନବନ୍ଧୁ ସାହୁ, ଶ୍ରୀ ଚନ୍ଦ୍ରକାନ୍ତ ଘୋଷ (ରବି ଘୋଷଙ୍କ ଭାଇ) କଲିକତାରୁ ଆସିଥିବା ବାରିଷ୍ଟର । ସେହି ମକଦ୍ଦମାର ଶୁଣାଣି ଚାଲିଥିଲା କଟକ ଜେଲରେ ବହୁଦିନ ଧରି । ବିବରଣୀ ସବୁ ଲୁପ୍ତ ଆକାରରେ ହେଲେ ମଧ ପ୍ରକାଶ ପାଇବାରୁ କମ୍ୟୁନିଷ୍ଟମାନଙ୍କ ବିଷୟ ଲୋକଙ୍କ ଅବଗତିକୁ ଆସିଲା । କଟକ ଜେଲ ଭିତର ବିଚାରରେ ଭଗବତୀ ଓ ତାଙ୍କର ସାଥୀମାନେ ଦଣ୍ଡିତ ହେଲେ । ଭଗବତୀ ବୈଦ୍ୟନାଥ ଓ ଗୁରୁଚରଣଙ୍କୁ ସର୍ବାଧିକ ଦଣ୍ଡ ମିଳିଲା । ତାଙ୍କ ପଛକୁ ଅନନ୍ତ ବନମାଳୀ ।ସେମାନଙ୍କ ପରେ ଶରତ ଓ ବିଜୟ ଦାସ କେତେକ ଦଫାରେ ଦଣ୍ଡିତ ହେଲେ । ଦୁର୍ଗାଚରଣ ମହାନ୍ତି ନିର୍ଦ୍ଦୋଷରେ ଖଲାସ ହେଲେ ।

କମ୍ୟୁନିଷ୍ଟ ଷଡଯନ୍ତ୍ର ମକଦ୍ଦମା ଚାଲିଥିଲା ବେଳେ ଦ୍ୱିତୀୟ ମହାଯୁଦ୍ଧ ଘନେଇ ଆସିଥାଏ । ହିଟଲର ସମଗ୍ର ୟୁରୋପକୁ ଗ୍ରାସ କରି ସୋଭିଏତ୍ ଋଷ ଉପରେ ପ୍ରଚଣ୍ଡ ବେଗରେ ଆକ୍ରମଣ ଆରମ୍ଭ କରିଥାଏ । ଏହା ଫଳରେ ଗୁଣାତ୍ମକ ପରିବର୍ତ୍ତନ ଘଟିଥାଏ ଯୁଦ୍ଧର ଆଭିମୁଖ୍ୟରେ । କେବଳ ବ୍ରିଟିଶ ଭଳି ସାମ୍ରାଜ୍ୟବାଦ ଶକ୍ତିର ଉପନିବେଶବାସୀ ପରାଧୀନ ଜନସାଧାରଣ ନୁହଁନ୍ତି, ପୃଥିବୀର ସବୁ ଦେଶର ମନୁଷ୍ୟ ଜାତିର ଧ୍ୱଂସ ଅନିବାର୍ଯ୍ୟ ହୋଇଉଠିଥାଏ । ବ୍ରିଟିଶ୍ ପାଖରୁ ସ୍ୱାଧୀନତା ହାସଲ କରିବା ପାଇଁ ଭାରତରେ ସଂଗ୍ରାମ ପ୍ରବଳ ହୋଇଥାଏ । କିନ୍ତୁ ନାଜିବାଦର ପରାଜୟରେ ସାମ୍ରାଜ୍ୟବାଦ ଦୁର୍ବଳ ହେବ, ପୃଥିବୀର ସ୍ୱାଧୀନତାକାମୀ ଜନଶକ୍ତି ସମୁତ୍ତେଜିତ ହେବ । ସମାଜବାଦୀ ଶକ୍ତିର ବିଜୟ ଏହି ସାମ୍ରାଜ୍ୟବାଦର ମୂଳଉତ୍ପାଟନର କାରଣ ହେବ - ଏହା ଅନୁଭବ ହେଉଥାଏ, ସମଗ୍ର ମନୁଷ୍ୟ ଜାତିର ନିରାପତ୍ତାର ଓ ସୁରକ୍ଷାର ପ୍ରଶ୍ନ ସବୁଠୁ ବଳି ଗୁରୁତ୍ୱପୂର୍ଣ୍ଣ ଥିବା ହେତୁରୁ । ଏଣୁ କମ୍ୟୁନିଷ୍ଟ ଓ ଗଣତନ୍ତ୍ରୀମାନଙ୍କର ଦୃଷ୍ଟିରେ ସେହି ଯୁଦ୍ଧ ପରିଣତ ହୋଇଥାଏ ଜନଯୁଦ୍ଧରେ । ବ୍ରିଟିଶ ସରକାର କମ୍ୟୁନିଷ୍ଟ ପାର୍ଟି ଉପରୁ ବେଆଇନ୍ ସ୍ପର୍ଦ୍ଧ ଉଠାଇବାକୁ ବାଧ୍ୟ ହୋଇଥାଏ । ଏହା ସତ୍ତ୍ୱେ କଂଗ୍ରେସ ନେତା ଓ ବହୁ କଂଗ୍ରେସ କର୍ମୀଙ୍କୁ କେବଳ ନୁହେଁ, ବହୁ କମ୍ୟୁନିଷ୍ଟଙ୍କୁ ଭାରତ ଛାଡ ଆନ୍ଦୋଳନ ଯୋଗୁଁ ଗିରଫ କରୁଥାଏ । ମୁସଲିମ୍ ଲିଗକୁ ଟିହାଇ ଦେଶରେ ବିଭେଦ ସୃଷ୍ଟି କରୁଥାଏ । ଯୁଦ୍ଧ ଯୋଗୁଁ ଭାରତରେ ଆଖିବୁଜା ଶୋଷଣ ଓ ଲୁଣ୍ଠନ ଚଳାଇଥାଏ, ଯାହା ଫଳରେ ସମୁଦାୟ ବଙ୍ଗଳାରେ ଓ ଓଡ଼ିଶାରେ ଗଞ୍ଜାମ ଭଳି କେତେ ଅଞ୍ଚଳରେ ମଣିଷକୃତ ଭୟଙ୍କର ଦୁର୍ଭିକ୍ଷ ପଡିଥାଏ ।

ଏହି ସମୟରେ ଭଗବତୀ ଜେଲରୁ ଖଲାସ ହେଲା ମାତ୍ରେ ଦେଖିଲେ ବ୍ରିଟିଶ୍ ସରକାରଙ୍କୁ ବିରୋଧ କରି ଜାତୀୟନେତା ଓ ସଂଗ୍ରାମୀମାନଙ୍କ ମୁକ୍ତି ପାଇଁ ଲଢିବାକୁ ହେବ - ଜାତୀୟ ଏକତାକୁ ଅକ୍ଷୁର୍ଣ୍ଣ ରଖିବା, ଦୁର୍ଭିକ୍ଷରେ ଲୋକଙ୍କୁ ସହାୟ ହେବା ଏବଂ ସର୍ବୋପରି ଫାସିଷ୍ଟବାଦର ପରାଜୟ ଲାଗି ପ୍ରଯତ୍ନ କରିବା ମୁଖ୍ୟ କର୍ତ୍ତବ୍ୟ ହେବ । ଭଗବତୀ ସେହିସବୁ କାର୍ଯ୍ୟ-ସାଧନରେ ଅନ୍ୟ ସାଥୀମାନଙ୍କ ସହିତ ମିଶି ଲାଗି ପଡିଲେ ।

କମ୍ୟୁନିଷ୍ଟ ପାର୍ଟି ଉପରୁ ବେଆଇନ୍ କଟକଣା ଉଠିଗଲାରୁ 'ମୁକ୍ତି ଯୁଦ୍ଧ' ପ୍ରକାଶ ପାଇଲା – ସ୍ୱତନ୍ତ୍ର ଭାବରେ ପାର୍ଟି ପ୍ରେସ୍ 'ନବଯୁଗ ପ୍ରେସ୍' ବସିଲା । ଭଗବତୀ ଖୋଲାଖୋଲି ପାର୍ଟିକାର୍ଯ୍ୟରେ ଲାଗିଲେ । 'କମ୍ୟୁନିଜମ୍' ସଂପର୍କରେ ଆଗନ୍ତୁକ ସାଥୀମାନଙ୍କ 'କ୍ଲାସ' ନେଲେ, ସେମାନଙ୍କୁ ଶିକ୍ଷା ଦେଲେ । ମୁକ୍ତିଯୁଦ୍ଧର କେତୋଟି ମାତ୍ର ସଂଖ୍ୟା ସଂପାଦନା କରିଥାନ୍ତି, ଦୁର୍ଭିକ୍ଷରେ ରିଲିଫ୍ କାର୍ଯ୍ୟରେ ଡାକରା ଆସିଲା । ସେହି ସମୟକୁ ଦୁର୍ଭିକ୍ଷର କରାଳ ରୂପ, ବଙ୍ଗଳା ଓ ଓଡ଼ିଶାରେ ଲୋମହର୍ଷକ ହୋଇଉଠିଥାଏ । ଭଗବତୀ ଓ ତାଙ୍କ ସାଥୀମାନେ ରିଲିଫ୍ କାମରେ ନ ଲାଗି ସ୍ଥିର ରହିଥାନ୍ତେ ବା କିପରି ? ବାଲେଶ୍ୱର ଓ ଗଞ୍ଜାମରେ ଦୁର୍ଭିକ୍ଷ ଅତି ଭୀଷଣ ହେଲା । ଭଗବତୀ ଗଞ୍ଜାମରେ ରିଲିଫ୍ କାର୍ଯ୍ୟ କରିବାକୁ ଯାଇ ସଂକ୍ରାମକ ବିସୂଚିକା ରୋଗରେ ହଠାତ୍ ଆକ୍ରାନ୍ତ ହେଲେ; କଟକ ଫେରି ଆସିଲେ । ଡାକ୍ତରମାନେ ପରେ ବାସିଲେରିଡେସେଣ୍ଟ୍ରି ବୋଲି ତାଙ୍କ ରୋଗ ପରୀକ୍ଷା କରି ଚିହ୍ନଟ କରିବା ମୁହୂର୍ତ୍ତରେ ହିଁ ତାଙ୍କର ଶେଷ ନିଶ୍ୱାସ ନିର୍ଗତ ହୋଇଗଲା ।

ଭଗବତୀ ଧର୍ମପତ୍ନୀ ସରସ୍ୱତୀ ଲେଖିଛନ୍ତି - ବ୍ରିଟିଶ୍ ସରକାର ଜେଲରେ ତାଙ୍କୁ ଗୋପନରେ ଧୀରେ ଧୀରେ ବିଷପ୍ରୟୋଗ କରିଥିଲା । ତାହାରି ଫଳରେ ତାଙ୍କର ମୃତ୍ୟୁ ଘଟିଲା । ଏହା ସତ୍ୟ ନୁହେଁ । କାରଣ ଭଗବତୀ ତାଙ୍କର ଅନ୍ୟ ସାଥୀମାନଙ୍କ ଗହଣରେ ରହୁଥିଲେ । ପ୍ରାତ୍ୟହିକ ରନ୍ଧନ ବ୍ୟବସ୍ଥା





ହେଉଥିଲା ସମସ୍ତଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ । ବିଷ ପ୍ରୟୋଗରେ ପ୍ରଶ୍ନ ଥିଲେ ସମସ୍ତଙ୍କୁ ସମଦଣ୍ଡାପନ୍ନ ହେବାକୁ ହୋଇଥାନ୍ତା । ତାଙ୍କ ପତ୍ନୀ ପୁଣି କହିଛନ୍ତି - ଭଗବତୀଙ୍କ ମୁଚୁଳା ତଳେ ବେଆଇନ୍ କାଗଜ ପତ୍ର ରଖାଯାଇ ତାଙ୍କୁ ଧରାଇ ଦିଆଯାଇଥିଲା । ଏହାର ଅର୍ଥ ଭଗବତୀ ସେପରି କାର୍ଯ୍ୟରେ ନିଜକୁ ନିଜେ ନିୟୋଗ କରି ନଥିଲେ । ଏହା ମଧ ସତ୍ୟ ନୁହେଁ । ମକଦ୍ଦମା ଦୃଷ୍ଟିରୁ ସେ ଓ ତାଙ୍କ ସାଥୀମାନଙ୍କୁ ସେପରି କୌଶଳରେ ଧରାଇ ଦିଆଯାଇଛି ବୋଲି ଯୁକ୍ତି ବଢାଯାଇଥିଲା ।

## (୧୧)

ଭଗବତୀ ଥିଲେ କାୟମନୋବାକ୍ୟରେ ପୂର୍ଣ୍ଣରୂପେ ବିପ୍ଳବୀ । କମ୍ୟୁନିଷ୍ଟ ହେବାର ବହୁପୂର୍ବରୁ ବ୍ରାହ୍ମଣତ୍ୱର ପରିଚାୟକ 'ଉପବୀତ' ଛିଡାଇ ସାରିଥିଲେ । ତାଙ୍କର ଧର୍ମାନୁଷ୍ଠାନ ପୂଜାପାଠରେ ବିଶ୍ୱାସ ନଥିଲା । ପୁରାତନ ନାନା ପ୍ରକାର କୁ-ସଂସ୍କାରରୁ ମୁକ୍ତ ଥିଲା ତାଙ୍କ ମନ । ଏହା ବୋଲି କାହାରି ମନରେ ଆଘାତ ଦେବା, ଅବିଚାରିତ ଭାବେ କାହାକୁ କିଛି ରୁଢ ଭାବେ କହିବା ଥିଲା ପ୍ରକୃତି ବିରୁଦ୍ଧ । ଅଥଚ ଆଲୋଚନାରେ ଭିନ୍ନମତାବଲମ୍ବୀଙ୍କୁ ତୀବ୍ର ଭାବରେ ଆକ୍ରମଣ କରିବାକୁ- ସାରଲ୍ୟରେ ସୌଜନ୍ୟରେ - ପଛାଉ ନଥିଲେ । ସୁକୋମଳ ଭଙ୍ଗୀରେ କଥା କହି ଅଥଚ ରୁଦ୍ର ଆବେଗରେ, ସେ ଶ୍ରୋତାଙ୍କ ମନର ବଦ୍ଧମୂଳ କୁସଂସ୍କାର ଉପରେ ପ୍ରହାର ବସାଉଥିଲେ, ଅନ୍ଧ ଦୁର୍ବିଚାରକୁ ହସି ହସି ଉଡାଇ ଦେଉଥିଲେ । ତାଙ୍କର ବିଦ୍ରୁପ ସମ୍ଭାଳିବା ଯେ କୌଣସି ବ୍ୟକ୍ତି ପାଖରେ ଥିଲା କଷ୍ଟକାରକ । ସାମାଜିକ ମେଳା ମଉଚ୍ଛବରେ, ନିଷ୍କପଟ ଆମୋଦ - ପ୍ରମୋଦରେ ସେ ଯେପରି ମାତି ଯାଉଥିଲେ, ସେହିପରି ସମସ୍ତର ଆକ୍ରମଣ ସମ୍ମୁଖରେ, ଲୌହ ପାଚିରୀ ଭଳି ନିଶ୍ଚଳ ଦୁର୍ଭେଦ୍ୟ ରହି ହସୁଥିଲେ, କେବଳ ହସୁଥିଲେ ।

ଭଗବତୀ ବିବାହ ସୂତ୍ରରେ ଆବଦ୍ଧ ହୋଇଥିଲେ ଛାତ୍ର ଅବସ୍ଥାରୁ । ସେତେବେଳେ ଅନିଚ୍ଛା ସତ୍ତ୍ୱେ ତାଙ୍କୁ ବିବାହ କରିବାକୁ ପଡିଥିଲା ବାଧ୍ୟବାଧକତାରେ । ତାଙ୍କର ଧର୍ମପତ୍ନୀ ସେତେବେଳେ ମାଟ୍ରିକୁଲେଶନ୍ ପାସ୍ କରିଥାନ୍ତି । ଭଗବତୀ ସାଧାରଣ ଏମ୍.ଏ. ପାସ୍ ଯୁବକ ନ ଥିଲେ, ଥିଲେ ପ୍ରତିଭାଶାଳୀ, ବିଦ୍ୟାବୁଦ୍ଧିରେ, ମତାଦର୍ଶରେ ଅସାଧାରଣ, ଜନସାଧାରଣଙ୍କ ସେବାରେ ଉତ୍ସୃଷ୍ଟ ପ୍ରାଣ । ସ୍ୱାଧୀନତା ସଂଗ୍ରାମରେ ବୈପ୍ଳବିକ ପନ୍ଥାର ଅନୁବର୍ତ୍ତୀ ନିଜର ସୁଖସ୍ୱାଚ୍ଛନ୍ଦ୍ୟ ଓ ସାମାଜିକ ପ୍ରତିଷ୍ଠାରେ ଅନାଗ୍ରହୀ । ଏଣୁ ଭଗବତୀ ଓ ତାଙ୍କ ସ୍ତ୍ରୀ ମଧ୍ୟରେ ବ୍ୟବଧାନ ଯେ କେତେ ଥିଲା ସହଜରେ ଅନୁମେୟ । ଭାଇବନ୍ଧୁ ପରିବାରରେ କେହି ତାଙ୍କ ସୁମହତ କାର୍ଯ୍ୟରେ ପ୍ରତିବନ୍ଧକ ନଥିଲେ ସୁଦ୍ଧା ତାଙ୍କ ପ୍ରତି ଉଦାସୀନ ଥିବା ହୁଏତ ସ୍ୱାଭାବିକ ଥିଲା । ତାଙ୍କର ଅଧିକାଂଶ ସମୟ - ଶକ୍ତିର ବିନିଯୋଗ ଘଟୁଥିଲା ଜନସାଧାରଣଙ୍କ ସେବାରେ - ଏଣୁ ସେ ଅଭାବ - ଉତ୍ପୀଡନ ବରଣ କରୁଥିବାବେଳେ ଅମ୍ଳାନ ବଦନରେ ହିଁ, ସ୍ନେହପ୍ରବଣ ମନ ତାଙ୍କର ଆଉଁସୁଥିଲା ତିନୋଟି ସନ୍ତତିଙ୍କୁ । ତାଙ୍କରି ପ୍ରେରଣା ଓ ଶିକ୍ଷାଦାନ ହିଁ ପତ୍ନୀ ସରସ୍ୱତୀ ଦେବୀଙ୍କୁ ପରିଣତ କରିଥିଲା ସୁ-ଲେଖିକା, ଶିକ୍ଷୟିତ୍ରୀ ଭାବରେ ।

ଭଗବତୀଙ୍କ ଅକାଳ ମୃତ୍ୟୁ ପରେ ମନେ ହୁଏ ତାଙ୍କର ପ୍ରକୃତ ମହତ୍ୱ ଉପଲବ୍ଧି କରିଥିଲେ ତାଙ୍କର ପରିବାର ଓ ରାଜନୀତି କ୍ଷେତ୍ର-ବହିର୍ଭୂତ ବନ୍ଧୁଗଣ । ପ୍ରଥମେ ନୈରାଜ୍ୟବାଦୀ ପରେ ସନ୍ତ୍ରାସବାଦୀ ହୋଇ, ଶେଷରେ କମ୍ୟୁନିଷ୍ଟ ବିପ୍ଳବୀ ଭାବରେ ଅସ୍ତ୍ର ଧାରଣ କରିବାକୁ ପଡିପାରେ - ଏଣୁ କଠୋର ହୃଦୟ ହେବାକୁ ହେବ, ସୁକୁମାର - ପ୍ରକୃତିର ସେ ଏହା କଳ୍ପନା କରି ବେଙ୍ଗ କଟା, କୁକୁଡା କଟା ପ୍ରଭୃତିରେ ଛୁରୀ ଚଳାଇ ନିଜର ମନକୁ ରକ୍ତକ୍ଷରଣ ସମ୍ମୁଖରେ ଅବିଚାଳିତ ଓ ନିର୍ଦ୍ଦୟ କରିବାକୁ ଚାହିଁଥିଲେ । ଛାତ୍ର ଆନ୍ଦୋଳନ, ସାହିତ୍ୟ ସଂଗଠନ ସହିତ ପରୋକ୍ଷରେ, କିନ୍ତୁ କୃଷକ ଆନ୍ଦୋଳନ, ଗଡଜାତ ଆନ୍ଦୋଳନରେ ପ୍ରତ୍ୟକ୍ଷରେ ଅନ୍ୟତମ ମୁଖ୍ୟ କର୍ଣ୍ଣଧାର ଥିଲେ । ସଭାସମିତିରେ ସତ୍ୟାଗ୍ରହରେ ଯୋଗଦାନ, ସତ୍ୟାଗ୍ରହୀ ଦଳର ଅଧିନାୟକତ୍ୱ ଗ୍ରହଣ, ରିଲିଫ୍ ବଣ୍ଟନ, ଆଦି ଯାବତୀୟ କାର୍ଯ୍ୟରେ ଅତି ଉତ୍ସାହରେ ଆତ୍ମନିୟୋଗ କରୁଥିଲେ ।

ଯେକୌଣସି ଐତିହାସିକ ଅନୁବର୍ତ୍ତନର ଉନ୍ମେଷ ମୁହୂର୍ତ୍ତରେ ଯେଉଁମାନେ ନୂତନ କର୍ମଧାରାର ଆବାହକ ହୁଅନ୍ତି, ସେମାନଙ୍କୁ ଏକାଧାରରେ ସାଂବାଦିକ, ସାହିତ୍ୟିକ, ବକ୍ତା, ଅହିଂସା ଅଥବା ସହିଂସ ସୈନିକ ହେବାକୁ ପଡେ !! ସେମାନେ ପ୍ରଚାରକ, ସଂଗଠକ ପୁଣି ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସଂସ୍କାରକ ଓ ବୈପ୍ଳବିକ ପରିବର୍ତ୍ତନକାରୀ ହୁଅନ୍ତି । ଭଗବତୀ ଥିଲେ ଠିକ୍ ଏହିପରି ଏକ କୃତୀ ଯୁବକ - ନୂତନତ୍ୱର ଆବାହନରେ ତାଙ୍କରି ପ୍ରତିଭା ଥିଲା ତାଙ୍କରି ପୂର୍ବଜ, ମଧୁସୂଦନ, ଗୋପବନ୍ଧୁଙ୍କ ବହୁମୁଖିନୀ ପ୍ରତିଭା ଭଳି । ପ୍ରତ୍ୟେକ ଦିଗରେ ନିବିଡ ଅନ୍ଧକାରକୁ ଭେଦ କରିବା ଲାଗି ଅସ୍ଥିର, ଆବେଗ ଆକୁଳିତ ଚିତ୍ତ ଥିଲେ ସେ ଓଡ଼ିଶାରେ ସାହିତ୍ୟ ସଂସ୍କୃତି, ରାଜନୀତି ଆଦି କ୍ଷେତ୍ରରେ ନୂତନତ୍ୱର ପଥିକୃତ ।



ଭଗବତୀଙ୍କର ପ୍ରତିଭାର ରଶ୍ମିକଣା ହିଁ କେତେକାଂଶରେ ଗଭୀର ଭାବରେ ଆଲୋକିତ କରିଥିଲା, ତାଙ୍କର ଭାଇନା ନମସ୍ୟ କାଳିନ୍ଦୀଚରଣ, ସେହି ଭାଇନାଙ୍କ ଭଳି ଚିରସ୍ମରଣୀୟ ବୈକୁଣ୍ଠନାଥଙ୍କୁ । ସେମାନେ ନିଜନିଜର ବୁଦ୍ଧି, ସ୍ୱପ୍ନ ଓ କଳ୍ପନାରେ ସୃଜନୀଶକ୍ତି ଘେନି ପ୍ରତିଭାତ ହୋଇଥିଲେ ଯଥାକ୍ରମେ 'ଲୋହିତ' ଓ 'ବଜ୍ରବାଦଲ' ନାମରେ । ଭଗବତୀଙ୍କ ସହ ଆଲୋଚନା ହେତୁ ସେମାନଙ୍କର ଆଧୁନିକପନ୍ଥୀ ଦୃଷ୍ଟି ଆହୁରି ପ୍ରସାରିତ ହୋଇଥିଲା - ବାସ୍ତବମାର୍ଗୀ ହୋଇଥିଲା - ସେମାନଙ୍କ ଚେତନା ନିକଟରୁ ନିକଟକୁ ଆସିଥିଲେ ସେମାନେ ଜନସମାଜର । ସେଥିପାଇଁ ରୋମାଣ୍ଟିକ୍ ଦୃଷ୍ଟି ଭଙ୍ଗୀରେ ସମାଜବାଦୀ ମତାଦର୍ଶକୁ ମିଶାଇ ସାହିତ୍ୟରେ ଅଭିନବତ୍ୱ ଆଣିବା ପାଇଁ ନିର୍ଭୀକ ଭାବରେ ତତ୍‌ପର ହୋଇଥିଲେ, ସାର୍ଥକ ହୋଇଥିଲେ ସେମାନେ ।

ଛାତ୍ର ଅବସ୍ଥାରୁ ସ୍ଫୁରଣ ଘଟିଥିଲା ଭଗବତୀଙ୍କ ସାହିତ୍ୟକ ଜୀବନର - ଗଭୀର ତାତ୍ତ୍ୱିକ ଜିଜ୍ଞାସା ପ୍ରକାଶ ପାଇଥିଲା ଚିନ୍ତାଧାରାରେ । ତାହା ମୂର୍ତ୍ତ ହୋଇଥିଲା କେତୋଟି ଗଳ୍ପ ଓ ଆଲୋଚନାତ୍ମକ ରଚନାରେ - 'ଯୁଗବାଣୀ', 'ଉତ୍କଳ ସାହିତ୍ୟ', 'ସହକାର', 'ନବଭାରତ', 'ପ୍ରଗତି' ଆଦି ସାହିତ୍ୟ ପତ୍ରିକାରେ । ଛାତ୍ର ଅବସ୍ଥାରୁ ହିଁ ତାହା ବିଭାସିତ ହୋଇଥିଲା, ତାଙ୍କର ଦେଶପ୍ରେମ, ଲୋକସେବାମୂଳକ ମନୋବୃତ୍ତିରେ । ପରେ ବୈଜ୍ଞାନିକ ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀର ପ୍ରକାଶ ଘଟି ଚରମ ବିନ୍ଦୁରେ ଉପନୀତ ହୋଇଥିଲା - 'ସମାଜବାଦୀ' ସମାଜ ପ୍ରତିଷ୍ଠାର କଳ୍ପନାରେ ଓ ସାଧନାରେ ।

ଭଗବତୀଙ୍କ ରଚନା ପ୍ରତି ଦୃଷ୍ଟିପାତ କଲେ ଜଣାଯାଏ ତାଙ୍କର ସାହିତ୍ୟ ସାଧନାର ପ୍ରଥମ ପର୍ବ ଥିଲା ରୋମାଣ୍ଟିକ୍, ଜାତୀୟବାଦୀ । ୧୯୩୨ ମସିହାରେ ପ୍ରକୃତରେ ତାଙ୍କର ସାହିତ୍ୟସାଧନାର ଗତି ପରିବର୍ତ୍ତନ ହୋଇଥିଲା । ସେ ଉତ୍କଳ ସାହିତ୍ୟରୁ ନିଜ ଲେଖା 'ପତିତ'ର ଅଂଶବିଶେଷକୁ ଘେନି ଆସିଥିଲେ । ଏତେ ଘୃଣା ଥିଲା ବ୍ରିଟିଶ୍‌ଙ୍କ କିଙ୍କରଙ୍କ ପ୍ରତି ତାଙ୍କର ।

(୧୨)

ଭଗବତୀ ଇତିହାସ ଓ ଅର୍ଥନୀତିର ଛାତ୍ର ଥିଲେ । ସେଥିପାଇଁ ସମାଜବାଦ ନୀତି ପ୍ରତି ଆକୃଷ୍ଟ ହୋଇପାରିଥିଲେ ସହଜରେ - ବାସ୍ତବତାର ପ୍ରତିପୋଷକ ହୋଇଥିଲା ତାଙ୍କର ରଚନା । ସାମ୍ବାଦିକ ଭାବରେ ସେ 'ସାରଥୀ'ଠାରୁ ଆରମ୍ଭ କରି 'ଆଧୁନିକ', 'କୃଷକ', 'ପ୍ରଗତି', 'ମୁକ୍ତିଯୁଦ୍ଧ', ପର୍ଯ୍ୟନ୍ତ ସମସ୍ତ ପତ୍ର ପତ୍ରିକାରେ ସହଜ ସରଳ ଭାବଗର୍ଭକ ତୀକ୍ଷ୍ଣ ଶୈଳୀରେ ମତାମତ ବ୍ୟକ୍ତ କରିଥିଲେ । କୁହାଯାଇପାରେ ଓଡ଼ିଶା ସାହିତ୍ୟରେ ବାସ୍ତବତାମୁଖୀ ଗଳ୍ପର ପ୍ରଥମ ପ୍ରବର୍ତ୍ତକ ସେ । ଯେଉଁମାନେ ଉତ୍ପୀଡିତ, ଅତ୍ୟାଚାରିତ ସେମାନଙ୍କର ଜୀବନର ଚିତ୍ର ଅଙ୍କନ କରିଥିଲେ ବାହ୍ୟ ଭାବାଳୁତାରେ ନୁହେଁ, - ସେମାନେ କିପରି ସଚେତନ ହୋଇ ନୂତନ ଜୀବନ ଗଠନ କରିପାରିବେ ସେହି ଉଦ୍ଦେଶ୍ୟଷରେ - ସେମାନଙ୍କୁ ଉନ୍ମାଦିତ କରି ପଜଟିଭ୍ ବା ନିଶ୍ଚୟାତ୍ମକ ସାଙ୍କେତିକତା ଓ ପ୍ରତୀକତାର ସୂତ୍ରରେ ।

କମ୍ୟୁନିଷ୍ଟ ପାର୍ଟି ଗଠିତ ହେବା ସଂଗେ ସଂଗେ କମ୍ୟୁନିଷ୍ଟ ମ୍ୟାନିଫେଷ୍ଟୋର ଅନୁବାଦ ଆରମ୍ଭ କରି ଶେଷ କରିଥିଲେ ଭଗବତୀ । ବୈଜ୍ଞାନିକ ସାମ୍ୟବାଦୀ ନାମରେ ତାହା ପୁସ୍ତକ ଆକାରରେ ପ୍ରକାଶ ପାଇଥିଲା । ପ୍ରାଦେଶିକ କଂଗ୍ରେସ କମିଟି ଦ୍ୱାରା ନିର୍ଦ୍ଦେଶିତ ହୋଇଥିଲେ ସେ ପଟାଭି ସୀତାରାମାୟଙ୍କ 'କଂଗ୍ରେସ ଇତିହାସ' ଅନୁବାଦ କରିବାକୁ । କମ୍ୟୁନିଷ୍ଟ ଷଡଯନ୍ତ୍ରରେ ଧରାହୋଇ ବନ୍ଦୀ ଭାବରେ କଟକ ଓ ଅନୁଗୋଳ ଜେଲ୍‌ରେ ଥିଲାବେଳେ ବିଶ୍ୱ ଇତିହାସ ରଚନା କରିଥିଲେ - ସେହି ସମୟରେ ଲେଖିଥିଲେ My First Cycle Ride ଓ ଅନ୍ୟ କେତୋଟି ଗଳ୍ପ । 'କାଳିଦାସ' ନାଟକ ରଚନାରେ ସହାୟତା କରିଥିଲେ ଏ ଲେଖକକୁ - ହେଲେ କେତେକ ବନ୍ଧୁଙ୍କ ହାତରେ ସେସବୁ ନଷ୍ଟ ହୋଇଯାଇଥିଲା । ତାଙ୍କ ମୃତ୍ୟୁ ପରେ ପରେ ଅପହୃତ ହୋଇଯାଇଥିଲା । ଅସଂପୂର୍ଣ୍ଣ 'ବିଶ୍ୱ ଇତିହାସ' ପାଣ୍ଡୁଲିପିର କେତୋଟି ଖଣ୍ଡ ।

ଭଗବତୀଙ୍କର ସମ୍ପର୍କ ଥିଲା ଗଡଜାତ ପ୍ରଜା ଆନ୍ଦୋଳନ ରିପୋର୍ଟ ପ୍ରସ୍ତୁତିରେ- ସେଥିରେ ସେ ସହାୟକ ଥିଲେ ସାରଙ୍ଗଧରଙ୍କର ।

ସାହିତ୍ୟ ସଂସ୍କୃତି କ୍ଷେତ୍ରରେ ତାଙ୍କର ଘନିଷ୍ଠ ସଂଯୋଗ ଥିଲା, କେତେକ ସୁସାହିତ୍ୟିକ, ସାମ୍ବାଦିକଙ୍କ ସହିତ । ସାହିତ୍ୟର ସାର୍ଥକ ପ୍ରତିପୋଷକ ସ୍ମରଣୀୟ ବାଳକୃଷ୍ଣ କରଙ୍କ ସାହିତ୍ୟ ପରିଷଦ ସମର୍ଥନ ଯୋଗାଇ ସହାୟତା କରିଥିଲେ, ସମୟେ ସମୟେ ସମ୍ବାଦ ସଂକ୍ରାନ୍ତ ଆଲୋଚନାରେ ପ୍ରବୃତ୍ତ ରହୁଥିଲେ ।

ସାହିତ୍ୟିମାନଙ୍କ ମଧ୍ୟରେ 'ଲଳିତ ପଦାବଳୀ'ର କବି ମାୟାଧର ମାନସିଂହ ଥିଲେ ଭଗବତୀଙ୍କର ସ୍ନେହାର୍ଦ୍ର ବନ୍ଧୁ । ମତାଦର୍ଶ ଘେନି ପ୍ରବଳ ବିରୋଧ ଥିଲା ଦୁହିଁଙ୍କ ମଧ୍ୟରେ - ମାନସିଂହଙ୍କର କାବ୍ୟ କବିତା ଛଡା ଅନ୍ୟ ରଚନା ଥିଲା ଭଗବତୀଙ୍କର ତୀବ୍ର ସମାଲୋଚନାର ସାମଗ୍ରୀ । ସାହିତ୍ୟରେ ରୋମାଣ୍ଟିକ 'ଭାବ





ପ୍ରବଣତା'ର ବିରୋଧୀ ଥିଲେ ସେ - କିନ୍ତୁ ବୈପ୍ଲବିକ ସ୍ୱପ୍ନର ସୃଜନରେ, ସାଧନାର ସଂଗଠନରେ ପୁରୋବର୍ତ୍ତୀ ଥିଲେ ସେ ଯୁଗର ।

ଭଗବତୀଙ୍କ ସାହିତ୍ୟଦର୍ଶ, ସାହିତ୍ୟକୃତି ସମ୍ବନ୍ଧରେ ବିଶେଷ ବିଶଦ ଆଲୋଚନା ଏ ଲେଖାରେ ସମ୍ଭବ ହେଉନାହିଁ । ତାଙ୍କର ଆହୁରି କେତୋଟି ଲେଖା ଏପର୍ଯ୍ୟନ୍ତ ମିଳିପାରି ନାହିଁ; କେତୋଟି ପୁଣି କାହା କାହା ପାଖରେ ଥାଇପାରେ ।

## (୧୩)

ତାତ୍ତ୍ୱିକ ଓ ପ୍ରାୟୋଗିକ ସ୍ତରରେ ଆପୋଷଧର୍ମୀ 'ସମାଜବାଦ-କର୍ମୀ'ଙ୍କୁ ଏଡାଇ ଦୁର୍ବାର ବେଗରେ ଗତି କରିଥିଲେ ଭଗବତୀ ବୈଜ୍ଞାନିକ ସାମ୍ୟବାଦ ବା କମ୍ୟୁନିଜମକୁ - ରାଜନୀତି ସାହିତ୍ୟ ସଂସ୍କୃତି ଆଦି କ୍ଷେତ୍ରରେ ସୁଚିନ୍ତିତ ସଙ୍ଗଠକ, ଲେଖକ, ବକ୍ତୃତାକାରୀ, ପ୍ରଚାରକ ଭାବରେ - ମାର୍କସବାଦୀ ଭାବଧାରାର ପ୍ରଚଳନରେ ପ୍ରଥମ ପ୍ରବର୍ତ୍ତକ ଭାବରେ ଅଗ୍ରଣୀ ଥିଲେ ସେ । ମୋହନ ଦାସ, ପ୍ରାଣନାଥ, ବିଶ୍ୱନାଥ, ବୈଦ୍ୟନାଥ, ଗୋକୁଳି, ଅନନ୍ତ, ଗୁରୁଚରଣ, ପରେ - ଦୁର୍ଗାଚରଣ, ରାମଚନ୍ଦ୍ର ମିଶ୍ର, ରାମ ଚନ୍ଦ୍ର ରାମ, ଗଙ୍ଗାଧର ପ୍ରଭୃତି ସାଥୀଙ୍କ ସମାଜବାଦୀ ଦଳ ବା କମ୍ୟୁନିଷ୍ଟ କି କଂଗ୍ରେସ ପାର୍ଟି କେଉଁଟିର ସଭ୍ୟ ନହୋଇ ବହୁ ଯୁବକ କର୍ମୀ ଏକ ବା ଏକାଧିକ ବିଭିନ୍ନ ଆନ୍ଦୋଳନରେ କାର୍ଯ୍ୟ କରୁଥିଲେ ସେତେବେଳେ ମୁଖ୍ୟତଃ ସାମୟିକ ସହଯୋଗୀ ଭାବରେ । ସେମାନଙ୍କ ମଧ୍ୟରୁ କିଏ ଅବା କୃଷକ କି ପ୍ରଜା ସଙ୍ଗଠନରେ ଲାଗି ପ୍ରଚାର କାର୍ଯ୍ୟରେ ଗୀତ, କବିତା ଲେଖି ବକ୍ତୃତା ଦେଇ ଜନଜାଗରଣ ଆଣିବାରେ ସୁନାମ ଅର୍ଜିଥିଲେ - ପରେ ଅବଶ୍ୟ ଭିନ୍ନଗତି ଧରିଥିଲେ ।

ଦୁଃଖର କଥା - ସେହିଭଳି ଜଣେ ପ୍ରତିଷ୍ଠିତ ସାହିତ୍ୟିକ ହେଉଛନ୍ତି ମାର୍କସବାଦର ପ୍ରବର୍ତ୍ତକ ଭଗବତୀ ନୁହନ୍ତି, ସେ ନିଜେ ହିଁ ସମଗ୍ର ଦେଶରେ ମାର୍କସବାଦ ଆସିଥିଲେ ବିଭିନ୍ନ ଆନ୍ଦୋଳନରେ, - କର୍ମକ୍ଷେତ୍ରରେ କଂଗ୍ରେସ କର୍ମୀମାନଙ୍କର ଅଭିଜ୍ଞତାରେ । ସେଥିରେ ବୌଦ୍ଧିକ ବାର୍ତ୍ତାଜୀବୀ । ପୁଣି ସଂଗଠକ ଥିଲେ - ଶ୍ରମିକ - ଆନ୍ଦୋଳନର, ସଂସ୍ଥାପକ ଥିଲେ ଶ୍ରମିକ ସଂଘର - ଟ୍ରେଡ୍ ୟୁନିଅନ୍‌ର) ଆଉ ଆଦ୍ୟ ସମ୍ବାହକ ଥିଲେ ସାମ୍ୟବାଦୀ ଚେତନାର 'ପୁରୋଧା' କେତେକ ୧୯୨୦ ମସିହାରୁ ପ୍ରାୟ, ସମଗ୍ର ଦେଶରେ - ପ୍ରମୁଖ ସାମ୍ୟବାଦୀ ବିପ୍ଳବୀ କର୍ମୀ ଓ ବୁଦ୍ଧିଜୀବିବୃନ୍ଦ । ଓଡ଼ିଶାରେ ମାର୍କସବାଦର ଉଦ୍ଭବ । ଏଣୁ କୌଣସି ସୌଖୀନ ସ୍ୱପ୍ନଚାରୀଙ୍କ ମହଲରୁ ହୋଇନି, ହୋଇଛି କଠିନ ବାସ୍ତବତାରୁ - 'ଶିକ୍ଷିତ ଛାତ୍ରମାନେ ହିଁ ଆସିଥିଲେ କଂଗ୍ରେସ କର୍ମକ୍ଷେତ୍ରରୁ । ଭଗବତୀ କାର୍ଯ୍ୟ କରୁଥିଲେ ଗଭୀର ନିଷ୍ଠାର ସହିତ ନୀତି ଓ ଆଦର୍ଶରେ ଅଟଳ ରହି । କଂଗ୍ରେସ ସମାଜବାଦୀ ଦଳ କି କମ୍ୟୁନିଷ୍ଟ ପାର୍ଟିର କେବେ ସଭ୍ୟ ନଥାଇ କେହି ନିଜକୁ କମ୍ୟୁନିଜିମର ପ୍ରତିଷ୍ଠାତା ବୋଲି କହିବା ଇତିହାସରେ ଏକ ବିଡମ୍ବନା । ଆହୁରି ଆଧୁନିକ ପ୍ରକାଶନ ସଂପାଦନରେ ଟିକେ ହେଲେ ସଂପୃକ୍ତ ନଥାଇ ତାର ସାମନ୍ତରାଳ, ଭାବରେ ତଥାକଥିତ 'ମଡର୍ନିଜମ୍‌ର' ପୃଷ୍ଠପୋଷକତାରେ 'ଆରଟି' ବୋଲି ଅନ୍ୟ ଏକ ପତ୍ରିକା ପ୍ରକାଶନରେ ସହଯୋଗୀ ଥାଇ ନିଜକୁ ଆଧୁନିକରେ ଜଡ଼ିତ ଥିବା କହିବା ସତ୍ୟର ଅପଳାପ ସିନା ! 'ଆଧୁନିକ' ସାହିତ୍ୟ ପରୋକ୍ଷରେ କମ୍ୟୁନିଷ୍ଟ ନହୋଇ ସହାୟକ ଥିଲେ, ସେତେବେଳେ ସହକାରର ବରେଣ୍ୟ ବିପ୍ଳବୀ ଲେଖକ ଓ ସାମ୍ବାଦିକ ଶ୍ରୀ ରାମ ପ୍ରସାଦ ସିଂହ, ସୁକବି ସୁଲେଖକ ଶ୍ରୀ କୃଷ୍ଣଚନ୍ଦ୍ର କର ଏବଂ ସହାଯାତ୍ରୀ ବନ୍ଧୁ ପରମାନନ୍ଦ, ଦୁର୍ଗା ଦାସ, ଅଶୋକ ରାଓ ।

ଭଗବତୀଙ୍କର ସମ୍ପର୍କରେ ତାଙ୍କର କେତେକ ବନ୍ଧୁ, ସାଥୀ, ସହକର୍ମୀଙ୍କର ଲେଖାମାନ ପ୍ରକାଶ ପାଇଛି । ପ୍ରତ୍ୟେକ ପ୍ରାୟ ନିଜ ନିଜ ଅଭିଜ୍ଞତାରୁ ଲେଖିଛନ୍ତି । ସେସବୁର ସ୍ୱତନ୍ତ୍ର ସଙ୍କଳନ ଆବଶ୍ୟକ । କିନ୍ତୁ ଭଗବତୀଙ୍କ ପ୍ରତିଭା ଓ କାର୍ଯ୍ୟାବଳୀ ସମ୍ପର୍କରେ ଓଡ଼ିଆ ସାହିତ୍ୟରେ ଆଧୁନିକ ଗବେଷଣା ଓ ସମାଲୋଚନା କ୍ଷେତ୍ରରେ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଡକ୍ଟର ନଟବର ସାମନ୍ତରାୟ ସୁବିଚାରିତ ମନ୍ତବ୍ୟ ହିଁ ସବୁଠାରୁ ବଳି ପ୍ରଣିଧେୟ । ବିଶେଷରେ ସେ କୌଣସି ପ୍ରଗତିଶୀଳ ବା ପାଶ୍ଚାତ୍ୟମୁଖୀ ଦୁର୍ମତିଶୀଳ କୌଣସି ସାହିତ୍ୟିକ ଗୋଷ୍ଠୀର ଓ ରାଜନୀତିକ ଦଳର ଅନ୍ତର୍ଭୁକ୍ତ ନୁହନ୍ତି । ନିରପେକ୍ଷ ଭାବରେ ଆଲୋଚନା କରି ପ୍ରଥମେ ସେ ହିଁ 'ଭଗବତୀ'ଙ୍କ ପ୍ରତିଭାକୁ, ପ୍ରେରଣାଦାୟୀ ରାଜନୀତିକ, ମୁଖ୍ୟତଃ ସାହିତ୍ୟିକ କର୍ମୋଦ୍ୟମ ଓ କୃତିକୁ ଏବଂ ଓଡ଼ିଶାରେ କମ୍ୟୁନିଜମର ମର୍ମ-ଉଦ୍‌ଘାଟନ ଓ ପଥ ପ୍ରଦର୍ଶନକୁ ଲୋକ ସମକ୍ଷକୁ ଆଣିଛନ୍ତି ନିର୍ଭୟରେ ଦୃଢତାର ସହିତ । ତାଙ୍କର ଓଡ଼ିଆ ପ୍ରଗତିଶୀଳ ସାହିତ୍ୟର ଇତିହାସ ପ୍ରଥମ ପର୍ଯ୍ୟାୟର ଶେଷରେ ସେ ଲେଖିଛନ୍ତି ।

xx"ଯେଉଁ ମହାପୁରୁଷ ଓଡ଼ିଶାର ସାମ୍ୟବାଦୀ ଦଳିତ (୧୯୩୪) ପ୍ରାଣପ୍ରତିଷ୍ଠାତା ଓ ତାର ଜେନେରାଲ ସେକ୍ରେଟେରୀ, ଯେ ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର (୧୯୩୮) ପ୍ରକୃତ ପ୍ରାଣ ସ୍ୱରୂପ, ଯେ ଓଡ଼ିଶା ଗଡଜାତ ପ୍ରଜା ଆନ୍ଦୋଳନରେ (୧୯୫୮) ପ୍ରଧାନ କର୍ଣ୍ଣଧାର ହୋଇ ଅନ୍ଧାରୀ ମୁଲକରେ ସ୍ୱାଧୀନତାର ବୀଜମନ୍ତ୍ରୀ ପ୍ରଚାର



କରିଥିଲେ, ଯେ ନିଜ ସାହିତ୍ୟ ବକ୍ତୃତା ଆନ୍ଦୋଳନ ଓ ସଙ୍ଗଠନରେ ଅପୂର୍ବ କୃତିତ୍ୱ ଦେଖାଇ ସରକାର ଘରର ଲାଲ ଫିତାକୁ ଦିନେ ବିଶ୍ରାମ ଦେଇନଥିଲେ, ଦାସୋତ୍ତର (ପଣ୍ଡିତ ଗୋପବନ୍ଧୁ ଦାସ) ଓଡ଼ିଶାର ଯେ ଜ୍ୱଳନ୍ତ ଅଗ୍ନି ସ୍ଫୁଲିଙ୍ଗ ସଦୃଶ, ଦିନେ ଓଡ଼ିଶାର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ବିପ୍ଳବ ଅଗ୍ନି ଜାଳି ଦେଇଥିଲେ ଓ ପୃଥିବୀର ନୂତନ ବାର୍ତ୍ତା ଏ ଦେଶରେ ପ୍ରଚାର କରି ଯୁବ ଶକ୍ତିକୁ ନୂତନ ସ୍ରୋତରେ ପରିଚାଳିତ କରିବାକୁ ସମର୍ଥ ହୋଇଥିଲେ, ଦଳ ବିଶେଷରେ ନାମ ଲେଖାଇ ଥିବାରୁ ଯେ ଆଜି ଦେଶର ବହୁ ଲୋକ ଦ୍ୱାରା ଅବହେଳିତ ଓ ବିସ୍ମୃତ; ଯାହାଙ୍କର ନାମ ଶ୍ରବଣରେ ବର୍ତ୍ତମାନ ସମୟର ବହୁ ସରକାରୀ କର୍ମଚାରୀ ଭୟରେ ଥରହର, ଯେ ଗୋପବନ୍ଧୁଙ୍କ ପରି ରୋଗୀ ସେବାରେ କେବଳ ଆତ୍ମୋତ୍ସର୍ଗ ତଥା ଆତ୍ମତ୍ୟାଗ କରିପାରନ୍ତି, ଯେ 'ଶିକାର' 'ହାତୁଡ଼ି' ଓ ଦା' ପ୍ରଭୃତି ପରି କେତେକ ମୌଳିକ କ୍ଷୁଦ୍ର ଗଳ୍ପ ଅପ୍ରକାଶିତ 'ପୃଥିବୀର ଇତିହାସ ଗୋଟିଏ ଅସଂପୂର୍ଣ୍ଣ ଉପନ୍ୟାସ ଓ ଅନ୍ୟାନ୍ୟ ବହୁପ୍ରବନ୍ଧ ଲେଖି ଦୁର୍ଭାଗ୍ୟବଶତଃ ଏ ଦେଶର ପ୍ରଗତିମୂଳକ ଅନୁଷ୍ଠାନ 'ନବ ଯୁଗ ସାହିତ୍ୟ ସଂସଦ' ପ୍ରତିଷ୍ଠା କରିପାରନ୍ତି, ଯେ ନୂତନ ବାଣୀ ଓ ସାହିତ୍ୟ ପ୍ରଚାର ପାଇଁ "ଆଧୁନିକ" ପତ୍ରିକା ସମ୍ପାଦନ କରିପାରନ୍ତି ସେ କେବଳ ଏ ଦେଶର ଯୁବ ଶକ୍ତିକୁ ନୂତନ ସାହିତ୍ୟ ସୃଷ୍ଟି ପାଇଁ ଉପଯୁକ୍ତ ଉତ୍ସାହ ଦେଇପାରନ୍ତି', ଓଡ଼ିଶା ପ୍ରଗତିଶୀଳ ସାହିତ୍ୟର ପ୍ରକୃତ ପ୍ରବର୍ତ୍ତକ ଓ ସଂସ୍ଥାପକ ହେଉଛନ୍ତି ଦେବଲୋକର ଅମର ଆତ୍ମା ଓଡ଼ିଶାର ବୀର ଅମୃତ ସନ୍ତାନ "କଃ ଭଗବତୀ ଚରଣ ପାଣିଗ୍ରାହୀ" ।

ସେହି ଅମୃତ ସନ୍ତାନ – 'ଭଗବତୀ'ଙ୍କ ସମ୍ବନ୍ଧରେ ଅନ୍ତତଃ – ପ୍ରମାଣିତ ତଥ୍ୟସମ୍ବଳିତ ଆଉ ଅଧିକ 'ଚମତ୍କାର' କିଛି କିଏ ବା କ'ଣ କହିପାରେ ।

ଦ୍ୱିତୀୟ 'ମହାଯୁଦ୍ଧ' ଜନିତ ବିଭୀଷିକା ମଧ୍ୟରେ ଦୁର୍ଭିକ୍ଷର କରାଳ ଆକ୍ରମଣ ବିରୁଦ୍ଧରେ ଲଢ଼ି ଜୀବନ ମଧ୍ୟାହ୍ନର ଉପକ୍ରମରେ ସେ ଯଦି କାଳର କବଳିତ ହୋଇନଥାନ୍ତେ – କି ରାଜନୀତି, କି ସାହିତ୍ୟ ପ୍ରତ୍ୟେକ କ୍ଷେତ୍ର ତାଙ୍କର ପ୍ରତିଭାରେ ପ୍ରଦୀପ୍ତ ହୋଇଥାନ୍ତା – ସମାଜବାଦ ପ୍ରତିଷ୍ଠା ଲାଗି ସଂଗ୍ରାମ ହୁଏତ୍ ଆହୁରି ପ୍ରବଳ, ପ୍ରଭାବଶାଳୀ, ସରସ ଓ ପ୍ରାଣବନ୍ତ ହୋଇଥାନ୍ତା ।

## (୧୪)

ଶେଷୋକ୍ତି –

ଭଗବତୀଙ୍କ ଏହି ଅତି ସଂକ୍ଷିପ୍ତ ଜୀବନ ଚରିତ୍ରରେ ସାଧାରଣ ଭାବେ ଯେଉଁ କେତୋଟି ଘଟଣାର ସୂଚନା ଦିଆଯାଇଛି, ତାହା ଓଡ଼ିଶାରେ ସମାଜବାଦୀ ଓ ସାମ୍ୟବାଦୀ ଆନ୍ଦୋଳନର ପ୍ରାରମ୍ଭିକ ଯୁଗର । ଏଣୁ କେତେ ଘଟଣା ଓ କାର୍ଯ୍ୟ ଯାହା ସହିତ ସେ ଜଡ଼ିତ ଥିଲେ, ସମ୍ୟକ ରୂପେ ଆଲୋଚିତ ହୋଇପାରିନାହିଁ – ସେହି ପ୍ରାରମ୍ଭିକ ଯୁଗରେ କେତେ ଜଣ ତାଙ୍କ ସାଥୀ ସହକର୍ମୀମାନଙ୍କ ନାମ ଉଲ୍ଲେଖ କରାଯାଇଛି ମାତ୍ର । ୧୯୩୯-୧୯୪୦ ପରେ ବହୁ ସାଥୀ କମ୍ୟୁନିଷ୍ଟ ପାର୍ଟିରେ ସଭ୍ୟ ରୂପେ ବା ସହଯାତ୍ରୀ ରୂପେ ଆସିଛନ୍ତି ଆସିଛନ୍ତି ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ । ବହୁ ନିର୍ଯ୍ୟାତନାରେ ସାହସର ସହିତ 'ଅତ୍ୟାଚାରୀ ଶୋଷକ'ମାନଙ୍କ ବିରୁଦ୍ଧରେ ଲଢ଼ି କେତେକ ପ୍ରାଣ ଦେଇଛନ୍ତି । କେହି ସ୍ୱୀକାର କରୁ ବା ନକରୁ – ରଣପୁର, ଢେଙ୍କାନାଳ, ନୀଳଗିରି, ତାଳଚେର ପ୍ରଭୃତିରେ ଯେଉଁମାନେ ଶାସକକଳର ଶିକାର ହୋଇଥିଲେ, କୃଷକ ଆନ୍ଦୋଳନରେ ଟଳି ପଡ଼ିଥିଲେ – ସେମାନେ ଥିଲେ କମ୍ୟୁନିଷ୍ଟ କର୍ମୀମାନଙ୍କର ଅତି ନିକଟର – ସେହି ସହଯାତ୍ରୀ ସାଥୀମାନଙ୍କର ନାମ ଉଲ୍ଲେଖ କରିବାରୁ ନିବୃତ୍ତ ରହିବାକୁ ବାଧ୍ୟ ହୋଇ ଏ ଲେଖକ ସହୃଦୟ ସମସ୍ତଙ୍କ ନିକଟରେ କ୍ଷମା ମାଗୁଛି, ପୁଣି କହିବାକୁ ବାଧ୍ୟ ହୋଇ କ୍ଷମା ମାଗୁଛି ଯେ 'ଭଗବତୀଙ୍କ' କର୍ମମୟ ଜୀବନର ଆରମ୍ଭରୁ ଅସମୟରେ ଅବସାନ ପର୍ଯ୍ୟନ୍ତ, ଏହି ଲେଖକ ତାଙ୍କ ସହିତ ନିବିଡ଼ ଭାବରେ ସଂଶ୍ଳିଷ୍ଟ ଥିଲା । ଏଣୁ ନିଜ ନାମରେ ଉଲ୍ଲେଖ ଚେଷ୍ଟା କରି ସୁଦ୍ଧା ବାଦ ଦେଇପାରି ନାହିଁ – ଏଥିରେ ତା' ନିଜ କାର୍ଯ୍ୟର ପ୍ରଖ୍ୟାପନ ଭଳି ଅଣୁମାତ୍ର ଦୂରଭିସନ୍ଧି ନାହିଁ ।







# ଭଗବତୀ ଚାଟଶାଳୀ

– ଦୁର୍ଗାଚରଣ ମହାନ୍ତି

ସାଥି ଭଗବତୀ ପାଣିଗ୍ରାହୀ ଓଡ଼ିଶାରେ କେବଳ କମ୍ୟୁନିଷ୍ଟ ପାର୍ଟିର ପ୍ରତିଷ୍ଠାତା ନୁହନ୍ତି । ସେ ଓଡ଼ିଶାରେ ନୂତନ ପ୍ରଗତିଶୀଳ ଭାବଧାରାର ବାହକ ଓ ପ୍ରଚାରକ ।

ଆମେ ସବୁ ସେତେବେଳେ ଛାତ୍ର, ଭଗବତୀବାବୁ ଆମର କ୍ଲାସ ନିଅନ୍ତି । ସମାଜର ଉତ୍ପତ୍ତି ଓ ବିକାଶଠାରୁ ଆରମ୍ଭ କରି ସାମ୍ୟବାଦ ପର୍ଯ୍ୟନ୍ତ ସବୁକଥା ସେଇ ପାଠଶାଳା ବା ଚାଟଶାଳୀରେ ଆଲୋଚନା ହୁଏ । ;ଆମେ ସବୁ ନୂତନ ଯୁବକମାନଙ୍କୁ ସେ ଚାଟଶାଳୀକୁ ଆଣୁ । ସେମାନେ ଭଗବତୀବାବୁଙ୍କ କଥା ଶୁଣନ୍ତି । ବହୁ ବନ୍ଧୁ ନିଜର କଲେଜ ପାଠ ଜରିଆରେ ସମାଜ ବିକାଶ, ଅର୍ଥନୀତି ଏବଂ ଦର୍ଶନ ସଂକ୍ରାନ୍ତରେ ଯେତେ ଯେତେ କଥା ଜାଣିଥାନ୍ତି ସେ ପ୍ରଶ୍ନଗୁଡ଼ିକ ଉଠାନ୍ତି । ଭଗବତୀ – ବାବୁ ତାହାର ଜବାବ ଦିଅନ୍ତି ।

ଭଗବତୀବାବୁଙ୍କର ଗୋଟିଏ ବିରାଟ ଗୁଣ ଥିଲା । ସେଇଟା ହେଉଛି ଅତି ଜଟିଳ କଥାକୁ ସରଳ ଭାଷାରେ ବୁଝାଇଦେବା । ସେଥିପାଇଁ ବହୁ ଯୁବକ ଓ ଛାତ୍ର ସେଇସବୁ ଆଲୋଚନା ଚକ୍ରକୁ ଆସନ୍ତି । ଭଗବତୀବାବୁ ଏଇ ହିସାବରେ ଓଡ଼ିଶାରେ ଗୋଟିଏ ନୂତନ ଶ୍ରେଣୀର ବୁଦ୍ଧଜୀବୀ ସୃଷ୍ଟି କଲେ ।

ମୋର ମନେ ଅଛି ଥରେ ଆଲୋଚନା ହେଉଥିଲା ଅର୍ଥନୈତିକ ସମସ୍ୟା ଉପରେ । ଆମେ ସବୁ କଲେଜରେ ପାଠ ପଢ଼ିଛୁ ଯେ ଉତ୍ପାଦନର ଚାରୋଟି ଉପାଦାନ ଅଛି, ଯଥା – ଲ୍ୟାଣ୍ଡ, ଲେବର, କ୍ୟାପିଟାଲ ଓ ଅରଗାନାଇଜେସନ୍ । ଅର୍ଥାତ୍ କଞ୍ଚାମାଲ୍, ଶ୍ରମ, ପୁଞ୍ଜି ଓ ସଂଗଠନ । ଉତ୍ପାଦନର ଫଳ ଯାହା ହେବ ସେଗୁଡ଼ିକ ଏଇ ଚାରି ଉପାଦାନ ମଧ୍ୟରେ ବଣ୍ଟାଯାଉଛି । ଲ୍ୟାଣ୍ଡ ବା କଞ୍ଚାମାଲ୍ ପାଉଛି ରେଣ୍ଟ ବା ଖଜଣା । ଲେବର ବା ଶ୍ରମ ପାଉଛି ଓ୍ୱେଜ୍ ବା ମଜୁରୀ । କ୍ୟାପିଟାଲ ବା ପୁଞ୍ଜି ପାଉଛି ଇଣ୍ଟରେଷ୍ଟ ବା ସୁଧ ଏବଂ ଅରଗାନାଇଜେସନ୍ ବା ସଂଗଠନ ପାଉଛି ପ୍ରଫିଟସ୍ ବା ମୁନାଫା । ତେଣୁ ପୁଞ୍ଜିବାଦୀ ଶୋଷଣ କେଉଁଠି ରହିଲା ? ଏହା ତ ଏକ ସମତୁଲ ବଣ୍ଟନ ।

ଭଗବତୀବାବୁ ବୁଝାଇଲେ ଯେ ଏହା ପୁଞ୍ଜିବାଦୀ ଅର୍ଥନୀତିଜ୍ଞଙ୍କର ଜନସାଧାରଣ ଏବଂ ବୁଦ୍ଧିଜୀବୀମାନଙ୍କୁ ଭ୍ରମଣ ପକାଇବା ପାଇଁ ଏକ ସୁଚତୁର ବିଶ୍ଳେଷଣ । ଏହା ବାସ୍ତବତା ନୁହେଁ । ପ୍ରକୃତରେ ଉତ୍ପାଦନର ଦୁଇଟି ଉପାଦାନ ଅଛି । ତାହା ହେଲା ଲ୍ୟାଣ୍ଡ ଏବଂ ଲେବର କିମ୍ବା କଞ୍ଚାମାଲ୍ ଓ ଶ୍ରମ ।

ପଚରାଯାଇପାରେ ଯେ ତେବେ ପୁଞ୍ଜି ଏବଂ ସଙ୍ଗଠନ କଅଣ ? ଏହା ଏକ କୌତୁହଳଜନକ ପ୍ରଶ୍ନ ।

ପୁଞ୍ଜିର ଇତିହାସ ଦେଖିଲେ ଜଣାପଡିବ ଯେ ସମାଜରେ ପୁଞ୍ଜି ମୂଳରୁ ନଥିଲା । ପୁଞ୍ଜି ସୃଷ୍ଟି ହେଲା ଶ୍ରମରୁ । ଶ୍ରମ ଓ କଞ୍ଚାମାଲକୁ ବ୍ୟବହାର କରି ନୂତନ ଉତ୍ପାଦନ କଲା । ଏହି ନୂତନ ଉତ୍ପାଦନର ମୂଲ୍ୟ ଯାହା ତାହାର ପ୍ରକୃତ ମାଲିକ ହେବା କଥା ଉତ୍ପାଦନକାରୀ ଶ୍ରମିକ । କଞ୍ଚାମାଲର ମୂଲ୍ୟଟିକୁ ବାଦ ଦେଲେ ସବୁ ବଳକା ମୂଲ୍ୟର ହକ୍‌ଦାର ହେଉଛି ଶ୍ରମିକ । ତାକୁ ସେତକ ନ ଦେଇ କେବଳ ମଜୁରୀ ବାବଦରେ ସାମାନ୍ୟ କିଛି ଦେଇ ବଳକା ରହିଗଲା ଯାହା ସେଇଟା, କାଳକ୍ରମେ ପୁଞ୍ଜିରେ ପରିଣତ ହେଲା । ସେଥିପାଇଁ ପୁଞ୍ଜି ହେଉଛି ପୁଞ୍ଜିଭୂତ ଶ୍ରମ । ଉତ୍ପାଦନ ପାଇଁ ସଙ୍ଗଠନ ଶ୍ରମ ବ୍ୟତିରେକେ ଆଉ କିଛି ନୁହେଁ । ସେଥିପାଇଁ ଏ ବିଷୟ ସ୍ପଷ୍ଟ ହେବା ଦରକାର ସେ ସମାଜରେ ଉତ୍ପାଦନ ପାଇଁ ଦୁଇଟି ଉପାଦାନ ଅଛି ଏବଂ ସେଇ ଦୁଇଟି ମଧ୍ୟରେ ଉତ୍ପାଦନର ମୂଲ୍ୟ ବଣ୍ଟା ହେବା କଥା ।

ସମାଜରେ 'ବଳକା ମୂଲ୍ୟ'କୁ ପୁଞ୍ଜିବାଦୀ ସମାଜରେ କେତେକ ବ୍ୟକ୍ତିବିଶେଷ ଦଖଲ କରି ନେଇଯାଉଛନ୍ତି । ସେମାନେ ଉତ୍ପାଦନର ଯନ୍ତ୍ରକୁ ନିଜ ଅକତିଆରରେ ରଖି 'ବଳକା ମୂଲ୍ୟ'କୁ ବ୍ୟକ୍ତିଗତ ସମ୍ପତ୍ତିରେ ପରିଣତ କରାଉଛନ୍ତି । ପୁଞ୍ଜିବାଦ ବା ବ୍ୟକ୍ତିଗତ ପୁଞ୍ଜିର ମାଲିକାନା ଏହାରି ଜରିଆରେ ବଢ଼ି ବଢ଼ି ଚାଲିଛି । ସେଥିପାଇଁ ଶ୍ରମିକଶ୍ରେଣୀ ଓ ମେହେନତକାରୀ ଜନସାଧାରଣ ଏ 'ବଳକା ମୂଲ୍ୟ'ରୁ କିଛି କିଛି ଅଂଶ ନେବା ପାଇଁ ଆନ୍ଦୋଳନ କରୁଛନ୍ତି । ବ୍ୟକ୍ତିଗତ ପୁଞ୍ଜିର ମାଲିକମାନେ ଏହାକୁ ବିରୋଧ କରକୁଛନ୍ତି ।



ଯେତେବେଳେ ଏଇ 'ବଳକା ମୂଲ୍ୟ' ବ୍ୟକ୍ତିଗତ ମାଳିକାନାରୁ ଉଦ୍ଧାର ପାଇ ସମାଜର ସାମୁହିକ ସମ୍ପତ୍ତିରେ ପରିଣତ ହେବ ଏବଂ ଯେତେବେଳେ ଉତ୍ପାଦନକାରୀ ଶ୍ରମିକ ବା ଶ୍ରମଜୀବୀମାନେ ଏଇ 'ବଳକା ମୂଲ୍ୟ'ର ମାଲିକ ହେବେ, ସେତେବେଳେ ହିଁ ସମାଜରୁ ଶୋଷଣ ଓ ପୁଞ୍ଜିବାଦ ଲୋପ ପାଇବ । ସେତେବେଳେ ଉତ୍ପାଦନ ଯନ୍ତ୍ରର ମାଲିକ ହେବେ ଦେଶର ସମଷ୍ଟିଗତ ଭାବେ ଶ୍ରମଜୀବୀ ବା ମେହେନତକାରୀ ଜନସାଧାରଣ ।

ଏକଥା ସରିଲା ପରେ, ଆଉ ଥରେ ଚାଟଶାଳୀରେ ଆଲୋଚନା ହେଲା ଆନ୍ତର୍ଜାତିକ ସମସ୍ୟା ଏବଂ ପୁଞ୍ଜିର ବିକାଶ ଓ ପରିଣତି । ପୁଞ୍ଜିର ବିକାଶ ଓ ସାମ୍ରାଜ୍ୟବାଦର ବିକାଶ ବିଷୟରେ ଭଗବତୀ ବାବୁ ବହୁ ଆଲୋଚନା କରିଛନ୍ତି । ସାମ୍ରାଜ୍ୟବାଦର ପ୍ରକୃତ ସ୍ୱରୂପ ଉଦ୍‌ଘାଟନ କଲେ ଲେନିନ୍ । ତାଙ୍କର ବିରାଟ ସନ୍ଦର୍ଭ 'ସାମ୍ରାଜ୍ୟବାଦ'କୁ ଭଗବତୀ ବାବୁ ଆମକୁ ଥରେ ବୁଝାଉଥିଲେ । ପୁଞ୍ଜିବାଦ କୌଣସି ଦେଶରେ ସୀମାବଦ୍ଧ ରହିଲା ନାହିଁ । ସେ ପଣ୍ୟ ଉତ୍ପାଦନ କରି ବଜାରକୁ ଛାଡିଲା । ବଜାରରେ ତାହାକୁ ଉଚ୍ଚ ହାରରେ ବିକ୍ରୀ କରି ମୁନାଫା ଲୁଣ୍ଠନ କଲା । ନିଜ ଦେଶ ଭିତରେ ସବୁ ଜିନିଷ ବିକ୍ରି କରିବାର ସୁଯୋଗ ନ ହେବାରୁ ସେ ତାକୁ ନେଇଗଲା ଅନ୍ୟ ଦେଶକୁ । ସେଠାରେ ଶସ୍ତା କଞ୍ଚାମାଲ୍ ସଂଗ୍ରହ କଲା ଏବଂ ନିଜର ଉତ୍ପାଦିତ ଜିନିଷ ବିକ୍ରୀ କଲା । ବହୁ ଲାଭ ବା ମୁନାଫା ସଞ୍ଚୟ କଲା । କାଳକ୍ରମେ ସେ ପଣ୍ୟ ଜିନିଷକୁ ନେବା ପରିବର୍ତ୍ତେ ନୂତନ ଅବିକଶିତ ଦେଶରେ ନିଜର ପୁଞ୍ଜିକୁ ଖଟାଇଲା । ସେଠାରେ ଶସ୍ତା କଞ୍ଚାମାଲ ଏବଂ ସେଠାର ଶସ୍ତା ଶ୍ରମକୁ ବ୍ୟବହାର କରି ଶସ୍ତାରେ ପଣ୍ୟ ଉତ୍ପାଦନ କଲା ଏବଂ ବଜାରରେ ବିକ୍ରୀ କରି ଅଧିକ ମୁନାଫା ହାସଲ କଲା । ସେ ଏହି ବ୍ୟବସ୍ଥା ଏବଂ ମୁନାଫାର ସଂପ୍ରସାରଣ ଓ ସୁରକ୍ଷା ପାଇଁ ଅବିକଶିତ ଦେଶକୁ ନିଜର ରାଜନୈତିକ ଅକ୍ତିଆରରେ ଆଣିଲା ଏବଂ ସେ ଦେଶକୁ ପରାଧୀନ କଲା । ଆମ ଦେଶ ଏହିପରି ଭାବରେ ବ୍ରିଟିଶ୍ ସାମ୍ରାଜ୍ୟବାଦର ପରାଧୀନ ହେଲା ଏବଂ ସେମାନଙ୍କର ଉପନିବେଶରେ ପରିଣତ ହେଲା । କେବଳ ବ୍ରିଟିଶ୍ ଯେ ଏ କ୍ଷେତ୍ରରେ ଏକୁଟିଆ ଥିଲା ତାହା ନୁହେଁ । ୟୁରୋପର ଯେଉଁସବୁ ପୁଞ୍ଜିବାଦୀ ଦେଶମାନେ ସାମ୍ରାଜ୍ୟବାଦୀରେ ପରିଣତ ହୋଇଥିଲେ ସେମାନଙ୍କ ମଧ୍ୟରେ ଫରାସୀ, ଓଲନ୍ଦାଜ, ପର୍ତ୍ତୁଗୀଜ୍, ରୁଷିୟ, ଜର୍ମାନ ଓ ଆମେରିକାର ମାର୍କିନ୍ ସାମ୍ରାଜ୍ୟବାଦୀମାନେ ମୁଖ୍ୟ । ଏଇ ସାମ୍ରାଜ୍ୟବାଦୀମାନଙ୍କ ବିରୋଧରେ ସେ ଦେଶର ଜନସାଧାରଣ ପରାଧୀନତାରୁ ନିଜର ମୁକ୍ତି ପାଇଁ ମହାନ୍ ସଂଗ୍ରାମ ପରିଚାଳିତ କରିଛନ୍ତି । ଏହା ଦୁନିଆର ମୁକ୍ତି ଓ ସ୍ୱାଧୀନତା ପାଇଁ ଏକ ବିରାଟ ଅବଦାନ ।

ଏଇ ପରାଧୀନତାରୁ ଅଧିକ ସଂଖ୍ୟାରେ ଜନସାଧାରଣ ମୁକ୍ତ ହେଲେ ଦ୍ୱିତୀୟ ମହାଯୁଦ୍ଧ ପରେ । ଭଗବତୀ ବାବୁ ଏ ସବୁ କଥା ଦେଖିବା ପାଇଁ ଇହଧାମରେ ରହିଲେ ନାହିଁ । ସେ ହିଟଲର ଫାସିବାଦ ବିରୋଧୀ ସଂଗ୍ରାମ ଚାଲିଥିଲାବେଳେ ନିଜର ସଂଗ୍ରାମୀ ମଇଦାନରେ ନିଜର କର୍ତ୍ତବ୍ୟ କରୁ କରୁ ଟଳିପଡିଲେ । କିନ୍ତୁ ଏବେ ବି ମୋର ମନେ ଅଛି ସେ ଆମକୁ କିପରି ଆଦର୍ଶ ଓ ତତ୍ତ୍ୱଗତ ବିଷୟ ବୁଝାଉଥିଲେ ।

ମହାନ୍ ଅକ୍ଟୋବର ବିପ୍ଳବର ସେ ଜୟଗାନ କରି ଯାଇଛନ୍ତି । ଦୁନିଆରେ ଏହା ଏକ ନୂତନ ଯୁଗ ସୃଷ୍ଟି କଲା ବୋଲି ସେ ଆମ୍ଭମାନଙ୍କୁ ତାଙ୍କ ଚାଟଶାଳୀରେ ମାଷ୍ଟ୍ର ପରି ବୁଝାଇଥିଲେ । ସମାଜବାଦୀ ବିପ୍ଳବ ବିଷୟରେ ସେଠାରେ ବହୁ କଥାରେ ଆଲୋଚନା ହୋଇଛି । ସମାଜବାଦ ହାସଲ କରିବା ପାଇଁ ଲେନିନ୍ ମହାନ୍ ଅକ୍ଟୋବର ବିପ୍ଳବର ନେତୃତ୍ୱ ନେଲେ । ଠିକ୍ ସେହିପରି ପରାଧୀନତାରୁ ମୁକ୍ତ ଜନସାଧାରଣ କଅଣ ଆଉ ଥରେ ପୁଞ୍ଜିବାଦୀ ବିକାଶର ବାଟ ଦେଇ ସମାଜବାଦକୁ ଯିବେ ? ଏ ପ୍ରଶ୍ନରେ ଭଗବତୀ ବାବୁ ଲେନିନ୍‌ଙ୍କର ବିଶ୍ଳେଷଣକୁ ଆମକୁ ସେତେବେଳେ ବୁଝାଇଥିଲେ ।

ଲେନିନ୍ ପ୍ରଥମେ ଦେଖାଇଲେ ଯେ ସାମ୍ରାଜ୍ୟବାଦ କବଳରୁ ମୁକ୍ତ ଜନସାଧାରଣ ସମାଜବାଦକୁ ଗତି କରିବା ପାଇଁ ନିଶ୍ଚିତ ଭାବରେ ପୁଞ୍ଜିବାଦର ଗତିପଥ ଦେଇ ଯିବେ ନାହିଁ । ସେ ତତ୍ତ୍ୱଗତ ଭାବରେ ସ୍ପଷ୍ଟ ପ୍ରତିପାଦିତ କରିଥିଲେ ଯେ ଗୋଟିଏ ଅଣ-ପୁଞ୍ଜିବାଦୀ ପଥରେ ନୂତନ ଅବସ୍ଥାରେ ଜନସାଧାରଣ ଗତି କରି ପାରିବେ । ୧୯୨୦ ମସିହା ଜୁଲାଇ ମାସରେ ମସ୍କୋ ଠାରେ ଅନୁଷ୍ଠିତ ହୋଇଥିବା କମ୍ୟୁନିଷ୍ଟ ଆନ୍ତର୍ଜାତିକର ୨ୟ କଂଗ୍ରେସରେ ଲେନିନ୍ ଗୋଟିଏ ପ୍ରଶ୍ନ ଉଠାଇଲେ । ତାହା ହେଲା : -





"ଆମେ କଅଣ ଏହାକୁ ସଠିକ୍ ବିଚାର କରିବୁ ଯେ ପଶ୍ଚାତପଦ୍ ଦେଶର ଜନସାଧାରଣ ସେମାନଙ୍କର ମୁକ୍ତି ପଥରେ ପୁଞ୍ଜିବାଦୀ ଅର୍ଥନୈତିକ ବିକାଶ ଭିତରେ ଦେଇ ନିଶ୍ଚିତ ଭାବରେ ଗତି କରିବେ ? ସେମାନଙ୍କ ମଧ ଯୁଦ୍ଧ ଭିତରେ ଓ କେତେକ ଯୁଦ୍ଧ ପରେ ପ୍ରଗତି ପଥରେ କେତେକେ ଅଗ୍ରଗତି କରିଛନ୍ତି । ଆମେ ଏହାର ଉତ୍ତର ଦେଇଛୁ ନାସ୍ତିବାଚକରେ । ଯଦି ବିଜୟୀ ବିପ୍ଳବୀ ସର୍ବହରା ସେମାନଙ୍କ ମଧ୍ୟରେ ଧାରାବହିକ ପ୍ରଚାର ଚଳାଏ ଏବଂ ସୋଭିଏତ୍ ସରକାର ନିଜ ଅକ୍ତିଆରରେ ଥିବା ସମସ୍ତ ଶକ୍ତି ଦେଇ ସେମାନଙ୍କୁ ସାହାଯ୍ୟ କରେ - ସେପରି ଏକ ଅବସ୍ଥାରେ ଏହା ଭାବିବା ଭୁଲ୍ ହେବ ଯେ ପଶ୍ଚାତ୍‌ପଦ ଦେଶର ଜନସାଧାରଣ ନିଶ୍ଚିତ ଭାବରେ ବିକାଶର ପୁଞ୍ଜିବାଦୀ ସ୍ତର ମଧଦେଇ ଯିବେ ।"

ଲେନିନ୍ ଆହୁରି ସେଠାରେ ଦୃଢ ଭାବରେ କହିଥିଲେ, "ଅଗ୍ରଗାମୀ ଦେଶର ସର୍ବହରାମାନଙ୍କ ସାହାଯ୍ୟରେ ପଶ୍ଚାତପଦ ଦେଶମାନେ ସୋଭିଏତ୍ ବ୍ୟବସ୍ଥା ହାସଲ କରିପାରନ୍ତି ଏବଂ ବିକାଶର କେତେକ ସ୍ତର ଜରିଆରେ ସାମ୍ୟବାଦକୁ ମଧ ଗତି କରି ପାରନ୍ତି । ପୁଞ୍ଜିବାଦୀ ସ୍ତର ଜରିଆରେ ଗତି ନ କରି ସେମାନେ ଏହା ହାସଲ କରିପାରନ୍ତି ।"

ଲେନିନ୍‌ଙ୍କ ଏଇ କଥାଟିକୁ ଭଗବତୀ ବାବୁ ସେତେବେଳେ ଆମମାନଙ୍କୁ ଭଲ ଭାବରେ ବୁଝାଇଥିଲେ । ଅବଶ୍ୟ ଭଗବତୀ ବାବୁ ଇହଧାମରୁ ଚାଲିଗଲା ପରେ ଦୁନିଆରେ ଲେନିନ୍‌ଙ୍କର ଭବିଷ୍ୟତବାଣୀ ଏବଂ ଭଗବତୀ ବାବୁଙ୍କ ବିଶ୍ଳେଷଣ କେତେ ଠିକ୍ ତାହା କାର୍ଯ୍ୟରେ ଦେଖାଗଲା ।

ପୃଥିବୀର ବହୁ ଦେଶ ଆଜି ସମାଜବାଦ ପଥରେ ଏବଂ ସମାଜବାଦୀ ମନୋଭାବାପନ୍ନ ହୋଇ ଗଢି ଉଠୁଛନ୍ତି । ୧୯୧୭ ମସିହାରେ ରୁଷର ଅକ୍ଟୋବର ବିପ୍ଳବ ଏବଂ ଦ୍ୱିତୀୟ ମହାଯୁଦ୍ଧ ପରେ ସମାଜବାଦୀ ଦେଶସମୂହ ଗୋଟିଏ ନୂଆ ପରିସ୍ଥିତି ସୃଷ୍ଟି କଲେ । ବହୁ ପରାଧୀନ ଦେଶ, ସ୍ୱାଧୀନ ହେବା ପାଇଁ ବାଟ ଫିଟିଲା । ସାମ୍ରାଜ୍ୟବାଦୀମାନେ ଦୁର୍ବଳ ହେଲେ । ନବ ସ୍ୱାଧୀନ ଦେଶମାନେ ଅଣ-ପୁଞ୍ଜିବାଦୀ ପଥ ଅନୁସରଣ କରିବା ପାଇଁ ସୁଯୋଗ ପାଇଲେ । ଏବେ ଏସିଆ ଓ ଆଫ୍ରିକାର ଏହିପରି ଦେଶମାନଙ୍କର ଲୋକସଂଖ୍ୟା ୧୦ କୋଟି । ସେପରି ଦେଶମାନେ ହେଲେ ଆଲଜେରିଆ ବର୍ମା, ଗୁଇନା, ୟେମେନର ଜନଗଣତାନ୍ତ୍ରିକ ରିପବ୍ଲିକ୍, କଙ୍ଗୋ, ସିରିଆ ଏଂ ତାନଜାନିଆ ଏ ପଥରେ ନୂତନ ପଥିକ ହେଲେ ଇଥିଓପିଆ, ଆଙ୍ଗୋଲା, ମୋଜାମ୍ବିକ, ବେନିନ୍ ଓ ମାଡାଗାସ୍କର ପ୍ରଭୃତି । ଏଇସବୁ ଦେଶ ସହିତ ଏବେ ଯୋଗଦେଲା ଆଫଗାନିସ୍ଥାନ ।

ପୂର୍ବରୁ ଏ ପଥରେ ଚାଲୁଥିବା ଇଜିପ୍ଟ, ମାଲି ଓ ଘାନା ଦେଶରେ ପ୍ରତିକ୍ରିୟାଶୀଳ ଶକ୍ତି କ୍ଷମତା ଦଖଲ କରି ଅଣପୁଞ୍ଜିବାଦୀ ପଥର ଅଗ୍ରଗତିରୁ ସେମାନଙ୍କୁ ବଞ୍ଚିତ କରିଛନ୍ତି ।

ଅଣ - ପୁଞ୍ଜିବାଦୀ ପଥ ଏବଂ ସମାଜବାଦୀ ମନୋବୃତ୍ତିସମ୍ପନ୍ନ ଦେଶର ପ୍ରଧାନ ଚରିତ୍ର ଆଜି ହେଉଛି -

କ) ରାଜନୈତିକ କ୍ଷମତାର ଶ୍ରେଣୀ ଚରିତ୍ରର ପରିବର୍ତ୍ତନ । ଜାତୀୟ ପୁଞ୍ଜିପତୀମାନଙ୍କ ହାତରୁ ଏକଚାଟିଆ କ୍ଷମତା କାଢି ନେବା । ସାମନ୍ତବାଦୀମାନଙ୍କର କ୍ଷମତାକୁ ଖର୍ବ କରିବା । ଦେଶର ପ୍ରଗତିଶୀଳ ଶକ୍ତିମାନେ ଜନସାଧାରଣଙ୍କର ସାମୁହିକ ସ୍ୱାର୍ଥ ଦୃଷ୍ଟିରୁ ଗୋଟିତ ନୂତନ ବୈପ୍ଳବିକ ଓ ଗଣତାନ୍ତ୍ରିକ ରାଷ୍ଟ୍ର ଏବଂ ନୂତନ ଧରଣର ଶାସନ ବ୍ୟବସ୍ଥା ପ୍ରତିଷ୍ଠା କରିବା । ଏହାର ମୁଖ୍ୟ କଥା ହେବ ଯେ ପୁଞ୍ଜିବାଦ ଶ୍ରେଣୀର ଏକଚାଟିଆ କ୍ଷମତାକୁ ଖର୍ବ କରାଯିବ ।

ଖ) ଦ୍ୱିତୀୟରେ, ସାମ୍ରାଜ୍ୟବାଦର ରାଜନୈତିକ ଆଧିପତ୍ୟକୁ ସଂପୂର୍ଣ୍ଣ ରୂପେ ଖତମ୍ କରିବା । ଏକଚାଟିଆ ପୁଞ୍ଜିପତିଙ୍କର ଦେଶର ଅର୍ଥନୈତିକ ଜୀବନ ଉପରେ କର୍ତ୍ତୃତ୍ୱକୁ ଶେଷ କରିବା ।

ଗ) ଦେଶରେ ଗୋଟିଏ ରାଷ୍ଟ୍ରୀୟ ଓ ସମବାୟିକ ସେକ୍ଟର ସୃଷ୍ଟି କରିବା ସରକାରଙ୍କ ଦ୍ୱାରା ପରିଚାଳିତ ଏବଂ ସମବାୟ ସମିତି ଦ୍ୱାରା ନିୟନ୍ତ୍ରିତ ଅର୍ଥନୈତିକ ଜୀବନ, ଶିଳ୍ପ, ବାଣିଜ୍ୟ ପ୍ରଭୃତିକୁ ଉତ୍ସାହ ଦେବା ।

ଘ) ଦେଶରେ ଯେଉଁ ପୁଞ୍ଜିବାଦୀ ସରକାର ରହିବ ତାହାକୁ ଗୋଟାଏ ସ୍ତରରେ ସରକାର ନିୟନ୍ତ୍ରିତ କରିବ ଏବଂ ତାହାକୁ ବିକାଶିତ ହେବାକୁ ନ ଦେଇ ସଙ୍କୁଚିତ କରାଯିବ । ବିଦେଶୀ କମ୍ପାନୀମାନଙ୍କୁ ଜାତୀୟକରଣ କରାଯିବ ଏବଂ ସେମାନଙ୍କ ଉପରେ କ୍ଷେତ୍ର ବିଶେଷରେ କଡାକଡି ବ୍ୟବସ୍ଥା ପ୍ରୟୋଗ କରାଯିବ ।



ଙ) ସମାଜବାଦୀ ଦେଶମାନଙ୍କ ସହିତ ନିବିଡ ସମ୍ପର୍କ ସ୍ଥାପନ କରାଯିବ ।

ଚ) ଦେଶରୁ ଦୁର୍ନୀତି ଦୂର କରିବା ପାଇଁ ସମସ୍ତ କାର୍ଯ୍ୟକ୍ରମ ନିଆଯିବ ।

ଛ) କୃଷିରେ ଭୂସଂସ୍କାର, ସମାଜରେ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ଓ ଶ୍ରେଣୀର ଅଧିକ ଖର୍ବ କରିବା, ନୀରକ୍ଷରତା ଦୂରୀକରଣ, ମହିଳାମାନଙ୍କୁ ସମାନ ଅଧିକାର ଦାନ, ପ୍ରଗତିଶୀଳ ଶ୍ରମ ଆଇନ୍ ପ୍ରଣୟନ ଓ ସମାଜର ପ୍ରଗତିଶୀଳ ବିକାଶ ପାଇଁ ବିଭିନ୍ନ ଆଇନ୍ ପ୍ରଣୟନ ପାଇଁ ଏବଂ କାର୍ଯ୍ୟକାରୀ କରିବା ପାଇଁ ବ୍ୟବସ୍ଥା ହେବ ।

ଜ) ଦେଶ ଭିତରେ ସାମ୍ରାଜ୍ୟବାଦ, ଉପନିବେଶବାଦ ଓ ଜାତୀୟ ସଂସ୍କାରବାଦକୁ ଉତ୍ସାହିତ କରୁଥିବା ଭାବଧାରା ବିରୁଦ୍ଧରେ ବ୍ୟାପକ ସଂଗ୍ରାମ ପରିଚାଳିତ କରିବାକୁ ହେବ । ଦୁନିଆର ମୁକ୍ତି ସଂଗ୍ରାମ ସହିତ ସଂଯୁକ୍ତ ଏବଂ ବୈଜ୍ଞାନିକ ସମାଜବାଦ ଉପରେ ପ୍ରତିଷ୍ଠିତ ଆଦର୍ଶନ ଓ ଭାବଧାରାର ବ୍ୟାପକ ପ୍ରଚାର କରିବାକୁ ହେବ ।

ଏଇସବୁ ବିଷୟ ଉପରେ ଆଧାରିତ ରାଷ୍ଟ୍ର ନୀତିକୁ ଏକ ଅଣ-ପୁଞ୍ଜିବାଦୀ ରାଷ୍ଟ୍ର ଓ ତାହାର ସରକାର କାର୍ଯ୍ୟକାରୀ କରିବା । ତାହା ହେଲେ ଦେଶରେ ସାମନ୍ତ-ବାଦ ଲୋପ ହେବା ସଂଗେ ସଂଗେ ପୁଞ୍ଜିବାଦୀ ବ୍ୟବସ୍ଥାର ପୁନର୍ଜନ୍ମ ଓ ବିକାଶ ସମ୍ଭବ ହେବ ନାହିଁ । ଦେଶ ଓ ସମାଜ ଏଇ ପଥରେ ସମାଜବାଦୀ ବ୍ୟବସ୍ଥା ଆଡକୁ ଆଗେଇ ଚାଲିବ ।

ଏହା ଏକ କଠିନ ଆଉ ଜଟିଳ ପଥ । ଏହାକୁ ପରିଚାଳିତ କରିବା ପାଇଁ ଶ୍ରମିକ ଶ୍ରେଣୀର ପାର୍ଟି କମ୍ୟୁନିଷ୍ଟ ପାର୍ଟି ଆଦର୍ଶଗତ ଭାବେ, ରାଜନୈତିକ ଓ ସାଙ୍ଗଠନିକ ଦିଗରୁ ବ୍ୟାପକ ସଙ୍ଗଠିତ ହେବା ଆବଶ୍ୟକ । ଶ୍ରମିକ ଓ କ୍ଷେତ ମଜଦୁର ଏବଂ ମେହେନତ୍କାରୀ ଗରିବ ଚାଷୀର ଏକ ଶକ୍ତିଶାଳୀ ମେଣ୍ଟ ଉପରେ ନିର୍ଭର କରିବ । ସେଥିପାଇଁ ଶ୍ରମିକ, କୃଷକ, ମଧ୍ୟବିତ୍ତ ଓ ବୁଦ୍ଧିଜୀବୀ ଶ୍ରେଣୀର ଏକ ଦୃଢ ସଂଗ୍ରାମ ଆବଶ୍ୟକ । ଏଇ ସଂଗ୍ରାମ ଜରିଆରେ ଏଇ ମେଣ୍ଟ ଗଢିଉଠିବ ।

ଏସବୁ କଥାର ନିର୍ଯ୍ୟାସ ଭଗବତୀ ବାବୁ ଆମକୁ ବୁଝାଇଥିଲେ । ସେ ସଦାବେଳେ ଜୋର ଦେଉଥିଲେ ଶ୍ରେଣୀ ଚେତନା, ଶ୍ରେଣୀ ସଙ୍ଗଠନ ଏବଂ ଶ୍ରେଣୀ ସଂଗ୍ରାମ ଉପରେ । ଇତିହାସକୁ ଘଟଣାବଳୀର ଏକ ଫୁଲମାଳ ପରି ନ ଦେଖି ଶ୍ରେଣୀ ସଂଗ୍ରାମର ଏକ ଧାରାବାହିକ ଗତିଧାରା। ପରି ଦେଖିବା ପାଇଁ ସେ ଶିଖାଉଥିଲେ ।

ଭଗବତୀବାବୁଙ୍କ ଚାଟଶାଳୀର ଆବଶ୍ୟକତା ଆଜି ବହୁତ । କାରଣ ଆଜି ଦେଶରେ ସାଂପ୍ରଦାୟିକ, ଉଗ୍ର ପ୍ରାଦେଶିକ, ଉଗ୍ର ଜାତୀୟବାଦୀ ଓ ଭାବବାଦୀ ଚିନ୍ତାଧାରାକୁ ପୁଞ୍ଜିବାଦୀ ଶାସକଶ୍ରେଣୀ ସାମ୍ରାଜ୍ୟବାଦୀ ଓ ନ୍ୟସ୍ତସ୍ୱାର୍ଥ ପ୍ରତିକ୍ରିୟାଶୀଳ ଶକ୍ତି ଓ ବ୍ୟକ୍ତିମାନେ ସବୁମନ୍ତେ ଚଳାଉଛନ୍ତି । ଶ୍ରମିକ ଓ ଖଟିଖିଆ ଶ୍ରେଣୀକୁ ବିଭେଦଗ୍ରସ୍ତ କରୁଛନ୍ତି ।

ଭଗବତୀ ବାବୁଙ୍କ ଚାଟଶାଳୀରେ ଯେଉଁ କେତେକ ଯୁବକ ପାଠ ପଢିଥିଲେ ସେମାନେ ଆଜି ଓଡ଼ିଶାର ଜନଜୀବନରେ ଦୃଢ ଭାବରେ ଆଦର୍ଶକୁ ଅନୁସରଣ କରି କାର୍ଯ୍ୟ କରୁଛନ୍ତି । ସେଥିରେ କେତେକ ଅଳ୍ପ ପଥଚ୍ୟୁତ ହୋଇଛନ୍ତି । କେତେକ ଅତି ବିପ୍ଳବୀ ହୋଇ ବିପଥଗାମୀ ହୋଇଛନ୍ତି । କିନ୍ତୁ ଭଗବତୀ ବାବୁଙ୍କ ଅବଦାନ ନବୀନ ଓଡ଼ିଶା ଗଠନ ଦିଗରେ ବିରାଟ ।

ଆଜିର ଦିନରେ ସେଇ ବିରାଟ ବ୍ୟକ୍ତିତ୍ୱ ଏବଂ ସେଇ ମହାନ୍ ବିପ୍ଳବୀଙ୍କ ସ୍ମୃତିକୁ ମନେ ପକାଇ ନୂତନ ଯୁବଶ୍ରେଣୀ ପ୍ରକୃତ ବୈଜ୍ଞାନିକ ବୈପ୍ଳବିକ ପଥରେ ଚାଲୁ ଏହା ହିଁ କାମ୍ୟ ।









# ଅଶୁଭ ତେୟାଳିଶ

- ଶ୍ରୀ ଗଙ୍ଗାଧର ରଥ

୧୯୪୩ ମସିହା ଓଡିଶା ଇତିହାସରେ ଏକ ଅଶୁଭ ବର୍ଷ । ଏକେତ ରାଜନୈତିକ କ୍ଷେତ୍ରରେ ଚରମ ଶୂନ୍ୟତା, ତେଣେ ଖାଦ୍ୟାଭାବ ଓ ଯୁଦ୍ଧ ପରିସ୍ଥିତି ହେତୁ ଦେଶବ୍ୟାପୀ ଅର୍ଥନୈତିକ ସଂକଟ । ଓଡିଶାରେ ସେହି ସମୟରେ ପାରଳାଖେମୁଣ୍ଡି ମହାରାଜାଙ୍କ ନେତୃତ୍ୱରେ ଏକ ବ୍ରିଟିଶ ସପକ୍ଷବାଦୀ ମନ୍ତ୍ରୀ ମଣ୍ଡଳ ଗଠିତ ହୋଇଥାଏ । ପ୍ରଧାନମନ୍ତ୍ରୀ ପାରଳ । ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେଓ, ଶିକ୍ଷା ଅର୍ଥ ଓ ଯୋଗାଣ ମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ତୃତୀୟ ମନ୍ତ୍ରୀ ମୌଲବୀ ଅବଦୁସ୍ ଶୋଭାନ ଖାଁ । ଏମାନଙ୍କ ସହିତ ଯୋଗ ଦେଇଥାନ୍ତି ଯଦୁମଣି ମଂଗରାଜ ଓ ଅନ୍ୟ କେତେ ଜଣ । କଂଗ୍ରେସ ଦଳରୁ ନର୍ବାଚିତ ବିଧାନ ସଭା ସଦସ୍ୟମାନେ ବଂଦୀଶାଳାରେ । ଏଣୁ ଏହି ସଂଖ୍ୟାଲଘୁ ଗୋଷ୍ଠି ପକ୍ଷରେ ସରକାର ଚଳାଇବାରେ କୌଣସି ଅସୁବିଧା ନଥାଏ । ଛ'ମାସ ମଧ୍ୟରେ ୪୨ ଆନ୍ଦୋଳନରେ ଝଂଜା ନୀରବ ଓ ନିଃଶବ୍ଦ ହୋଇ ଆସିଲା । ମୁଷ୍ଟିମେୟ କଂଗ୍ରେସ ସମାଜବାଦୀ ନେତାଙ୍କ ଉଦ୍ୟମରେ ଭାରତର କେତେକ ଅଂଚଳରେ ଯେଉଁ ସୀମିତ ପ୍ରତିବାଦର ଝଲକ ଦେଖା ଦେଉଥିଲା, ସାମ୍ୟବାଦୀ ନେତାମାନଙ୍କ ଗିରଫଦାରୀ ପରେ ତାହା ମଧ୍ୟ ନିଷ୍ପ୍ରଭ ହୋଇ ଆସିଲା । କିନ୍ତୁ ସ୍ୱାଧିନତାର ଦୁର୍ଦ୍ଦମନୀୟ ଲାଳସାକୁ ସରକାରୀ ଦମନଲୀଳା ଲୋପ କରି ଦେଇ ପାରିଲାନାହିଁ । ଅସନ୍ତୋଷ ଭିତରେ କୁହୁଳିବାକୁ ଲାଗିଲା । ଏହି ସଂକଟମୟ ପରିସ୍ଥିତିରେ ସାଧାରଣ ଜନତାର ଦୁଃଖ ଦୈନ୍ୟ, ଅଭାବ ଅସୁବିଧା ଓ ଅନ୍ୟାନ୍ୟ ସମସ୍ୟା ପ୍ରତି ଧ୍ୟାନ ଦେବାକୁ ଦେଶର ଶକ୍ତିଶାଳୀ ରାଜନୈତିକ ସଂଗଠନର ଅଭାବ ଥିଲା ।

ସେହି ବର୍ଷ ଏକ କରାଳ ଦୁର୍ଭିକ୍ଷର ବିକଟ ଛାୟା ବଂଗଳାକୁ ଗ୍ରାସ କରିଥାଏ । ଭୋକ ଉପାସରେ ଲୋକେ ଗାଁ ଗଣ୍ଡା ଛାଡି କଲିକତା ସହରକୁ ପଳାଇ ଆସୁଥାନ୍ତି ସାହାଯ୍ୟ ଓ ଭିକ୍ଷା ଆଶାରେ । ହଜାର ହଜାର ଲୋକ ରାସ୍ତା କଡରେ ଅନାହାର ଓ ବ୍ୟାଧିରେ ଟଳି ପଡୁଥାନ୍ତି । କଲିକତା ସେତେବେଳେ ଜାପାନ ବିରୁଦ୍ଧରେ ଯୁଦ୍ଧ ଅଭିଯାନର ପ୍ରଧାନ ଛାଉଣୀ । ସରକାର ବିଲାତ ଓ ଆମେରିକାରେ ସୈନ୍ୟ ଏବଂ ଭାରତୀୟ ସୈନ୍ୟ ବାହିନୀକୁ ଖାଦ୍ୟ, ଅନ୍ୟ ସରବରାହ ଓ ଅସ୍ତ୍ରଶସ୍ତ୍ର ଯୋଗାଇବାରେ ବ୍ୟସ୍ତ । ବୁଭୁକ୍ଷୁ ଜନତାର କାହାଣୀ ଶୁଣୁଛି କିଏ ? ଅବଶ୍ୟ ବିଲାତ ପୁଞ୍ଜିପତିଙ୍କ ମୁଖପତ୍ର ଷ୍ଟେଟସ୍‌ମ୍ୟାନ" କାଗଜ ବଂଗଳାର ଦୁର୍ଭିକ୍ଷ ପରିସ୍ଥିତି ପ୍ରତି ପ୍ରାଧାନ୍ୟ ଦେଇଥିଲେ ଓ ଅନାହାର ମୃତ୍ୟୁର କାହାଣୀ ଓ ଚିତ୍ର ଛାପି ଦିଲ୍ଲୀ ସରକାର ଓ ବିଲାତ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । କିନ୍ତୁ ଅନାହାର ଓ ଅପମୃତ୍ୟୁ ସମସ୍ୟାର ସନ୍ତୋଷଜନକ ସମାଧାନ ହେଲା ନାହିଁ ।

ବଂଗଳାର ଖାଦ୍ୟାଭାବ ଓ ଅନାହାର ମୃତ୍ୟୁ ଓଡିଶା ଉପରେ ମଧ୍ୟ ପ୍ରତିକୂଳ ପ୍ରଭାବ ପକାଇଥିଲା । ଉତ୍ତର ବାଲେଶ୍ୱର ଓ ଗଞ୍ଜାମର କେତେକ ଅଂଚଳରେ ଭୀଷଣ ତିରୋଟ ଅବସ୍ଥା ଦେଖା ଦେଇଥାଏ । ବଂଗଳାର ଧାନ ଚାଉଳର ଅତ୍ୟଧିକ ଦର ବୃଦ୍ଧି ହେତୁ, ମହଜୁଦ୍‌କାରୀ ଓ ଚୋରା ବେପାରୀମାନେ ଓଡିଶାରୁ କଲିକତାକୁ ଅପର୍ଯ୍ୟାପ୍ତ ଚାଉଳ ରପ୍ତାନୀ କରୁଥାନ୍ତି । ବଂଗଳା ପରିସ୍ଥିତିରେ ସୁଯୋଗ ନେଇ ଓଡିଶାରେ କୃତ୍ରିମ ଅଭାବ ଓ ଦରବୃଦ୍ଧି ଘଟୁଥାଏ । କଲିକତା ସହର ପୂର୍ବାଂଚଳର ଯୁଦ୍ଧଘାଟି । ଏଣୁ କଲିକତାକୁ ଚୋରା ଚାଉଳ ରପ୍ତାନୀ ରୋକିବାକୁ ଓଡିଶା ସରକାର ଅମଂଗ ଓ ଅକ୍ଷମ ଥିଲେ । ଚୋରା ବେପାରୀ ଓ ମହଜୁଦ୍‌କାରୀମାନଙ୍କୁ ଜବତ୍ କରିବା ପାଇଁ ଓଡିଶା ମନ୍ତ୍ରୀମାନଙ୍କର ନୈତିକ ସାହସ ବି ନଥାଏ ।

x x x x

୪୩ ଜୁନ୍ ଜୁଲାଇ ବେଳକୁ କଟକରେ ଚାଉଳ ଦର ହୁ ହୁ ହୋଇ ବଢିଲା । ତିନି ବର୍ଷ ଆଗେ ଓଡିଶାରେ ଚାଉଳ ଟଂକାରେ ଆଠ ସେର ଭାଉରେ ମିଳୁଥିଲା । ବର୍ତ୍ତମାନ ଟଂକାଟିଏ ଦେଲେ ତିନି ସେର ଚାଉଳ ପାଇବା କଷ୍ଟକର ହେଲା । ଖୋଲା ବଜାର ପରିବର୍ତ୍ତେ କଳା ବଜାର ପ୍ରାଧାନ୍ୟ ଲାଭ କଲା । ନୂଆ ନୂଆ କଂଟ୍ରୋଲ ଦୋକାନ ସବୁ ଆରମ୍ଭ ହେଉଥାଏ । ଯେ କୌଣସି ଜିନିଷ କିଣିବା ପାଇଁ 'କିଳାପୋତେଇ' ଦେବାକୁ ପଡେ । "କିଳାପୋତେଇ" ଶବ୍ଦଟାର ପ୍ରୟୋଗ ଦ୍ୱିତୀୟ ମହାଯୁଦ୍ଧ କାଳରେ ବିଶେଷତ୍ୱ ଲାଭ କଲା । କଥିତ ଅଛି, ପୂର୍ବ କାଳରେ ନାଉରୀମାନେ ଯଦି ଧାନ ଚାଉଳ ବା ଜିନିଷ ପତ୍ର ଭରା ନାହା ନେଇ ଅପରିଚିତ ଜାଗାରେ ରଖି ରାତ୍ରି ଯାପନ କରନ୍ତି, ତାହାହେଲେ ସାଧାରଣତଃ



କୂଳରେ ଗୋଟିଏ କିଳାପୋତି ତହିଁରେ ନାହା ଦଉଡି ବାନ୍ଧି ଦିଅନ୍ତି, ଯେପରି ଡଂଗା ଭାସି ନଯିବ । ଅପର ଗାଁ ନଈ ବା ନାଳ କୂଳରେ ଏପରି କିଳା ପୋତିଲେ. ସେଥିପାଇଁ ଗାଁ ବାଲାକୁ ସାମାନ୍ୟ ମାସୁଲ ଦେବାକୁ ପଡେ । ଅବଶ୍ୟ ଏପରି ଦେୟ ପାଇଁ କୌଣସି ଆଇନ କାନୁନ୍‌ରେ ବ୍ୟବସ୍ଥା ନଥାଏ, କିନ୍ତୁ ପାରମ୍ପରିକ ରୀତିରେ ଏପରି ଦିଆଯାଏ । ଏହି ଦେୟର ନାମ 'କିଳାପୋତେଇ' । ଯୁଦ୍ଧ କାଳରେ ଯେ କୌଣସି ପ୍ରକାର ସରକାରୀ ସୁବିଧା ସୁଯୋଗ ପାଇଁ କିଳାପୋତେଇ, ଅର୍ଥାତ୍ ଉତ୍କୋଚ ଦେବାକୁ ପଡୁଥିଲା । ଚାଉଳ ଚିନି କିରାସିନି ଓ ଅନ୍ୟାନ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ପାଇଁ କିଳାପୋତେଇ ଦେଇ ପରମିଟ୍ ଆଣିବାକୁ ପଡେ । ଯେଉଁ ଦୋକାନୀ ଏପରି ଉତ୍କୋଚ ଦେଇ ଜିନିଷ କିଣେ, ସେ ସ୍ୱଭାବତଃ ଖରିଦଦାର ଠାରୁ ଅଧିକ ଦାମ ନେଇ ଜିନିଷ ବିକେ । ସୁବିଖ୍ୟାତ ଔପନାସିକ ଫକୀର ମୋହନ ସେନାପତି ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି, ଉତ୍କୋଚ ସବୁଦିନେ ଥିଲା ଓ ରହିବ । କିନ୍ତୁ ଯୁଦ୍ଧ ସମୟରେ ଏ ବିଭତ୍ସ ପ୍ରଥା ଅତି ମାତ୍ରାରେ ବଢିଗଲା । କିଳାପୋତେଇ ବିନା ଯେ କୌଣସି ପ୍ରକାରର ନ୍ୟାୟ ସଂଗତ ସୁବିଧା ସୁଯୋଗ ମିଳିବ ନାହିଁ, ଏହା ଏକ ଅଲିଖିତ ନିୟମରେ ପରିଣତ ହେଲା । ଏହି ଅଶୁଭ ବ୍ୟାଧି ଏବେ ବିଧିବଦ୍ଧ ପରଂପରାରେ ପରିଣତ ହେଲାଣି ।

କଟକରେ ଆମ୍ଭେମାନେ ବାରମ୍ବାର ସଭା ଶୋଭାଯାତ୍ରା କରି ଦରିଦ୍ର ଓ ଖଟିଖିଆ ଲୋକଙ୍କୁ ସୁବିଧାରେ ଚାଉଳ ଯୋଗାଇ ଦେବା ପାଇଁ ଆନ୍ଦୋଳନ ଆରମ୍ଭ କରିଥିଲୁ । ଚାଉଳ ଯୋଗାଣ ବ୍ୟବସ୍ଥାର ସୁନିୟନ୍ତ୍ରଣ ପାଇଁ ଦାବୀ କରୁଥିଲୁ । ଟଂକାରେ ଚାଉଳ ଚାରିସେର ହେଉ, ଏ ଥିଲା ଆନ୍ଦୋଳନକାରୀ ମାନଙ୍କରେ ମୁଖ୍ୟ ଧ୍ୱନି । କଟକର ଉପକଂଠ ଅଂଚଳରୁ ଏହି ସବୁ ଶୋଭାଯାତ୍ରା ଆରମ୍ଭ କରାଯାଏ । ଦେଉଳସାହୀ ଓ ତୁଳସୀପୁର ଅଂଚଳର ଲୋକମାନଙ୍କୁ ମୁଁ, ଶରତ ପଟ୍ଟନାୟକ ଓ ଯଦୁନନ୍ଦନ ବିଶ୍ୱାଳ ସଂଗଠିତ କରୁ । ଛତ୍ର ବଜାର ଓ ଶଙ୍କରପୁର ଅଂଚଳର ବାସିନ୍ଦାମାନଙ୍କୁ ରାମଚନ୍ଦ୍ର ମିଶ୍ର ଓ ଶମ୍ଭୁ ବିଶ୍ୱାଳ ସଂଗଠିତ କରନ୍ତି । ଭାରତ ସେବକ ସମିତିର ସଦସ୍ୟ ଶ୍ରୀଯୁକ୍ତ ଲକ୍ଷ୍ମୀ ନାରାୟଣ ସାହୁ ଏ ଆନ୍ଦୋଳନରେ ବିଶେଷ ଭାଗ ନେଇଥିଲେ । ଏହି ସଂକ୍ରାନ୍ତରେ ମତେ କେତେଥର ଭଦ୍ରକ, ଦୋଳସାହୀ ଓ ବାଲେଶ୍ୱର ମଧ୍ୟ ଯିବାକୁ ପଡିଥିଲା । ଖାଦ୍ୟ ଆନ୍ଦୋଳନରୁ ବହୁ କର୍ମୀ ବାହାରି କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ ।

ସେହି ବର୍ଷ ଗଂଜାମରେ ମଧ୍ୟ ବିକଟ ମରୁଡି ଓ ଖାଦ୍ୟାଭାବ ଦେଖା ଦେଇଥାଏ । 'ମୁକ୍ତିଯୁଦ୍ଧ' ପତ୍ରିକାରେ ତାର ବିବରଣୀ କେତେକାଂଶରେ ପ୍ରାକଶିତ ହେଉଥାଏ । ମୁଁ ସେତେବେଳେ ବମ୍ବେରୁ ପ୍ରକାଶିତ "ପିପୁଲ୍ସ ଓ୍ୱାର" ପତ୍ରିକାର ଓଡିଶା ସମ୍ବାଦଦାତା ଥିଲି । ଓଡିଶା ଅବସ୍ଥାର ବିଶେଷ ବିବରଣୀ ଫଟୋଚିତ୍ର ସହ 'ପିପଲ୍‌ସ ଓ୍ୱାର' ପତ୍ରିକାରେ ମଧ୍ୟ ପ୍ରକାଶିତ ହେଉଥାଏ । ଅକ୍ଟୋବର ମାସରେ ଭଗବତୀ ବାବୁ କୃଷକ ସଂଘର ସଂପାଦକ ସ୍ୱର୍ଗୀୟ ସାଧୁଚରଣ ମହାନ୍ତିଙ୍କ ସହିତ ଗଂଜାମର ମରୁଡି ଅଂଚଳକୁ ଗଲେ । ସାତ ଦିନ ଗଂଜାମର ବିଭିନ୍ନ ଗାଁ ପରିଭ୍ରମଣ କଲା ପରେ ତାଙ୍କୁ ହଠାତ୍ କଟକ ଫେରିବାକୁ ହେଲା, ଏବଂ ସେ ଫେରିଲେ ଅସୁସ୍ଥ ଅବସ୍ଥାରେ । ବାରମ୍ବାର ପାଇଖାନା ଯିବା ହେତୁ, କଲେରାରେ ଆକ୍ରାନ୍ତ ବୋଲି ସଂଦେହ କରାଯାଇ ତାଙ୍କୁ କଟକ ବଡ ଡାକ୍ତରଖାନାରେ ଭର୍ତ୍ତି କରାଗଲା । ଆମ୍ଭେମାନେ ଅହର୍ନିଶି ଜଗି ରହି ତାଙ୍କ ଚିକିତ୍ସାର ବ୍ୟବସ୍ଥା କଲୁ । ଚାରିଦିନ ପରେ ଝାଡାର ପ୍ରକୋପ ବଂଦ ହୋଇଗଲା । କିନ୍ତୁ କଲେରାର ଲକ୍ଷଣ ଅସ୍ପଷ୍ଟ ହେଲେ ମଧ, ସେ ସୁସ୍ଥ ହେଲେ ନାହିଁ । ଆହୁରି ଦୁଇ ତିନି ଦିନ ହସପିଟାଲରେ ରହିଲେ । କଲେରା ଓ୍ୱାର୍ଡରେ ରଖିବାର ଆଉ ଆବଶ୍ୟକତା ନାହିଁ ବୋଲି ଡାକ୍ତରମାନେ ପରାମର୍ଶ ଦେଲେ । ଆମେ ତାଙ୍କୁ ତଗରପଡା ବସାଘରକୁ ନେଇ ଆସିଲୁ । କିନ୍ତୁ ଘରକୁ ଫେରିଲେ ମଧ୍ୟ ବିଶେଷ ପରିବର୍ତ୍ତନ ହେଲା ନାହିଁ ।

ବାଇସି ତାରିଖ ଅକ୍ଟୋବର ରାତି ଥିଲା ଏକ କାଳ ରାତ୍ରି । ସଂଧ୍ୟା ପରେ ତାଙ୍କର ଅବସ୍ଥା ଖରାପ ଆଡକୁ ଗତି କଲା । ଘରେ କେବଳ ପତ୍ନୀ ସରସ୍ୱତୀ ପାଣିଗ୍ରାହୀ ଓ ତିନୋଟି ଛୋଟ ଝିଅ । ଖୁସି ( ସୁଷମା ପାଣିଗ୍ରାହୀ) ର ବୟସ ସାତ ଆଠ ବର୍ଷ, ହାସି (ଚନ୍ଦ୍ରିକା ମହାପାତ୍ର)ର ବୟସ ପ୍ରାୟ ପାଂଚ ବର୍ଷ ଏବଂ ତୃତୀୟଟି ମାତ୍ର କେତେ ମାସର । ଆମ୍ଭେମାନେ ତାଙ୍କ ଚିକିତ୍ସାରେ ପୁଣି ଲାଗି ପଡିଲୁ । ଡିହାଇଡ୍ରେସନ ବଂଦ କରିବା ପାଇଁ ସାଲାଇନ ଦେବାକୁ ଡାକ୍ତର ପରାମର୍ଶ ଦେଲେ । କିନ୍ତୁ କଟକରେ ସେ କାଳରେ ଘରୋଇ ଚିକିତ୍ସକମାନଙ୍କ ପାଖରେ ସାଲାଇନ ଆଟାଚ୍‌ମେଣ୍ଟିଏ ମଧ୍ୟ ନଥାଏ । ଭଗବତୀ ବାବୁଙ୍କ ବ୍ୟକ୍ତିଗତ ବଂଧୁ ଦୀନବଂଧୁ ସାହୁ ଆଡଭୋକେଟ ଓ ମୁଁ ଗୋଟିଏ ଘୋଡା ଗାଡିରେ ବସି ରାତି ବାରଟାରୁ ଦୁଇଟା ମଧରେ ସାଲାଇନ ଆଟାଚମେଣ୍ଟ ସଂସାଧନରେ ବହୁ ଘରୋଇ ଚିକିତ୍ସକଙ୍କ ଘର ବୁଲି ଆସିଲୁ । ନିରାଶ ହୋଇ





ଫେରିବା ପରେ ଖବର ମିଳିଲା, ଟାଉନ୍ ହଲ ରୋଡରେ ରହୁଥିବା ଡାକ୍ତର ସନାତନ ମୁଖାର୍ଜିଙ୍କ ପାଖରେ ଏହି ଆଟାଚମେଣ୍ଟ ଅଛି । ଡାକ୍ତର ମୁଖର୍ଜୀ ଭଗବତୀ ବାବୁଙ୍କର ଅଗ୍ରଜ କାଳିନ୍ଦୀ ବାବୁଙ୍କର ଅନ୍ତରଙ୍ଗ ବନ୍ଧୁ ଶରତ ଚନ୍ଦ୍ର ମୁଖାର୍ଜି ଡାକ୍ତର ମୁଖାର୍ଜିଙ୍କର ଭାଇ । ଖବର ପାଇବା ମାତ୍ରେ ଡାକ୍ତର ମୁଖାର୍ଜି ସାଙ୍ଗେ ସାଙ୍ଗେ ଦୌଡି ଆସିଲେ । ରାତି ପାହାନ୍ତିଆରେ ଅଧ୍ୟାପକ ଡାକ୍ତର ବନ ବିହାରୀ ପଟ୍ଟନାଏକ ଝାଡା ସାମ୍ପଲ୍ ନେଇ ତତ୍କାଳୀନ ମେଡିକାଲ ସ୍କୁଲ ଲାବୋରେଟାରୀକୁ ପରୀକ୍ଷା ପାଇଁ ନେଇଗଲେ । ସାଲାଇନ ଦେବା ପରେ ରୋଗୀ ଟିକିଏ ସତେଜ ହୋଇ ଉଠିଲେ । ଆଖି ମଧ ଖୋଲିଲେ । ଡାକିଲେ ହଁ ନାହିଁ ଜବାବ ମଧ ଦେଲେ । ଆମେ ଭାବିଲୁ ତାଙ୍କ ଅବସ୍ଥାରେ ନିଶ୍ଚୟ ଉନ୍ନତି ଘଟୁଛି । କିନ୍ତୁ ଏ ସବୁ ଥିଲା ବିଧିର ପ୍ରତାରଣା । ମୃତ୍ୟୁ ସହିତ ଜୀବନର ଚରମ ସଂଘର୍ଷର ସଂକେତ । ଦୀପ ନିର୍ବାଣ ପୂର୍ବରୁ ଯେପରି ଜୋରରେ ଜଳି ଉଠେ । ସକାଳ ପାଂଚଟାରେ ସବୁ ଶେଷ । ଏକ ମହାନ୍ ଜୀବନ ଦୀପ ନିଷ୍ପ୍ରଭ ହୋଇଗଲା । ସେ ଚିରଦିନ ପାଇଁ ଆଖି ବୁଜିଲେ ।

ବଡି ସକାଳୁ ତଗରପଡା ବ୍ରାହ୍ମଣ ସାହିର ସେଇ ଚାଳଘର ପାଖ ଛୋଟ ପଡିଆଟି ଲୋକାରଣ୍ୟ ହୋଇ ଉଠିଥିଲା । ନୀରବ କ୍ରନ୍ଦନରତ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଆଡଭୋକେଟ ହରିହର ମହାପାତ୍ର, ଆଡଭୋକେଟ୍ ଦୀନବନ୍ଧୁ ସାହୁ, ଭାରତ ସେବକ ସମିତିର ସଭ୍ୟ ଶ୍ୟାମ ସୁନ୍ଦର ମିଶ୍ର, ଶରତ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ, ରାମଚନ୍ଦ୍ର ମିଶ୍ର, ରାମଚନ୍ଦ୍ର ରାମ ଓ ଆଉ ଅନେକ ଶୋକାଭିଭୂତ ହୋଇ ଠିଆ ହୋଇଥାନ୍ତି । ହଟାତ୍ ସକାଳ ଛ'ଟାରେ ଡାକ୍ତର ବନବିହାରୀ ପଟ୍ଟନାୟକଙ୍କ କାର ଘର ଦୁଆର ମୁହଁରେ ଲାଗିଲା । ବନୁ ବାବୁ ଓ ଡାକ୍ତର ଷଡଙ୍ଗୀ ଗାଡି ଭିତରୁ ଚିତ୍କାର କଲେ, "ଏ କଲେରା ନୁହେଁ, ଏକ ପ୍ରକାର ଡିସେଣ୍ଟ୍ରି, ଡିସେଣ୍ଟ୍ରି ଚିକିତ୍ସା କରିବା ଦରକାର ।" ବନୁ ବାବୁ ଜାଣି ନଥିଲେ ଯେ ସେତେବେଳକୁ ସବୁ ସରିଯାଇଛି । ଛ' ସାତ ଦିନ ଡାକ୍ତରଖାନାରେ ରହି ମଧ ଯଥା ସମୟରେ ରୋଗ ନିର୍ଣ୍ଣୟ ହୋଇ ପାରିଲା ନାହିଁ । ଏକ ଅମ୍ଳାନ ପ୍ରତିଭାର ଅକାଳ ବିଳୟ ଘଟିଲା ।

ଶବ ଶୋଭାଯାତ୍ରା ଆରମ୍ଭ ହେଲା ଦିନ ଦଶଟାରେ । ଶବ ବାହକ ଥିଲୁ ମୁଁ ଓ ବଂଧୁ ରାମଚନ୍ଦ୍ର ରାମ ଏବଂ ରସାନନ୍ଦ ନାୟକ ଓ ଜଗବଂଧୁ ସାହୁ । ପଛରେ ଥିଲେ ହରିହର ମହାପାତ୍ର, ଦୀନବଂଧୁ ସାହୁ, ଶ୍ୟାମ ସୁନ୍ଦର ମିଶ୍ର, ଅନନ୍ତ ପଟ୍ଟନାୟକ, ଶରତ ପଟ୍ଟନାୟକ, ରାମଚନ୍ଦ୍ର ମିଶ୍ର, ପର୍ଶୁରାମ ଦାସ, ଗଗନ ବିହାରୀ ଜେନା ଓ ସମାଜବାଦୀ ଆନ୍ଦୋଳନ ସହ ସଂପୃକ୍ତ ଶହ ଶହ ଲୋକ । ଅନ୍ତରର ବେଦନା ଓ ଆଖିର ଲୁହ ଲୁଚାଇବାକୁ ଯାଇ ଆମ୍ଭେମାନେ "ଭଗବତୀ ପାଣିଗ୍ରାହୀ ଜିନ୍ଦାବାଦ" ଧ୍ୱନି ଦେଇ ସତୀ ଚଉରା ଚାଲିଲୁ, ଯେଉଁଠି ଓଡିଶାର କେତେ ବରପୁତ୍ରଙ୍କର ଶେଷ ଚିତା ଜଳି ଯାଇଛି । ଭଗବତୀ ବାବୁଙ୍କର ପୁଅ ନଥିଲେ । ଛତିଶ ବର୍ଷ ବୟସରେ ଦେହାବସାନ । କିଏ ମୁଖାଗ୍ନି ଦେବ ? ସମସ୍ତେ କହିଲେ ପରଂପରା ରକ୍ଷା କରିବା ପାଇଁ ନିକଟତମ ସଂପର୍କୀୟ ଭାବରେ ମୁଁ ମୁଖାଗ୍ନି ଦେବା ଉଚିତ । କାଳନ୍ଦୀ ମାମୁଁ ଦୁଃଖରେ ମ୍ରିୟମାଣ ହୋଇ ସତୀ ଚଉରା ଆସି ନଥିଲେ । ଶେଷରେ ତାହାହିଁ ହେଲା । ମୁଁ ମୁଖାଗ୍ନି ଦେଲି ।

ଭଗବତୀ ବାବୁଙ୍କର ଅକାଳ ବିୟୋଗ ମୋତେ ଦାରୁଣ ଆଘାତ ଦେଇଥିଲା । ମତେ ସେତେବେଳେ ବାଇଶି ବର୍ଷ ବୟସ । ଏଥି ପୂର୍ବରୁ ମୋର ଏ ପ୍ରକାରର ଅଭିଜ୍ଞତା ନଥିଲା । ଚିତାଜଳିବାର ଶେଷ ଦୃଶ୍ୟ, ସରସ୍ୱତୀ ଦେବୀଙ୍କର ଲୋତକ ଧାର, ହାସି ଖୁସିଙ୍କର କ୍ରଂଦନରୋଳ - ଏସବୁ ସହ୍ୟ କରିବାକୁ ମୋର ଶକ୍ତି ନଥିଲା । ବର୍ଷ ବର୍ଷ ଧରି ସେ ବେଦନାରେ ଉପଶମ ହେଲା ନାହିଁ । ମୃତ୍ୟୁ ପରେ ପ୍ରାୟ ଦଶ ବାର ବର୍ଷ ପର୍ଯ୍ୟନ୍ତ ମୁଁ ତାଙ୍କୁ ମଝିରେ ମଝିରେ ସ୍ୱପ୍ନରେ ଦେଖେ । ସେ ଖଦଡ ପଂଜାବୀ ପିନ୍ଧି, ଅଳ୍ପ ଦାଢି ରଖି ସ୍ୱପ୍ନରେ କେଉଁଠୁ ଆବିର୍ଭୂତ ହୁଅନ୍ତି । ମୁଁ ପଚାରେ, "ମାମୁଁ ତୁମେ କେଉଁଠୁ ଆସିଲ ?" ସେ ଉତ୍ତର ଦିଅନ୍ତି- "ମୁଁ ତ ଅଣ୍ଡର ଗ୍ରାଉଣ୍ଡ ଥିଲି,ବର୍ତ୍ତମାନ ବାହାରକୁ ଆସିଛି ।" ମୁଁ କହେ, "ନା ନା, ମୁଁ ତ ତୁମର ମୁଖାଗ୍ନି ଦେଇଥିଲି, ତୁମେ ଅଣ୍ଡର ଗ୍ରାଉଣ୍ଡ ଗଲ କେତେବେଳେ ?" ତା ପରେ ସ୍ୱପ୍ନ ଭାଂଗି ଯାଏ । ଏହି ଏକ ପ୍ରକାରର ସ୍ୱପ୍ନ ପ୍ରଥମେ ମୁଁ ବାରମ୍ବାର ଦେଖୁଥିଲି । ସମୟ କ୍ରମେ ସ୍ୱପ୍ନର ପୁନରାବୃତ୍ତି କମି ଆସିଲା ।

୨୩ ତାରିଖ ଅକ୍ଟୋବର ଦିନ ଶବଦାହ ପରେ ଶ୍ମଶାନରୁ ଫେରି ମୁଁ ଥଣ୍ଡା ପାଣିରେ ଗାଧୋଇ ପଡିଲି । ଖାଇବାକୁ ତ ସ୍ପୃହା ନ ଥିଲା । ଶୋଇ ପଡିବାକୁ ଚେଷ୍ଟା କଲି । ପୂର୍ବ ରାତି ପୂରା ଅନିଦ୍ରା ଥିବା ସତ୍ତ୍ୱେ ନିଦ ଆସିଲା ନାହିଁ । ଉପରବେଳା ପାଂଚଟା ବେଳକୁ ନିଦ୍ରାଦେବୀ ଦୟା ପରବଶ ହେଲେ । ରାତିରେ ମୁଁ ଉଠି ନାହିଁ । ନିଦ ଭାଙ୍ଗିଲା ସକାଳ ସାତଟା ବେଳେ । ୨୪ ତାରିଖ ସଂଧ୍ୟା ସାତଟାରେ ଟାଉନ ହଲରେ ଶୋକ ସଭା । ଶରତ ବାବୁ ( ଶରତ ପଟ୍ଟନାୟକ) ବରାଦ୍ କଲେ, ସଭା ପାଇଁ ଗୋଟିଏ ଗୀତ



ଲେଖିବାକୁ । କ'ଣ ଲେଖିବି ? ମୋର ଅଂଗ ପ୍ରତ୍ୟଙ୍ଗ ଅବସନ୍ନ, ମସ୍ତିଷ୍କ ଭାରାକ୍ରାନ୍ତ । ଭଗବତୀ ପାଣିଗ୍ରାହୀ ଥିଲେ ଓଡିଶାରେ କମ୍ୟୁନିଷ୍ଟ ଆନ୍ଦୋଳନରେ ପ୍ରାଣ ପ୍ରତିଷ୍ଠାତା । ଭାଗୀରଥ ହିମାଳୟରୁ ଗଂଗାକୁ ବହି ଆଣିଲା ପରି, ସେ ଓଡିଶାକୁ ମାର୍କ୍ସବାଦୀ ଚିନ୍ତାଧାରା ବହି ଆଣିଥିଲେ । ଓଡିଶାର ସାହିତ୍ୟ ସଂସ୍କୃତି ଓ ମୁକ୍ତି ଆନ୍ଦୋଳନର ସବୁ କ୍ଷେତ୍ରରେ ତାଙ୍କର ପ୍ରତିଭା ଜାଜ୍ୱଲ୍ୟମାନ ଥିଲା । ତାଙ୍କର ଅବଦାନ ବିଷୟରେ ମୁଁ ପୁଣି କି ଗୀତ ଲେଖିବି ? ବିଛଣାରେ ପଡି ରହି ଖଣ୍ଡେ ଛିଣ୍ଡା ଖାତାରେ ଲେଖିବାକୁ ଆରମ୍ଭ କଲି- କବିତା ନୁହେଁ ଗୀତ । "ନବଯୁଗ ନାୟକ ଶହୀଦ ହେ ସାଥୀ" ଗୀତଟି ସେ ଦିନ ସଂଧ୍ୟାରେ ଟାଉନ୍‌ହଲ ସଭାରେ ବୋଲା ଯାଇଥିଲା ଏବଂ ବହୁ ବର୍ଷ ଧରି ଭଗବତୀଙ୍କ ଶ୍ରାଦ୍ଧ ସଭାରେ ଏ ଗୀତଟି ନିଶ୍ଚିତ ଭାବରେ ବୋଲାଯାଏ । ରଚନାଟି ଏଠାରେ ଉଦ୍ଧାର କରୁଛି ।

ନବଯୁଗ ନାୟକ ଶହୀଦ ହେ ସାଥୀ
ତୁମରି ବଂଦନା ରଚେ
ଅନଶନ ଆହତ ଦଳିତ ଏ ଜାତି
ତୁମରି ସଂଧାନେ ନାଚେ ।

ଶୁଭ ଦେଲା ସେ ଯେ ବିପ୍ଳବୀ ମେଳେ
ଗଢିଲା ମୁକ୍ତି ରଣ ସେନା ଦଳେ
କେ ଦେଲା ବିରତି ସୁପ୍ତ ସେନାପତି
ଅନ୍ତିମ ନିଃଶ୍ୱାସ ତାଳେ
ମରଣର ତୁଚ୍ଛ ପାଷାଣ କବଳେ
ଆଜି ତା ଶେଷ ଚିତା ଜଳେ ।
ଲିଭିଲା ମହାଦୀପ୍ତି, ଅନନ୍ତ ମହାଜ୍ୟୋତି
କାହିଁରେ ଭଗବତୀ, କାହାଁ ସେ ସେନାପତି
ତା ମୁରତି ମନେ ନାଚେ ।(୧)

ଅତ୍ୟାଚାର ଯେବେ ଅଭିନବ ରୋଷେ
ଥରାଇଲା ବିଶ୍ୱ ପ୍ରଳୟ ପରଶେ
ଶୋଷଣର ବୁକୁ ଚିରି, ପ୍ରତିରୋଧ ଶିଖା ଟେକି
ଚାଲିଲ ମହାରଥ, ନମାନି ପ୍ରତିଘାତ
କାହିଁରେ ଭଗବତୀ, ଅକାଳେ ଝରିଚି

କାହିଁରେ ମହାରଥୀ, କାହିଁ ସେ ସେନାପତି
ତା ମୁରତି ମନେ ନାଚେ ।(୨)
ମରଣ ସାଥେ ଯେ କଳିଲା ବଳ
ହସି କଷଣେ ଖେଳିଲା ଖେଳ
ସେ ସିନା ଯାଇଛି, ରହିଛି ତା ନୀତି
ତା ରୀତି ପାଳଇ ଦୁନିଆ ସକଳ
ମୁକ୍ତି ପ୍ରୟାସେ ଯୁଝିବ ହରଷେ
ଜନତା ହେଲାଣି ଅଥୟ ଆକୁଳ
କାହିଁ ସେ ଦଧୀଚି, ମରଣ ବରିଚି
କାହିଁରେ ଭଗବତୀ, କାହାଁ ସେ ସେନାପତି
ତା ମୁରତି ମନେ ନାଚେ ।(୩)

ଭଗବତୀଙ୍କ ସ୍ମୃତିରେ 'ମୁକ୍ତିଯୁଦ୍ଧ' ପତ୍ରିକାରେ ଗୋଟିଏ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶିତ ହେଲା । ବହୁ ବିଶିଷ୍ଟ ବ୍ୟକ୍ତି ଏ ସଂଖ୍ୟାରେ ଲେଖିଥିଲେ । କାଳିନ୍ଦୀ ବାବୁଙ୍କ କବିତା "ହସେ ପାହାନ୍ତି ତାରା" ସଚ୍ଚିରାଉତରାୟଙ୍କ କବିତା "ହେ ବଂଧୁ ବିଦାୟ" ଅନନ୍ତ ପଟ୍ଟନାୟକଙ୍କ କବିତା ମୁକ୍ତିଯୁଦ୍ଧର ପୃଷ୍ଠା ମଣ୍ଡନ କରିଥିଲା । ଶୋକସଭା ଉପଲକ୍ଷେ ରଚିତ "କାହିଁରେ ଭଗବତୀ ?" ଗୀତଟି ମଧ ଏ ସଂଖ୍ୟାରେ ସ୍ଥାନ ପାଇଥିଲା । ୧୯୪୫ ଅକ୍ଟୋବର ମାସରେ କଟକ ଟାଉନ ହଲରେ ଅନୁଷ୍ଠିତ ଶ୍ରାଦ୍ଧ ସଭାରେ ସୁବିଖ୍ୟାତ କଳାକାର ସ୍ୱର୍ଗୀୟ ଉଦୟନାଥ ସାହୁ ଏ ଗୀତଟିକୁ ସଂଗୀତ ରୂପ ଦେଇଥିଲେ । ମୋ ସମେତ ସଭାରେ ଉପସ୍ଥିତ ଭଗବତୀଙ୍କ ବହୁ ସାଥି ସହୋଦରଙ୍କ ଆଖିରୁ ଝରିଲା ଉଷ୍ଣ ଲୁହ ଧାର । ବରିଷ୍ଠ ସାଥି ବିଜୟ ଚନ୍ଦ୍ର ଦାସ ମୋ ହାତକୁ ଜାବୋଡି ଧରି କହିଲେ, ତୁମ କଲମ ସାର୍ଥକ ହୋଇଛି ।







# ଭଗବତୀଙ୍କ ସ୍ମୃତିରେ

– ଶ୍ରୀ କୁନ୍ଦନ ରାମ

୧୯୪୦ ମସିହା କଥା । ଖୋର୍ଦ୍ଧା ସବ୍‌ଡିଭିଜନ୍‌ର ମାଣିକାଗୋଡା ଗାଁରେ କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ଏକ ସାଧାରଣ ସଭା ହେଲା । ଏହି ସଭାରେ ମୁଁ ସଭାପତି ହୋଇଥିଲି । ସାଥୀ ଭଗବତୀ ପାଣିଗ୍ରାହୀ, ପ୍ରାଣନାଥ ପଟ୍ଟନାୟକ, ଗଙ୍ଗାଧର ପାଇକରାୟ, ଗଙ୍ଗାଧର ମିଶ୍ର, ପର୍ଶୁରାମ ପଦାତିକ ରାୟ, ଫକୀର ଚରଣ ମହାନ୍ତି, ବାଙ୍କନିଧି ସୁବୁଦ୍ଧି ପ୍ରମୁଖ ଯୋଗ ଦେଇଥିଲେ । ଏହି ସଭାରେ ପ୍ରାୟ ପାଞ୍ଚଶହ ଲୋକ ଯୋଗ ଦେଇଥାନ୍ତି । ବହୁତ ପୋଲିସ, ମଧ୍ୟ ଥାନ୍ତି । ସଭାରେ ସବୁ କମ୍ୟୁନିଷ୍ଟ ନେତା ଅଳ୍ପ ଅଧିକ ଭାଷଣ ଦେଲେ ।

ସଭାରେ ପ୍ରସ୍ତାବ ହେଲା – ଇଂରେଜ ସରକାରକୁ ସବୁମନ୍ତେ ବିରୋଧ କରାଯିବ । କର, ଟିକସଠାରୁ ଆରମ୍ଭ କରି ଖଜଣା ପର୍ଯ୍ୟନ୍ତ ବନ୍ଦ କରାଯିବ, ଯୁଦ୍ଧକୁ ଚାନ୍ଦା ନଦେବା ପାଇଁ ଜନସାଧାରଣଙ୍କୁ ସଜାଗ କରିବା ଲାଗି ସଭା ସମିତି ମାଧ୍ୟମରେ ସଚେତନ କରାଯିବ ।

ଏଥିବପୂର୍ବରୁ ୧୯୩୯ ମସିହାରେ କଂଗ୍ରେସ – ସୋସାଲିଷ୍ଟ ପାର୍ଟି ଓଡ଼ିଶାରେ ଗଢାଯାଇଥାଏ । ସାଥୀ ଭଗବତୀ ତାହାର ସାଧାରଣ ସମ୍ପାଦକ ଥାଆନ୍ତି । ସେତେବେଳେ ଶ୍ରୀ ଜୟପ୍ରକାଶ ନାରାୟଣ କଂଗ୍ରେସ-ସୋସାଲିଷ୍ଟ ନେତା ଭାବରେ ଓଡ଼ିଶା ଆସିଥାନ୍ତି । ତାଙ୍କ ସାଙ୍ଗରେ କୃଷକ ନେତା ସହଜାନନ୍ଦ ସରସ୍ୱତୀ ଆସିଥାନ୍ତି । ସେତେବେଳେ କଟକ ଟାଉନ୍ ହଲରେ ଏକ ସଭା ହୋଇଥିଲା । ସଭା ପରେ ରେଭେନ୍ସା କଲେଜ, ଓଏଷ୍ଟ ହଷ୍ଟେଲରେ ଏହି କଂଗ୍ରେସ-ସୋସାଲିଷ୍ଟ ପାର୍ଟିର ଏକ ବୈଠକ ହେଲା । ବିହାରର ଶ୍ରୀ ବି. ପ୍ରସାଦ ଅଧ୍ୟାପକ ଭାବେ ରେଭେନ୍ସାରେ ଥାନ୍ତି । ତାଙ୍କରି ବସାରେ ଏ ଦୁଇ ନେତା ରହିଲେ । ସେତେବେଳେ କମ୍ୟୁନିଷ୍ଟ ପାର୍ଟି ବେଆଇନ୍ ଥାଏ । କମ୍ୟୁନିଷ୍ଟମାନେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଭିତରେ ଥାନ୍ତି । କମ୍ୟୁନିଷ୍ଟମାନଙ୍କୁ ଅଲଗା କରିଦେବା ପାଇଁ ସେତେବେଳେ ଜୟପ୍ରକାଶ ନାରାୟଣଙ୍କ ଉପସ୍ଥିତିରେ ବ୍ୟବସ୍ଥା କରାଯାଇଥିଲା ।

ବ୍ୟକ୍ତିଗତ ସତ୍ୟାଗ୍ରହରେ ଆମେ ସବୁ ଗିରଫ ହେଲୁ । ବ୍ରହ୍ମପୁର ସେଣ୍ଟ୍ରାଲ ଜେଲ୍‌ର ୱାର୍ଡ ନମ୍ବର '୯-ବି'ରେ ଆମକୁ ରଖାଗଲା । ସେହି ଘରେ ଆମେ ପ୍ରାଣନାଥ ପଟ୍ଟନାୟକ, ବୈଦ୍ୟନାଥ ରଥ, ମନମୋହନ ମିଶ୍ର, ରାମକୃଷ୍ଣ ପତି, ବିଜୟ ଚନ୍ଦ୍ର ଦାସ, ରାମଚନ୍ଦ୍ର ରାମ, ଦୁର୍ଗାଚରଣ ମହାନ୍ତି ପ୍ରଭୃତି ଥିଲୋ । ଅନେକ ସମୟରେ ମିଳୁଥିଲା । ସେଠାରେ ବୈଦ୍ୟନାଥ ରଥ, ମୋହନ ଦାସ, ରାମକୃଷ୍ଣ ପତି ପ୍ରସ୍ତାବ କଲେ ଯେ କିଛି ବହି ମଗାଇ କ୍ଲାସ କରିବା ପାଇଁ ।

ମୋର ବାପା ସିଉଜତନ ରାମ ଜେଲଖାନାକୁ ମନିଅର୍ଡରରେ ଦ୍ୱାରା କେବେ ପଚାଶ ଟଙ୍କା, ଆଉ କେବେ ଶହେ ଟଙ୍କା ପଠାନ୍ତି ମୋର ଖର୍ଚ୍ଚ ପାଇଁ । ନିଜେ ମଧ୍ୟ ଯାଇ କେବେ ଦେଇଆସନ୍ତି । ସେହି ଟଙ୍କା ବହି ମଗାଇବାରେ ଖର୍ଚ୍ଚ କଲୁ । କମ୍ୟୁନିଷ୍ଟ ବହି ବମ୍ବେ, କଲିକତା, ମାନ୍ଦ୍ରାଜରୁ ଡାକ ଯୋଗେ ମଗାଯାଏ । ତାହା ଜେଲ୍‌ରେ ଥିବା ସହକାରୀ ଜେଲରଙ୍କ ନାମରେ ଆସେ । ସେ ଗୁପ୍ତରେ ଆମକୁ ସାହାଯ୍ୟ କରନ୍ତି ।

ଜେଲ୍ ଭିତରେ ରାଜନୈତିକ କ୍ଲାସ ଚାଲିଲା । ଏହି କ୍ଲାସରେ ଯୋଗ ନଦେବା ପାଇଁ କଂଗ୍ରେସ ନେତାମାନେ ଅନ୍ୟାନ୍ୟ ବନ୍ଦୀମାନଙ୍କୁ ବାରଣ କରୁଥାନ୍ତି । ଦର୍ଶନର ଦାରିଦ୍ର୍ୟ ଓ ଦାରିଦ୍ର୍ୟର ଦର୍ଶନ – ପାଠଟି ପଢାଗଲା, ସେତେବେଳେ ଏହିସବୁ ସୁବିଧାବାଦୀ ରାଜନୀତିଜ୍ଞମାନେ ରାଜନୈତିକ ଭାବେ ଧରାପଡିଗଲେ । ତାଙ୍କ କଥା ଅନ୍ୟମାନେ ଶୁଣିଲେ ନାହିଁ । ଆମ କ୍ଲାସରେ କ୍ରମେ ଆସି ଯୋଗଦେଲେ । ପ୍ରାଣନାଥ ପଟ୍ଟନାୟକ, ରାମକୃଷ୍ଣ ପତି, ବୈଦ୍ୟନାଥ ରଥ, ମନମୋହନ ମିଶ୍ର, ବିଜୟ ଚନ୍ଦ୍ର ଦାସ କ୍ଲାସ ପରିଚାଳନା କରୁଥାନ୍ତି ।

ଗୋବିନ୍ଦ ଚନ୍ଦ୍ର ମହାନ୍ତି ସେତେବେଳେ କଟକ ଜିଲ୍ଲା କଂଗ୍ରେସ କମିଟି ଅଫିସ୍ ସମ୍ପାଦକ ଥିଲେ । ସେ ନବ ଚୌଧୁରୀଙ୍କର ସହ ରାଜନୈତିକ ସମ୍ପର୍କ ଛାଡି କମ୍ୟୁନିଷ୍ଟ ପାର୍ଟିକୁ ସେହିଠାରେ ଆସିଲେ । ହରିହର ଦାସ ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟି ସମ୍ପାଦକ ଥିଲେ । ସେ ମଧ୍ୟ ଆସିଲେ । ସମ୍ବଲପୁର କଂଗ୍ରେସ ଜିଲ୍ଲା କମିଟି ସମ୍ପାଦକ ଥିବଲେ ଦୟାନନ୍ଦ ଶତପଥୀ । ସେ ଆସି ମିଶିଲେ । ଆମେ ପ୍ରଥମେ ୧୬ଜଣ ସେ କ୍ଲାସରେ ଯୋଗ ଦେଇଥିଲୁ ।



କ୍ରମେ ସଂଖ୍ୟା ବଢି ୨୬ ହେଲା । ସେହିଠାରେ ବିଭିନ୍ନ ଅଞ୍ଚଳର ପ୍ରାୟ ୪୦/୫୦ ଜଣ କମ୍ୟୁନିଷ୍ଟ ଭାବଧାରାରେ ଆକୃଷ୍ଟ ହୋଇ ଆମ ସାଙ୍ଗେ ଯୋଗଦେଲେ ।

ଏହି ସତ୍ୟାଗ୍ରହବେଳେ ଆମେ ଖୋର୍ଦ୍ଧାର ଜଙ୍କିଆଠାରେ ଗୋଟିଏ କ୍ୟାମ୍ପ କରିଥାଉ । ସେଠାରେ ଆଚାର୍ଯ୍ୟ ହରିହର ଦାସ ଯୋଗ ଦେଇଥିଲେ । ପ୍ରାଣନାଥ ପଟ୍ଟନାୟକ ଖୋର୍ଦ୍ଧାରେ ସତ୍ୟାଗ୍ରହ କରି ଗିରଫ ହେଲେ । ରଘୁନାଥ ପଟ୍ଟନାୟକ ବାଣପୁରଠାରେ ଓ ପରେ ପରେ ମୁଁ ଓ ଲକ୍ଷ୍ମଣ ପଟ୍ଟନାୟକ ପ୍ରଭୃତି ଗିରଫ ହେଲୁ ।

ବ୍ରହ୍ମପୁର ଜେଲ୍‌ରେ ଯେଉଁ କ୍ଲାସ ହୁଏ, ସେଥିରେ ବ୍ୟବହୃତ ବହିପତ୍ର ପୂର୍ଣ୍ଣାନନ୍ଦ ସ୍ୱାଇଁଙ୍କ ପାଖରେ ରହୁଥାଏ । ସେ ଜେଲ୍‌ଖାନାରେ ଆମ ବହିର ଲାଇବ୍ରେରିଆନ୍ ଥିଲେ । ସହବନ୍ଦୀ ଗତିକୃଷ୍ଣ ସ୍ୱାଇଁଙ୍କର ସେ ଭିଣୋଇ ।

ଖାଇବା, ରନ୍ଧାରନ୍ଧି କଥାରେ ଭାରତ ଥାଏ ଗୋକୁଳ ମୋହନ ରାୟଚୁଡ଼ାମଣି, ଗଙ୍ଗାଧର ମିଶ୍ରଙ୍କ ଉପରେ । ଗୋବିନ୍ଦ ପ୍ରଧାନ ମଧ ଭଲ ରାନ୍ଧି ଜାଣନ୍ତି । ସେ ଗଞ୍ଜାମୀ ରନ୍ଧା ପରିବେଷଣ କରନ୍ତି ।

ମୁଁ ୧୯୪୨ ରେ ବିଧିବଦ୍ଧ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହେଲି । ୧୯୪୦ରେ ମୁଁ ଭଗବତୀ ବାବୁଙ୍କୁ ପଚାରିଲି - ଅନ୍ୟମାନେ ତ ପାର୍ଟି ସଭ୍ୟ ହେଲେ, ମୋତେ କାହିଁକି ସଭ୍ୟ କରାଗଲା ନାହିଁ ? ସେ କହିଲେ - "କମ୍ୟୁନିଷ୍ଟ ହେବାକୁ ହେଲେ, ଅନେକ ତ୍ୟାଗ ଓ କଷ୍ଟସହି ଶ୍ରମିକ, ଚାଷୀ, ମୂଲିଆ ଶ୍ରେଣୀରେ ମିଶିବାକୁ ହେବ । ତେଣୁ ସବୁ କାର୍ଯ୍ୟରେ ତ ଯୋଗ ଦେଉଛ - ତା' ସମୟ ଆସିଲେ ପାର୍ଟି ସଭ୍ୟପଦ ମିଳିବ ।" ମୁଁ ଅପେକ୍ଷା କରି ପାର୍ଟିର ସବୁ କାର୍ଯ୍ୟରେ ଯୋଗ ଦେଉଥିଲି । ମୁଁ ଡି-କ୍ଲାସ ହେଲି ବୋଲି ଯେତେବେଳେ ପାର୍ଟିର ସମସ୍ତେ ହୃଦ୍‌ବୋଧ କଲେ ଓ ମୋ କାର୍ଯ୍ୟକଳାପକୁ ଜାଣିଲେ, ସେତେବେଳେ ମୋତେ ପାର୍ଟିର ସଭ୍ୟପଦ ମିଳିଲା ।

ଆମେ ବ୍ରହ୍ମପୁର ଜେଲ୍‌ରେ ଥିବାବେଳେ ଭଗବତୀ ବାବୁଙ୍କ ଦେହାନ୍ତ ଖବର ପାଇଲୁ । ଗଞ୍ଜାମ ଦୁର୍ଭିକ୍ଷ ବେଳେ ଭଗବତୀ ବାବୁ ରିଲିଫ୍ କାର୍ଯ୍ୟ କରୁଥିଲେ । ସେଠାରେ ସେ ହଇଜା ରୋଗରେ ଆକ୍ରାନ୍ତ ହୋଇ କଟକରେ ଦେହାନ୍ତ ହୋଇଗଲା । ଏ ଖବର ଶରତ ପଟ୍ଟନାୟକ ଟେଲିଗ୍ରାମ୍ ଦ୍ୱାରା ବ୍ରହ୍ମପୁର ଜେଲ୍‌କୁ ଜଣାଇଥିଲେ ।

ଜେଲ୍‌ରେ ପ୍ରାଣକୃଷ୍ଣ ପଢିହାରୀଙ୍କ ସଭାପତିତ୍ୱରେ ଶୋକସଭା ଅନୁଷ୍ଠିତ ହେଲା । ସଭାରେ ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ବିଶ୍ୱନାଥ ଦାଶ, ଲିଙ୍ଗରାଜ ମିଶ୍ର, ସଦାଶିବ ତ୍ରିପାଠୀ, ରାଧାକୃଷ୍ଣ ବିଶ୍ୱାସରାୟ, ଗୋବିନ୍ଦ ପ୍ରଧାନ, ବନମାଳୀ ଦାସ ପ୍ରମୁଖ ଦଳମତ ନିର୍ବିଶେଷରେ ଯୋଗଦେଇ ଦଣ୍ଡାୟମାନ ନୀରବତା ପାଳନ କରିଥିଲେ । ଭଗବତୀ ବାବୁଙ୍କର ତ୍ୟାଗ ଓ ଗୁଣ ଗାରିମାର ଆଲୋଚନା କରି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ । ନବଚୌଧୁରୀ ଭେଁ ଭେଁ କାନ୍ଦି ପକାଇ କହିଲେ, "ମୁଁ ନମରି ଭଗବତୀ ମରିଗଲା" ବୋଲି ଆଉ କିଛି କହିପାରିଲେ ନାହିଁ ।

୧୯୪୦ରେ କମ୍ୟୁନିଷ୍ଟ ଷଡଯନ୍ତ୍ର ମାମଲାରେ ଯେଉଁମାନେ ବନ୍ଦୀ ହୋଇଥିଲେ ସେମାନଙ୍କ ବିଚାର କଟକ ଜେଲ୍‌ରେ ହୋଇଥିଲା । ସେମାନେ ୧୯୪୨ ପରେ ଖଲାସ ହେଲେ । ଆଉ ଯେଉଁମାନେ ସବୁ ସତ୍ୟାଗ୍ରହରେ ଗିରଫ ହୋଇଥିଲେ, ସେମାନେ ୧୯୪୩-୪୪ ଆଡକୁ ଖଲାସ ହେଲେ । ଭଗବତୀ ବାବୁଙ୍କ ଦେହାନ୍ତ ସମସ୍ତଙ୍କୁ ଖୁବ୍ ବାଧିଥିଲା । ଜେଲ୍‌ଖାନା ଭିତରୁ କମ୍ୟୁନିଷ୍ଟ ପାର୍ଟିର ଅଭିବୃଦ୍ଧି ଘଟିଥିଲା ।

(ଖୋର୍ଦ୍ଧା ଅଞ୍ଚଳରେ କମ୍ୟୁନିଷ୍ଟ ପାର୍ଟିର ଅଭିବୃଦ୍ଧିରେ ସ୍ୱର୍ଗତଃ କୁନ୍ଦନ ରାମଙ୍କର ବହୁତ ଅବଦାନ ରହିଛି । ପ୍ରାଣନାଥ ପଟ୍ଟନାୟକ, ଗୋକୁଳମୋହନ ରାୟଚୁଡ଼ାମଣି, ଗଙ୍ଗାଧର ପାଇକରାୟ ପ୍ରମୁଖ ସହକର୍ମୀମାନଙ୍କୁ ବହୁ ଭାବରେ ସେ ସାହାଯ୍ୟ କରି ଆସିଛନ୍ତି । ଚାଷୀ ମୂଲିଆର ବିଭିନ୍ନ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ବହୁବାର କାରାବରଣ କରିଥିଲେ । ବ୍ୟବସାୟୀ ପରିବାରରେ ଜନ୍ମହୋଇଥିଲେ ମଧ, ତାଙ୍କ ନିଜ ଭାଷାରେ ଏପରି ଡି-କ୍ଲାସ୍ ହୋଇଥିଲେ ଯେ, ମୃତ୍ୟୁ ପର୍ଯ୍ୟନ୍ତ ଖଣ୍ଡେ ଗାମୁଛା ପିନ୍ଧିଥାନ୍ତି ଏବଂ ଖଣ୍ଡେ ଗାମୁଛା ଦେହରେ ପକାଇଥାନ୍ତି ।)







# ହେ ବନ୍ଧୁ ବିଦାୟ

- ପଦ୍ମଶ୍ରୀ ସଚ୍ଚିରାଉତରାୟ

ହେ ବନ୍ଧୁ ବିଦାୟ ।
ଶରତର ସିକ୍ତ ମାଟି - ଯାରେ ତୁମେ ଏତେ ଭଲ ପାଅ,
ପଛୁ ତବ ଡାକେ-
"ଯାଅ ନାହିଁ, ଯାଅନାଇଁ, ଅଛି ରାତି, ଛିନ୍ନ ମେଘ ଫାଙ୍କେ-
ଉଇଁନାଇଁ ତରୁଣ ସବିତା,
ମୃତ ପୃଥିବୀର କାନେ ବାଜିନିତ ମୁକ୍ତିର କବିତା ।
ଅଛି ରାତି, ଅଛି କଳାରାତି,
ଯିବାର ବେଳ ଏ ନୁହେଁ, ଶୁଣ ସାଥୀ, କଥା କାନପାତି ।
ଏବେବି ଜନତା ଏଥି ଝରିପଡେ ଦୁର୍ବାସାର ଶାପେ
ଏବେ ବି ମଣିଷ ଏଥି ମରେ ଭୋକେ, ମରେ ଶୋକେ, ତାପେ ।
ଶୋଷଣର ତୀକ୍ଷ୍ଣ ଜିଭ ତାର -
ହରନ୍ତି ଏ ବଳ ବପୁ, କାଢିନିଏ ହାତୁ ହତିଆର ।
ଏତେବେଳେ ନିଏ କିଏ ଛୁଟି ?
ରହ ରହ ଦଣ୍ଡେ ଆଉ, ପ୍ରାଚୀ ନାଭେ ଊଷା ଆସେ ଫୁଟି ।
ଦେଖିଯିବ ଉଦୟ ଉଛବ,
ଯା ଲାଗିତ ପୋଇଛ ରାତି, ଉଜାଗରେ ଗାଇଚ ଯା ସ୍ତବ ।

ତେଣେ ଦେଖ ଜଳୁଛି ପଶ୍ଚିମ,
ରକ୍ତ ସେନା ଗଢେ ତହିଁ ଶୋଷଣର କବର ଅନ୍ତିମ।
ଜାରଜ ସଭ୍ୟତା ମରେ, ଲମ୍ପଟ ସମାଜ ପଡେ ଭାଜି
ମୁକ୍ତିର ମନ୍ଦିରା ଆଜି ଦିଗ ଭାଗେ ଧୀରେ ଉଠେ ବାଜି ।
ହସେ ଏଣେ ପ୍ରାଚୀନ ଏସିଆ,
ଆଉ ଦଣ୍ଡେ ହୁଅ ଠିଆ, ଅଛି ରାଣ, ତରତର କିଆଁ ?
ଏ ତହୁଁ କି ବଳିଅଛି କାମ ?
ଯିବ ଯେବେ ଯାଆ ତେବେ, ଘେନିଯାଅ ମୋ ରକ୍ତ ପ୍ରଣାମ ।
ଉଷାର ଭୂମିକା ଯାଅ ଦେଖି,
ନୂତନ ପ୍ରଭାତ ଆସି ତବ ପଦେ ଆଗ ଯିବ ଲେଖି
ଆପଣା ସ୍ୱାକ୍ଷର;
ବିଦାୟ, ବିଦାୟ ସାଥୀ ଅଗ୍ରଦୂତ ନବ ପ୍ରଭାତର ।

*(ଭଗବତୀଙ୍କ ବିୟୋଗ ପରେ ପ୍ରକାଶିତ ମୁକ୍ତିଯୁଦ୍ଧର ଭଗବତୀ ବିଶେଷାଙ୍କରୁ)*





# ପାଣିଗ୍ରାହୀ

- ଉଦୟନାଥ ଷଡଙ୍ଗୀ

ଭଗବତୀଙ୍କ ସ୍ୱଭାବ ଚରିତ୍ର ଏପରି ମଧୁର ଓ ସରସ ଯେ ତାଙ୍କ ସହିତ ଯେ ଥରେ ମାତ୍ର ପରିଚିତ ହୋଇଛି, ତାହା ସେ ଅନୁଭବ କରିପାରିଛି । ତାଙ୍କର ୧୩/୧୪ ବର୍ଷ ବୟସରେ ସମୟରୁ ୩୪ ବର୍ଷ ବୟସରେ ମୃତ୍ୟୁ ପର୍ଯନ୍ତ ମୁଁ ତାଙ୍କର ଯୋଡିଏ ଗୁଣ ବରାବର ଲକ୍ଷ୍ୟ କରିଆସିଛି । ଏ କୋଡିଏ ବର୍ଷ ମଧ୍ୟରେ ମୁହୂର୍ତ୍ତକ ପାଇଁ ସୁଦ୍ଧା ମୁଁ ତାଙ୍କର ସେ ଗୁଣ ଦୁଇଟିର ଅଭାବ କେବେ ଅନୁଭବି ନାହିଁ । ସେ ଦୁଇଟି ଗୁଣରୁ ଗୋଟିଏ ହେଉଛି ସରସତା ଓ ଅନ୍ୟଟି ହେଉଛି ଦୃଢତା । ଛାତ୍ରାବସ୍ଥାରୁ ଜୀବନଦୀପ ଲିଭିବା ପର୍ଯ୍ୟନ୍ତ କେହି କେବେ ତାଙ୍କ ବଦନ ଶୁଷ୍କ ବା ଚିନ୍ତାପୂର୍ଣ୍ଣ ହୋଇଥିବାର ଦେଖି ନାହିଁ । 'ସୁଖେ ଦୁଃଖେ ସଦା ଧୀର' – ଭଗବତୀ କେବେହେଲେ ବାହାରକୁ ଏପରିକି ତାଙ୍କ ଅନ୍ତରଙ୍ଗ ବନ୍ଧୁମାନଙ୍କୁ ଜଣାଇ ଦେଇନାହାନ୍ତି ଯେ, ତାଙ୍କ ମନରେ କୌଣସି ଦୁଃଖ କଷ୍ଟ ଜାତ ହୋଇଛି । ସ୍କୁଲରେ ପଢିବା ସମୟରେ ବନ୍ଧୁ ବନ୍ଧୁ ମଧ୍ୟରେ କଳହ ହୁଏ, ମାଡ ମରାମତି ହୁଏ, ସେଥିରେ କେତେକ ସମୟ ପାଇଁ ଆମେ ମୁହଁ ଫୁଲାଇ ଦେଉ, କଥାବାର୍ତ୍ତା ବନ୍ଦ କରୁ; ମାତ୍ର ଭଗବତୀଙ୍କର ସେ ସବୁ ଲକ୍ଷଣ କିଛି ହେଲେ ଦେଖା ନ ଥାଏ । ସେ ପ୍ରଥମେ ହସି ହସି ଯେପରି କଳିଗୋଳ, ମାରଧର ଆରମ୍ଭ କରିଥାନ୍ତି ସେହିପରି ହସି ହସି କିଛି ସମୟପରେ ପ୍ରଥମେ ଆସି ମିଳାମିଶା କରାଇ ନିଅନ୍ତି । ଶିକ୍ଷକଙ୍କ ଗାଳିମାଡରେ ଆମ ମୁହଁ ଶୁଖିଗଲେ ଆମେ କେବଳ ତାଙ୍କର ଉପହାସର ପାତ୍ର ହୋଇଥାଉ +++ କେବଳ ସେହି ସମୟରେ ନୁହେଁ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରୀପାଇ ଗୁଣବତୀ ସ୍ତ୍ରୀ ପାଇ ଯେତେବେଳେ ପ୍ରତ୍ୟେକ ଯୁବକର ଫୁଲିଫାଟି ପଡିବାର କଥା, ସେତେବେଳେ ମଧ୍ୟ ତାଙ୍କର ସେହି ବାଲ୍ୟସ୍ୱଭାବ ସୁଲଭ ଚପଳତା ଯାଇ ନାହିଁ, କି କେବେ ସେ ନିଜକୁ ଗୌରବାନ୍ୱିତ ମନେ କରି ନାହାନ୍ତି । ପାଞ୍ଚଟଙ୍କିଆ ଭଡା ଘରେ ରହି ପଇସାଏ ଦୁଇ ପଇସାର ବରା ଗୁଲୁଗୁଲା ଖାଇ ଦିନ କଟାଇ ଦେଇଥିଲେ ସୁଦ୍ଧା ତାଙ୍କର ରାତିଦିନର ସହଚର ଅନ୍ତରଙ୍ଗ ବନ୍ଧୁମାନେ ମଧ୍ୟ ସେଥିରେ ଦୁଃଖିତ ହେବାର କଦାପି ତାଙ୍କୁ ଦେଖି ନାହାନ୍ତି, ଏପରିକି ନିଜେ ଜେଲଖାନାରେ ଥିଲାବେଳେ ସ୍ତ୍ରୀଙ୍କର ଯକ୍ଷ୍ମାରୋଗ ଖବର ପାଇ ମୁହୂର୍ତ୍ତକ ପାଇଁ ସେ ବିଚଳିତ ହୋଇନଥିଲେ । ଏପରି ଧୈର୍ଯ୍ୟ କେତେଜଣଙ୍କର ଅଛି ? ମୃତ୍ୟୁର ଅବ୍ୟବହିତ ପୂର୍ବରୁ ମଧ୍ୟ ସେ ହସି ହସି ବନ୍ଧୁମାନଙ୍କଠାରୁ ବିଦାୟ ନେଇଛନ୍ତି; ମୃତ୍ୟୁ ତାଙ୍କୁ ଆମଠାରୁ ଛଡାଇ ନେଇଛି, ମାତ୍ର ସେ ହସ ହସ ବଦନ ମଣ୍ଡଳ ଛଡାଇ ନେବାର ଅଧିକାର କାହାରି ନାହିଁ ।

ତାଙ୍କର ଆଉ ଏକ ବିଶେଷ ଗୁଣ ସେ ଯାହା ବୁଝୁଥିଲେ, ସେଥିରେ ଦୃଢତାର ସହିତ ଲାଗି ଯାଉଥିଲେ, କୌଣସି ହୋ ହା କୌଣସି ଆଡମ୍ବର ନ କରି ସେ ଧୀର ନିଷ୍ଠାର ସହିତ ନିଜ ବିବେକ ମୁତାବକ କାର୍ଯ୍ୟ କରିବାକୁ କଦାପି ପଶ୍ଚାତ୍‌ପଦ ହୋଇନାହାନ୍ତି । ପିଲାଦିନୁ ବନ୍ଧୁବାନ୍ଧବଙ୍କ ସହିତ ଯୁକ୍ତିତର୍କରୁ ଆରମ୍ଭ କରି ରାଜନୀତି କ୍ଷେତ୍ରରେ ସବୁବେଳେ ନିଜ ମତର ଦୃଢତା ପ୍ରକାଶ କରି ଆସିଛନ୍ତି, ସେଥିପାଇଁ ଯେତେ ଆପଦ ବିପଦ; ଯେତେ ଦୁଃଖ କଷ୍ଟ ଆସିଛି, ସେ ତାହା ହସି ହସି ଶିରପାତି ଗ୍ରହଣ କରି ନେଇଛନ୍ତି । କଲେଜରେ ପଢିବା ସମୟରେ ସେ ବିଶ୍ୱ ବିଖ୍ୟାତ ଉପନ୍ୟାସ Out Cast ଓଡ଼ିଆରେ ଅନୁବାଦ କରି 'ଉତ୍କଳ ସାହିତ୍ୟ'ରେ ଧାରା ବାହିକ ଭାବରେ ପ୍ରକାଶ କରୁଥିଲେ । କିଛି ଦିନପରେ 'ଅସହଯୋଗୀର ଆତ୍ମ କଥା' ନାମକ ଗୋଟିଏ ଲେଖା ଅସହଯୋଗୀକୁ ବିଦ୍ରୂପ କରି କ୍ରମଶଃ ପ୍ରକାଶିତ ହେବାରୁ ତାଙ୍କ ପ୍ରାଣକୁ ବଡ଼ ବାଧିଥିଲା ଓ ସେ ବିଳମ୍ବ ନ କରି ସାଙ୍ଗେ ସାଙ୍ଗେ ଯାଇ ସମ୍ପାଦକ ବିଶ୍ୱନାଥ କରଙ୍କୁ ନିଜ ଲେଖା ଫେରାଇ ନେବାକୁ କହିଥିଲେ । ବାଗ୍ମୀ ବିଶ୍ୱନାଥ ବାବୁ ସେତେବେଳେ ସାହିତ୍ୟିକ ଯୁବକମାନଙ୍କର ବିଶେଷରେ ପୂଜ୍ୟଥିଲେ ଓ ସାହିତ୍ୟ ସମ୍ବନ୍ଧୀୟ ତାଙ୍କ ଆଦେଶ ସମସ୍ତଙ୍କର ଶିରୋଧାର୍ଯ୍ୟ ବୋଲି ବିବେଚିତ ହେଉଥିଲା । ସେ ଲେଖା ଫେରାଇବାକୁ ବାରମ୍ବାର ମନା କରି ଯେତେ ପ୍ରକାର ଯାହା ବୁଝାଇଲେ ମଧ୍ୟ ଭଗବତୀ ନିଜ କଥାରୁ ତିଳେ ହେଲେ ଟଳି ନଥିଲେ ଓ ଲେଖା ଫେରାଇ ନ ଆଣିବା ପର୍ଯ୍ୟନ୍ତ ସେଠାରୁ ଉଠିଲେ ନାହିଁ । କଲେଜରେ ପଢୁଥିବା ସମୟରେ ଯେତେବେଳେ ପ୍ରତ୍ୟେକ ଛାତ୍ର 'ଉତ୍କଳ ସାହିତ୍ୟ'ରେ ନିଜ ଲେଖା ପ୍ରକାଶିତ ହେବାଟାକୁ ଗୌରବ ଓ ଗର୍ବର ବିଷୟ ମନେ କରୁଥାଏ, ସେତେବେଳେ ଭଗବତୀଙ୍କର ଏ ବ୍ୟବହାର ବୃଦ୍ଧ ବିଶ୍ୱନାଥ ବାବୁଙ୍କୁ ଚମତ୍କୃତ କରି ଦେଇଥିଲା । ସେହି ଦୃଢତା ବଳରେ ହିଁ ଭଗବତୀ ଓଡ଼ିଶାରେ ସବୁଠାରୁ ବିପଜ୍ଜନକ ସମୟରେ କମ୍ୟୁନିଷ୍ଟ ପାର୍ଟି ଗଢି ପାରିଥିଲେ ଓ ନାନା ଝଡ ତୋଫାନ ସମ୍ଭାଳି ନେଇ ଜୟଯୁକ୍ତ ହୋଇଥିଲେ ।

ତାଙ୍କର ଏହି ଦୃଢତା ଓ ସରସତା ବଳରେ ସେ ଜଣେ ନିଖିଳ ଭାରତ ନେତା ରୂପେ ନିକଟ ଭବିଷ୍ୟତରେ ପରିଗଣିତ ହୋଇଥାନ୍ତେ; ମାତ୍ର ଚିର ଅଭିଶପ୍ତ ଓଡ଼ିଶା ଭାଗ୍ୟରେ ତା ସୁହାଇବ କେତେକେ ?

('ମୁକ୍ତିଯୁଦ୍ଧ' ଭଗବତୀ ବିୟୋଗ ସଂଖ୍ୟାରୁ)





# ଶ୍ରଦ୍ଧାଞ୍ଜଳି

(ପ୍ରାଚୀନ ପତ୍ରିକାରୁ ସଂଗୃହୀତ)

- ବାଳକୃଷ୍ଣ କର,

*ସମ୍ପାଦକ ଓଡ଼ିଶା ସାହିତ୍ୟ ପରିଷଦ*

କାଲି ଯେ ମର ଜଗତର ଗୋଟିଏ କ୍ଷୁଦ୍ର ପ୍ରାଣୀ ଥିଲେ, ଆଜି ହୋଇଛନ୍ତି ସେ ଅମରପଥର ମହାଯାତ୍ରୀ; କାଲି ଯେ ଆମ୍ଭମାନଙ୍କର ସୁଖ ଦୁଃଖର ବନ୍ଧୁ ଥିଲେ, ଆଜି ହୋଇଛନ୍ତି ସେ ଇତିହାସର ବସ୍ତୁ । ବନ୍ଧୁର ବନ୍ଧୁ ବିୟୋଗରେ ଶୋକ କରିବାର ଦିନ ସରିଆସିଲା, ଏବେ ଆସି ପହଞ୍ଚିଲା ତାଙ୍କୁ ଭଲ କରି ଚିହ୍ନି ଅନ୍ୟକୁ ଚିହ୍ନାଇବାର ଦିନ । ଯେ ପ୍ରକୃତରେ ବଡ଼, ସେ ମରେ ନା ମରି ପାରେନା । ସମାଜ ପାଇଁ ଯାହାର ଜୀବନ ଉତ୍ସୃଷ୍ଟ ହୋଇଥାଏ ତାହାର ଦେହ ଚାଲିଗଲାପରେ, ତାହାର ନୈତିକ ଶକ୍ତି ଜୀଇ ରହି ସମାଜ ସହିତ ତାର ଚିରବନ୍ଧନ ଦୃଢ଼ କରେ । ଭଗବତୀଚରଣଙ୍କର ବିୟୋଗ ଯେତେ ଆକସ୍ମିକ ବା ଅସମ୍ଭାବିତ ହେଉନା କାହିଁକି, ତାଙ୍କର ବ୍ୟକ୍ତିତ୍ୱର ବଳିଷ୍ଠତା ଏ ସମାଜରେ ତାଙ୍କୁ ନିଶ୍ଚୟ ଅମର କରି ରଖିବ । ଇତିହାସର ଜ୍ୱଳନ୍ତ ଅଗ୍ନୀରେ ସବୁଭେଲ ଭସ୍ମ ହୋଇଯିବ, ସୁନାର ତେଜ ଆହୁରି ଝଟକିବ । ଭଗବତୀ ଚରଣଙ୍କ ଦେହ ପୋଡି ପାଉଁଶ ହୋଇଗଲା ପରେ ହିଁ ତାଙ୍କ ପ୍ରକୃତ ସ୍ୱରୂପ ଦେଖାଦେଇଛି । ତାଙ୍କ ଚିତାନଳରୁ ତାଙ୍କ ତ୍ୟାଗ ପୂତ ଜୀବନର ଯେଉଁ ଧୂପଗନ୍ଧ ଉଠିଛି ତାହା ଏ ଦେଶର ବାୟୁମଣ୍ଡଳକୁ ବିଶୁଦ୍ଧ କରିବ, ତାଙ୍କରି ଆତ୍ମୋତ୍ସର୍ଗର ଉଦାହରଣରେ ଦେଶବାସୀ ଉଦ୍‌ବୁଧ ହେବେ - ଏହି ଆଶାରେ ତାଙ୍କର ଜଣେ ନଗଣ୍ୟ ଦେଶବାସୀର ଏହି ଶ୍ରଦ୍ଧାଞ୍ଜଳି ।



# ଭିନ୍ନ ଏକ ଜୀବନ

- ସୁଷମା ପାଣିଗ୍ରାହୀ

ସଂସାର ରୂପୀ ସିନ୍ଧୁରେ ମଣିଷ ଗୋଟିଏ ଚଳଚ୍ଚିତ୍ର ପରି କେତେ ଆସେ କେତେ ଯାଏ । କିନ୍ତୁ ଏପରି ଏକ ଜୀବନ ଥାଏ, ତାହା ସମସ୍ତଙ୍କଠାରୁ ଭିନ୍ନ ଓ ସ୍ୱତନ୍ତ୍ର । ସେହି ଜୀବନକୁ କାଳ ଗ୍ରାସ କରିପାରେ ନାହିଁ । ଇତିହାସ ସ୍ୱର୍ଣ୍ଣାକ୍ଷରରେ ତାହାକୁ ଲିପିବଦ୍ଧ କରି ରଖେ । ସେ ଜୀବନ ଉତ୍ସର୍ଗୀକୃତ । ତାହା କଦାପି ବ୍ୟର୍ଥ ଯାଏ ନାହିଁ । ପର ପାଇଁ ଦେଶ ପାଇଁ ହୁଏତ ସଂଗ୍ରାମ କରୁକରୁ ଚିର ବିଦାୟ ନେବାକୁ ପଡେ ସେଇ ଜୀବନକୁ । କିନ୍ତୁ ମୃତ୍ୟୁ ସେମାନଙ୍କ ପାଖରେ ହାର ମାନେ । ମରି ମଧ୍ୟ ସେମାନେ ଅମର । ସେହିପରି ଏକ ଜୀବନ ଥିଲା, ମହାନ୍ ବିପ୍ଳବୀ ଭଗବତୀ ଚରଣ ପାଣିଗ୍ରାହୀଙ୍କର ।

ଆଜି ସେ ନାହାନ୍ତି । ୧୯୪୩ ଅକ୍ଟୋବର ୨୩ ତାରିଖ ଦିନ ସେହି ଅମର ଆତ୍ମା ମାତ୍ର ୩୫ ବର୍ଷ ବୟସରେ ଇହଧାମ ତ୍ୟାଗ କରି ସେଇ ଅମର ଧାମକୁ ଚାଲିଗଲା । ଏଇ ବୟସରେ ଜଣେ ମଣିଷ କେତେ ଯେ କ'ଣ କରିଗଲେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଏ ପୃଥିବୀରେ ଯେତେ ମହାପୁରୁଷ ଜନ୍ମଗ୍ରହଣ କରିଛନ୍ତି, ସମସ୍ତେ ନିଜର କର୍ତ୍ତବ୍ୟ ଶେଷ କରି ସେଇ ସୀମିତ ଜୀବନ ମଧ୍ୟରେ ଅମର ହୋଇଯାଇଛନ୍ତି । ଏଭଳି ଜୀବନ ଯେ ଅତିବାହିତ କରନ୍ତି, ସେମାନଙ୍କର ପାରିବାରିକ ଜୀବନ ସାଧାରଣ ଲୋକଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥାଏ । ଜୀବନ ଯମୁନାର ସ୍ରୋତରେ ଭାସିଗଲା ବେଳେ, ସେମାନେ ନିଜ ବିଷୟରେ ସବୁ ଭୁଲିଯାଆନ୍ତି ।

ସେତେବେଳେ ପୁରୀ ଜିଲ୍ଲା ଭୁବନେଶ୍ୱର ନିକଟସ୍ଥ ବାଲକାଟି ନିକଟରେ ଏକ ଛୋଟିଆ ଗ୍ରାମ ବିଶ୍ୱନାଥପୁରଠାରେ ଏକ ଉଚ୍ଚ-ମଧ୍ୟବିତ୍ତ ପରିବାରରେ ଭଗବତୀଙ୍କର ଜନ୍ମ । ପିତା ସ୍ୱପ୍ନେଶ୍ୱର ପାଣିଗ୍ରାହୀ ପୁରୀରେ ମୁକ୍ତ୍ୟାରୀ କରୁଥିଲେ । ଦୁଇ ବଡ଼ ଭାଇ ଦିବ୍ୟସିଂହ ଓ କାଳିନ୍ଦୀ ଚରଣଙ୍କ ସହ ଆହୁରି ତିନୋଟି ବଡ଼ ଭଉଣୀଙ୍କୁ ନେଇ ବଡ଼ପରିବାର । ଗ୍ରାମ ପ୍ରାଥମିକ ବିଦ୍ୟାଳୟରେ ବାଲ୍ୟଶିକ୍ଷା ସମାପ୍ତ ପରେ ସ୍ନେହମୟୀ ମାଆଙ୍କର ଇଚ୍ଛା ପୂରଣ ଲାଗି ସହରରେ ଉଚ୍ଚ ଶିକ୍ଷା ପାଇବାକୁ ସେ ପୁରୀ ଆସିଲେ । ସାକ୍ଷୀଗୋପାଳଠାରେ ଉତ୍କଳମଣି ଗୋପବନ୍ଧୁ, ଆଚାର୍ଯ୍ୟ ହରିହର, ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶଙ୍କ ଦ୍ୱାରା ପ୍ରତିଷ୍ଠିତ ଜାତୀୟ ବନ ବିଦ୍ୟାଳୟରେ ଭଗବତୀଙ୍କ ନାମ ଲେଖାଇବା ପାଇଁ ପିତା ସ୍ୱପ୍ନେଶ୍ୱର ସ୍ଥିର କରିଥିଲେ । ସେଇ ଅନୁସାରେ ଉକ୍ତ ବିଦ୍ୟାଳୟରେ ପଢ଼ିବା ସମୟରେ ସେ ଓଡ଼ିଶାର ବହୁ ପ୍ରତିଭାବାନ୍, ବୁଦ୍ଧିମାନ୍, ଛାତ୍ରମାନଙ୍କ ସଙ୍ଗଲାଭ କରିବା ସଂଗେ ସଂଗେ ସମସ୍ତଙ୍କର ପ୍ରିୟଭାଜନ ହୋଇଥିଲେ । ସତ୍ୟବାଦୀ ଉଚ୍ଚ ବିଦ୍ୟାଳୟରେ ଚରିତ୍ର ଗଠନ ସହ ପରାଧୀନ ଭାରତର ଶୃଙ୍ଖଳ ଛିନ୍ନ କରି ସ୍ୱାଧୀନତା ଆଣିବା ପାଇଁ ଏକ ତାଲିମ୍ କ୍ଷେତ୍ର ଥିଲା । ଏହିଠାରୁ ହିଁ ଭଗବତୀ ସଂଗ୍ରାମୀ ଜୀବନକୁ ଆପଣେଇ ନେଇ ଦେଶକୁ ସ୍ୱାଧୀନ କରିବାକୁ ପଣ କରିଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ସେହି ସ୍ୱାଧୀନତା ସଂଗ୍ରାମ ତାଙ୍କ ପାଇଁ ଏକ ଭିନ୍ନ ମୋଡ ନେଇଥିଲା । ଦରିଦ୍ର, ନିଷ୍ପେସିତ, ଚାଷୀ ମୂଲିଆର ଦେଶ ସାମ୍ୟବାଦୀଚେତନାର ପରିକଳ୍ପନା ସେଇ ବାଲ୍ୟ ଅବସ୍ଥାରୁ ଭଗବତୀଙ୍କ ମନରେ ଦୃଢ ଭାବରେ ବସା ବାନ୍ଧିଥିଲା । ଏହି ସମୟରେ ଆପଣାର ସହପାଠୀମାନେ ପରେ କେହି ହୁଏତ୍ ରାଜନୀତି ଓ କେହି କେହି ଆଇନଜ୍ଞ ହିସାବରେ ଓଡ଼ିଶାରେ ପ୍ରତିଷ୍ଠା ଲାଭ କରିଥିଲେ ।

ପୁରୀ ଜିଲ୍ଲା ସ୍କୁଲରେ ଛାତ୍ର ଥିଲାବେଳେ ଭଗବତୀଙ୍କର ଅନେକ ସହପାଠୀ ଜାତୀୟ ମୁକ୍ତି ସଂଗ୍ରାମରେ ଅଂଶଗ୍ରହଣ କରିଥିଲେ । ସ୍କୁଲ ପାଠ ସାରି ଓଡ଼ିଶାର ଏକମାତ୍ର କଲେଜ କଟକର ରେଭେନ୍ସା । ମହାବିଦ୍ୟାଳୟରେ ଏଣ୍ଟ୍ରାନ୍ସ ଶ୍ରେଣୀରେ ନାମ ଲେଖାଇଥିଲେ । ସେତେବେଳେ ତାଙ୍କର ଘନିଷ୍ଠ ସାଥୀ ମାୟାଧର ମାନସିଂହ, ଦୀନବନ୍ଧୁ ସାହୁ, ଡକ୍ଟର ସଦାଶିବ ମିଶ୍ର ଓ ରତ୍ନାକର ପତି ଓଡ଼ିଶାର ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକଳାପରେ ସମସ୍ତେ ଅଂଶଗ୍ରହଣ କରିଥିଲେ । ନବଯୁଗ ସାହିତ୍ୟ ସଂସଦର ଆରମ୍ଭ ଏହିସମୟରେ କଟକରୁ ବି.ଏ. ପାସ୍ କଲାପରେ ପାଟନା ବିଶ୍ୱବିଦ୍ୟାଳୟଠାରେ ତାଙ୍କର ସ୍ନାତକୋତ୍ତର ଶ୍ରେଣୀରେ ଅର୍ଥଶାସ୍ତ୍ର ନେଇ ପଢିବାର ସ୍ଥିର ହେଲା । ଏହି ସମୟ ପୂର୍ବରୁ ତାଙ୍କର ବିବାହ ପଣ୍ଡିତ ଲୋକନାଥ ଶାସ୍ତ୍ରୀଙ୍କ କନ୍ୟା ସରସ୍ୱତୀ ଦେବୀଙ୍କ ସହିତ ସମ୍ପନ୍ନ ହୋଇଥିଲା ଶାସ୍ତ୍ରୀଜୀ ପୁରୀ ଜିଲ୍ଲା ବୀର ନରସିଂହପୁର ନିବାସୀ ହେଲେ ମଧ୍ୟ ମଧ୍ୟପ୍ରଦେଶର ଜବଲପୁରସ୍ଥ ଗାୟତ୍ରୀ ସଂସ୍କୃତ ବିଦ୍ୟାଳୟରେ ଅଧ୍ୟକ୍ଷତା କରୁଥିଲେ । ବିବାହ ପରେ ୯ ବର୍ଷର ଝିଅ ସରସ୍ୱତୀ ପିତାଙ୍କ ସହିତ ଜବଲପୁର ଚାଲିଯାଇଥିଲେ । ସେହିଠାରେ ଉଚ୍ଚଶିକ୍ଷା ହାସଲ କରିବା ନିମିତ୍ତ ସ୍ୱାମୀ ଭଗବତୀଙ୍କର





ଇଚ୍ଛା ଓ ଶଶୁର ସ୍ୱପ୍ନେଶ୍ୱରଙ୍କର ଅନୁମତି ନେଇ ସରସ୍ୱତୀ ଜବଲପୁରଠାରେ ଇଂରେଜି ମାଧ୍ୟମରେ ମିଶ୍ନାରୀମାନଙ୍କ ଦ୍ୱାରା ପରିଚାଳିତ ଏକ ବାଳିକା ସ୍କୁଲରେ କୃତିତ୍ୱର ସହ ମାଟ୍ରିକ ପାସ୍ କରିଥିଲେ । ସେହିବର୍ଷ ଭଗବତୀଙ୍କର ଏମ୍.ଏ.ରେ ଶେଷ ବର୍ଷ । ଓଡ଼ିଶା ଫେରିଆସି ଆଇନ୍ ଡିଗ୍ରୀ ହାସଲ କରି ସେ ଆଇନ୍ ବ୍ୟବସାୟ କରିବେ ବୋଲି ପରିବାରର ଗୁରୁଜନମାନଙ୍କର ଇଚ୍ଛା ଥିଲା । ଭଗବତୀଙ୍କ ଜୀବନ ଥିଲା ଭିନ୍ନ ଉପାଦାନରେ ଗଢା । ତେଣୁ ସେ ଓଡ଼ିଶା ଫେରିଆସିଲେ । ସେତେବେଳେ ବଡ଼ ଭାଇନାଙ୍କ ପରିବାର ବାରିପଦାରେ ରହୁଥିଲେ । ସେହିଠାରେ ପତ୍ନୀ ସରସ୍ୱତୀ ଦେବୀ ଓ ଅନ୍ୟମାନେ ସମସ୍ତେ ବାସ କରୁଥିଲେ ମଧ୍ୟ ଭଗବତୀଙ୍କର ଘର ସଂସାରରେ ମନ ଲାଗୁନଥିଲା । ଦେଶର ଅଗଣିତ ଦରିଦ୍ର, ଭୋକୀ, ଶୋଷି ଓ ଗରିବ ଜନସାଧାରଣଙ୍କ ଦୁଃଖ କିପରି ଦୂର ହେବ ସେ ବିଷୟରେ ସେ ଅହରହ ଚିନ୍ତା କରୁଥିଲେ । ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନର ଡାକରାରେ ଯେତେବେଳେ ଭାରତବର୍ଷ ଅଗଣିତ ଯୁବକ ଝାସ ଦେଉଥିଲେ ସେହି ସମୟରେ ଭଗବତୀ ଚିନ୍ତା କରୁଥିଲେ । ଦେଶର ତିନିଭାଗ ଲୋକଙ୍କ କଥା ଯେଉଁମାନେ ବେଠି, ବେଗାରି, ବେକାରୀରେ ଅହରହ ଜୀବନ ସଂଗ୍ରାମରେ ସନ୍ତାପିତ ହେଉଥିଲେ । ସେ ଭାବୁଥିଲେ ଦେଶରେ ଅହିଂସା ସଂଗ୍ରାମ ହୁଏତ ରାଜନୀତି ସ୍ତରରେ ସ୍ୱାଧୀନତା ଆଣିଦେଇପାରେ । କିନ୍ତୁ ଦେଶରେ ସର୍ବନିମ୍ନ ସ୍ତରରେ ଦୁଃଖୀ ମଣିଷଟିଏ ଆଖିରେ ଲୁହ କ'ଣ ପୋଛି ହେବ ? ଏଣୁ ସକ୍ରିୟ ସଂଗ୍ରାମ ଆବଶ୍ୟକ । ଯେପରି ସୁବାଷ ବୋଷଙ୍କ ଆହ୍ୱାନ "ମୋତେ ରକ୍ତ ଦିଅ, ମୁଁ ତୁମକୁ ସ୍ୱାଧୀନତା ଦେବୀ" ସେହିପରି ଭଗବତୀ ବାବୁଙ୍କର ଆହ୍ୱାନ ଥିଲା "ବାଡି ଭାଙ୍ଗିଯାଉ ପଛେ ସାପଟା ମରିଯାଉ" । ବାହାରର ବିଦେଶୀ ସରକାର ଦେଶର ଜମିଦାର, ଠିକାଦାର, ସାହୁକାରମାନଙ୍କର ଶୋଷଣ ଦାଉରୁ ଗରିବ, ଖଟିଖିଆ, ବୁଭୁକ୍ଷୁ ଜନତାର ନିସ୍ତାର ନାହିଁ । ତେଣୁ ରକ୍ତାକ୍ତ ସଂଗ୍ରାମ ଆବଶ୍ୟକ । ସେ ବିଶ୍ୱା କରୁଥିଲେ ରକ୍ତାକ୍ତ ବିପ୍ଳବ ସାଧାରଣ ମଣିଷ ମନରେ ଏକ ବିରାଟ ପରିବର୍ତ୍ତନ ସହ ବାହ୍ୟ ଆଚରଣରେ ପରିବର୍ତ୍ତନ ମଧ୍ୟ କରିପାରିବ । ଗଛ ମୂଳରେ ପାଣି ନଦେଇ ଡାଳପତ୍ରରେ ଛିଞ୍ଚିଲା ପରି ଏ ସଂଗ୍ରାମ ବା ଆନ୍ଦୋଳନ ମୁଷ୍ଟିମେୟ ସୁବିଧାବାଦୀ ମଣିଷ ବା ଦଳର ଉପକାର କରିବ ସିନା ସାରା ଦେଶର ଗରିବ ଲୋକଙ୍କର ପ୍ରକୃତି ଉପକାର କରିବାରେ ଅସମର୍ଥ ହେବ । ଫଳରେ ଦରିଦ୍ର ଲୋକେ ସେମିତି ଦାରିଦ୍ର୍ୟରେ କଷାଘାତରେ ଜର୍ଜରିତ ହେଉଥିବେ ଖଟିଖିଆ ଶ୍ରମିକର ଅବସ୍ଥାରେ କିଛି ପରିବର୍ତ୍ତନ ହେବ ନାହିଁ । ବାସ୍ତବରେ ସ୍ୱାଧୀନତା ପୂର୍ବରୁ ସାମାଜିକ ଅବସ୍ଥା ଓ ସର୍ବନିମ୍ନ ସ୍ତରରେ ଥିବା ମଣିଷ ଆଜି ସୁଦ୍ଧା ରହିଛି । ଆଦିବାସୀ ଅନୁନ୍ନତ ଅଞ୍ଚଳ ଓ ଜିଲ୍ଲାବାସୀ ଲୋକଙ୍କର ଦାରିଦ୍ର୍ୟ ଘୁଞ୍ଚିବ କ'ଣ ପୂର୍ବଠାରୁ ଆହୁରି ଦୟନୀୟ, ଆହୁରି ଶୋଚନୀୟ ହୋଇପଡିଛି । ଆଜି ଭଗବତୀ ପରି ସେମିତି ନବ ଯୁବକଗଣ ପ୍ରତିଜ୍ଞାବଦ୍ଧ ହୋଇ ସାମ୍ପ୍ରତିକ ସାମାଜିକ ବ୍ୟବସ୍ଥାକୁ ଭାଙ୍ଗି ଦେଇ ରକ୍ତାକ୍ତ ବିପ୍ଳବ କରିବାକୁ ସମସ୍ତେ ଅନୁଭବ କଲେଣି ।

ଏ ସମସ୍ତ ମହାଜାତୀୟତାଭାବନାରେ ଉଦ୍‌ବୁଦ୍ଧ ଯୁବକମାନଙ୍କୁ ସଂଗଠିତ କରି କମ୍ୟୁନିଷ୍ଟ ପାର୍ଟି ପରି ଏକ ଆନ୍ତର୍ଜାତିକ ଦୃଢ ପାର୍ଟି ଗଠନରେ ଲାଗି ପଡିଥିଲେ ଭଗବତୀ ବାବୁ । ସେଥିରେ ସେ ନିଜର ପରିବାର, ଘର-ସଂସାର, ସ୍ତ୍ରୀ-ପିଲାଙ୍କ କଥା ଚିନ୍ତା କରିବାକୁ ସମୟ ପାଉ ନଥିଲେ । ଘରେ ତାଙ୍କୁ ଟିକିଏ ଦେଖିବା ପାଇଁ ମଧ୍ୟ କେହି ପାଉ ନଥିଲେ । ଆଉ ସୁଖ-ଦୁଃଖ ବୁଝିବା ପାଇଁ ବା ତାଙ୍କର ସମୟ କାହିଁ ? ମମତାମୟୀ ଜନନୀ ଥରେ ଥରେ ବ୍ୟସ୍ତ ହୋଇ ତାଙ୍କୁ ପଚାରି ଦିଅନ୍ତି 'ଦୁଇ ଦୁଇ ଝିଅ ଜନ୍ମ ହେଲେଣି, ତୁ ସେମାନଙ୍କ ଭବିଷ୍ୟତ କଥା ଥରେ ବି ଚିନ୍ତା କରୁନୁ ?' ହସି ହସି ଭଗବତୀ ଉତ୍ତର ଦିଅନ୍ତି, 'ମାଠିଆ ମୁହଁଟା ବନ୍ଦ ହୋଇଗଲେ ବଳେ ବଳେ ଛୋଟ ଜଳାଗୁଡ଼ିକ ବନ୍ଦ ହୋଇଯିବ' । ମୁଁ ଦେଶର ଅସଂଖ୍ୟ ନିରୀହ, ନିଃସହାୟ ପରିବାର ଓ ଝିଅଙ୍କ କଥା ବୁଝୁଛି - ଏଣୁ ମୋ ଝିଅମାନଙ୍କ କଥା ଦେଶବାସୀ ବୁଝିବେ ।" ଏଭଳି ଚିନ୍ତାଧାରାର ରାଜନୀତି କରୁଥିବା ବ୍ୟକ୍ତି ଆଜିକାଲି ଦେଖିବାକୁ ମିଳୁଛି କି ?

ଦିନ କ'ଣ ରାତି କ'ଣ ସେଇ ବୁଭୁକ୍ଷୁ ଜନତାର ସେବାରେ କଟି ଯାଉଥିଲା ଭଗବତୀଙ୍କର ଦିନ । ଆନ୍ଦୋଳନର ଗତି, ତୀବ୍ରତର କରି ନଗର, ଗ୍ରାମ, ଗିରିକନ୍ଦର ସବୁଠାରେ କିପରି ପହଞ୍ଚାଇ ଦେବାକୁ ପଡ଼ିବ, ସେଥିପାଇଁ ତାଙ୍କର ଥିଲା ଅକ୍ଳାନ୍ତ ପରିଶ୍ରମ । ବ୍ରିଟିଶ ସରକାରର ରକ୍ତ ଚକ୍ଷୁରେ ପଡିଲେ ସେ । ବାରମ୍ବାର ସରକାର ବିରୋଧୀ କାର୍ଯ୍ୟକଳାପ, ଆଇନ୍ ଅମାନ୍ୟ ଓ ଦେଶବାସୀଙ୍କ ହିତ ପାଇଁ ସର୍ବସ୍ୱ ତ୍ୟାଗ କରି ସରକାର ବିରୋଧୀ କାର୍ଯ୍ୟପାଇଁ ତାଙ୍କୁ କାରାବରଣ କରିବାକୁ ପଡ଼ିଲା । ସାଙ୍ଗରେ ଘନିଷ୍ଠ ବିପ୍ଳବୀ ସାଥୀଗଣ ଥିଲେ, ଅନନ୍ତ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ରାମକୃଷ୍ଣ ପତି, ଗଙ୍ଗାଧର ରଥ, ପ୍ରାଣନାଥ ପଟ୍ଟନାୟକ ଓ ଗଙ୍ଗାଧର ପାଇକରାୟ ତଥା ଅନ୍ୟାନ୍ୟ ବହୁ କମ୍ରେଡ । ସର୍ବଭାରତୀୟ ସ୍ତରରେ ତ୍ରିପୁରାଠାରେ କଂଗ୍ରେସ ଅଧିବେଶନରେ



ଯୋଗ ଦେବାକୁ ସେ ମଧ୍ୟପ୍ରଦେଶ ଯାଇଥିଲେ । ଏହାଛଡ଼ା ବମ୍ବେ ଓ କଲିକତା ବୈଠକମାନଙ୍କରେ ବରାବର ଯୋଗ ଦେଇ ଓଡ଼ିଶାର ଅନଗ୍ରସରତାର କାରଣ ଉପସ୍ଥାପନ କରୁଥିଲେ । ଏଣୁ ଘରର ସମ୍ପୂର୍ଣ୍ଣ ଦାୟିତ୍ୱ ସ୍ତ୍ରୀ ସରସ୍ୱତୀଙ୍କ ଉପରେ ନ୍ୟସ୍ତ ଥିଲା । ସେ ମଧ ତାଙ୍କ କାମରେ କଦାପି ବାଧା ଦେବାକୁ ଚାହୁଁନଥିଲେ । କଟକର ରେଭେନ୍ସା ବାଳିକା ବିଦ୍ୟାଳୟର ଶିକ୍ଷକତା କରି ଭରଣ ପୋଷଣ ଦାୟିତ୍ୱ ନିଜ ମୁଣ୍ଡକୁ ନେଇଯାଇଥିଲେ । କିନ୍ତୁ ବ୍ରିଟିଶ୍ ସରକାରଙ୍କ ଅନୁଗତ ବିଦେଶୀ ଶିକ୍ଷାରେ ପ୍ରଭାବିତ ପ୍ରଧାନଶିକ୍ଷୟିତ୍ରୀ ସରସ୍ୱତୀଙ୍କୁ ନିଜ ସ୍ୱାମୀଙ୍କ କାର୍ଯ୍ୟକଳାପକୁ ବନ୍ଦ ନକରି ପାରିଲେ ଚାକିରୀ ଛାଡିବାକୁ ପଡ଼ିବ ବୋଲି ଧମକ ଦିଆଯାଇଥିଲା ।

ଏଥିରେ ଡରିଯିବାର ଯାତ୍ରୀ ନଥିଲେ ସରସ୍ୱତୀ ଦେବୀ । ପଦିଏ କଥାରେ ସରକାରୀ ଚାକିରୀରୁ ସେ ଇସ୍ତଫା ଦେଇ ନିଜ ପିଲାମାନଙ୍କୁ ପାଠ ପଢାଇବା ପାଇଁ ଜଣେ ପ୍ରାଥମିକ ଶିକ୍ଷକଙ୍କୁ ନିଯୁକ୍ତ କରାଇଥିଲେ । ଶିଶୁ କନ୍ୟା ହୁଏତ ପ୍ରଶ୍ନର ଉତ୍ତର ଠିକ୍‌ରେ ଦେଇପାରି ନଥିଲା ବୋଲି ଭଗବତୀ ସେଦିନ ଖୁବ୍ ଦୁଃଖ ପ୍ରକାଶ କରି କହିଥିଲେ – ମୋ ଝିଅ ଖୁବ୍ ପାଠ ପଢି ବଡ଼ ମଣିଷ ହେବ ଭାବିଥିଲି, ସେ କିନ୍ତୁ ଛୋଟିଆ ପ୍ରଶ୍ନଟିର ଉତ୍ତର ଦେଇପାରିଲା ନାହିଁ ?" ସେଇଦିନଠାରୁ ସରସ୍ୱତୀ ଦେବୀ ନିଜେ ପିଲାମାନଙ୍କର ପାଠ ଘରେ ଦେଖିଲେ ।

କଟକରେ ଦୈନନ୍ଦିନ ସମ୍ବାଦପତ୍ର ହିସାବରେ କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର 'ମୁକ୍ତିଯୁଦ୍ଧ' ମୁକ୍ତିଲାଭ କରି ଗରୀବ ଲୋକଙ୍କର ଅବସ୍ଥା ବିଷୟରେ ବରାବର ଲେଖି ଚାଲିଲା । ଏହାର ପ୍ରତିଷ୍ଠାତା ଏବଂ ସମ୍ପାଦକ ଭାବେ ଆଜୀବନ ଭଗବତୀ ବାବୁହିଁ ସମ୍ପନ୍ନ କରିଥିଲେ । ପରେ 'ଆଧୁନିକ' ବୋଲି ଏକ ମାସିକ ପତ୍ରିକା ମଧ ତାଙ୍କର ସମ୍ପାଦନାରେ ବାହାରି ଥିଲା । ଜୀବନର ବହୁ ଝଡ ଝଞ୍ଜା ମଧଦେଇ ଦେଶକୁ ଏକ ଶୋଷଣ – ବିହୀନ ସମାଜ, ଶ୍ରେଣୀ ବିହୀନ ମଣିଷ ଜାତି ଗଢିବା ଥିଲା ତାଙ୍କର ସ୍ୱପ୍ନ । ମାତ୍ର ୧୦/୧୨ ବର୍ଷ କର୍ମକ୍ଳାନ୍ତ ଜୀବନର ଅବସାନ ଘଟିଲା ଗଞ୍ଜାମର ଦୁର୍ଭିକ୍ଷ ପ୍ରପୀଡିତ ଜନତାର ସେବାରେ ନିୟୋଜିତ ସେହି ଅମ୍ଳାନ ପ୍ରତିଭାଙ୍କର ।

୧୯୪୩ ମସିହା ଅକ୍ଟୋବର ୨୩ ତାରିଖ କୁମାର ପୂର୍ଣ୍ଣିମା ଚନ୍ଦ୍ର ସେତେବେଳେ ଅସ୍ତମିତ, ଦଶହରାର ଉତ୍ସବ ମୁଖରିତ ଶାହାନାଇ ସତେ ଅବା କ୍ଳାନ୍ତି – ଭାଇ – ବନ୍ଧୁ, ସାଙ୍ଗ – ସାଥୀ ଓ କମ୍ରେଡ୍‌ମାନଙ୍କ ଦ୍ୱାରା ବେଷ୍ଟିତ ହୋଇ କଟକ ବଡ଼ ଡାକ୍ତରଖାନାର ମେଡିସିନ୍ ୱାର୍ଡରେ ସେଇ ଚିରସଂଗ୍ରାମ ଚିରଚଞ୍ଚଳ ବ୍ୟକ୍ତିତ୍ୱର ଜୀବନ-ପ୍ରଦୀପ ସବୁଦିନ ପାଇଁ ନିର୍ବାପିତ ହୋଇଗଲା । ବୟସ ହୋଇଥିଲା ମାତ୍ର ୩୨/୩୩ ବର୍ଷ ।

ନିଜର ସୁଖ କି ପରିବାରର ସୁଖ ପାଇଁ ସେ ଜୀବନ ଆସିନଥିଲା, କେବଳ ଦୁଃଖ, କଷ୍ଟ ଭୋଗୁଥିବା ଲୋକଙ୍କ ପାଇଁ ତଥା ସମାଜ ସେବାରେ ସେହି ଅମର ଆତ୍ମା ଉତ୍ସର୍ଗୀକୃତ ହୋଇଗଲା । ଝିଅ ହିସାବରେ ମୁଁ ତାଙ୍କର କଅଣ ଗୁଣ ଗାଇବି ? ଦେଶବାସୀ ଏକ ମୁଖରେ ଦିନ ଦିନ ଧରି ସେ ଗୁଣଗାନ କଲେ ବି ମହାଭାରତ କିମ୍ବା ରାମାୟଣ ଗ୍ରନ୍ଥଠାରୁ ବି ଅଧିକ ହେବ ତାଙ୍କର ପ୍ରିୟ ପରିବାର ପାର୍ଟୀ ସବୁଠାରୁ ପ୍ରାୟ ଝିଆରି ନନ୍ଦିନୀ ଓ ପୁତୁରା ନିହାର ରଂଜନ ପାଣିଗ୍ରାହୀ ଥିଲେ । ମୃତ୍ୟୁ ସମୟରେ ୨୨/୨୩ ବର୍ଷ ବୟସରେ ତରୁଣୀ ସ୍ତ୍ରୀ ନିର୍ବାକ ନିଷ୍ପନ୍ଦ, ଅସୀତି ବର୍ଷର ମାତାଙ୍କର ଚକ୍ଷୁ ଯୁଗଳ ଲୋତକପୂର୍ଣ୍ଣ ପୁଣି ଆଗକୁ ଧାଇଥିଲେ ଉତ୍କଳ ଜନନୀର କୋଳରେ ପୁଣି ଏପରି ଏକ ବୀର ତ୍ୟାଗୀ ପୁତ୍ର କେବେ ଜନ୍ମଲାଭ କରିବ କି ?

ଅତି ସଂକ୍ଷେପରେ ଏତିକି ମାତ୍ର ଏଠାରେ ଉପସ୍ଥାପିତ କରାଗଲା ତାଙ୍କର ସ୍ମୃତି ରକ୍ଷା ପାଇଁ ଆଜି ପର୍ଯ୍ୟନ୍ତ ସଂପୂର୍ଣ୍ଣ ଚେଷ୍ଟା କରାଯାଇନାହିଁ । ତାଙ୍କର ଜୀବନକାଳ ସ୍ୱଳ୍ପ ହେଲେ ମଧ ଏହାକୁ ସମ୍ପୂର୍ଣ୍ଣ ରୂପେ ଦିଆଯାଇ ଗ୍ରନ୍ଥ ରଚନା କରାଯିବାର ପ୍ରଚେଷ୍ଟା କରାଯିବା ଉଚିତ୍ । ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି ଓ ଯେତେ କିଛି ଅପ୍ରକାଶିତ ଗ୍ରନ୍ଥ ସେ କାରଗାରରେ ଲେଖିଥିଲେ ସେ ସମସ୍ତ ସଙ୍କଳିତ ହୋଇ ପ୍ରକାଶ ପାଇବା ଉଚିତ୍ । ଏଥିପାଇଁ ଦେଶ, ଜାତି ଓ ଦଳମତ ନିର୍ବିଶେଷରେ ସମସ୍ତଙ୍କର ପ୍ରଚେଷ୍ଟା ଏକାନ୍ତ ଆବଶ୍ୟକ । କାରଣ ସମସ୍ତ ରାଜନୈତିକ ଚିନ୍ତାଧାରା ଗୋଷ୍ଠୀର ଉର୍ଦ୍ଧ୍ୱରେ ତାଙ୍କର ସ୍ଥାନ । ଏଣୁ ସମସ୍ତେ ଦେଶବାସୀ ଓ ଚିନ୍ତାଶୀଳ ବ୍ୟକ୍ତିଙ୍କର ଏହା ପ୍ରଥମ ଦାୟିତ୍ୱ ଓ କର୍ତ୍ତବ୍ୟ ।

(ୱ ସୁଷମା ପାଣିଗ୍ରାହୀ ଭଗବତୀଙ୍କର ଜ୍ୟେଷ୍ଠାକନ୍ୟା । ଶିକ୍ଷା ବିଭାଗରେ ଶିକ୍ଷାଧିକାରୀ ଭାବେ କାର୍ଯ୍ୟ କରୁଥିଲେ ମଧ, ପିତା ଭଗବତୀଙ୍କର ଆଦର୍ଶ ଅନୁସରି ତାଙ୍କ ପାର୍ଟିରେ ମଧ କାର୍ଯ୍ୟ କରୁଥିଲେ ।)







# ଭଗବତୀ ଚରଣ ପାଣିଗ୍ରାହୀ ଓ କମ୍ୟୁନିଷ୍ଟ ଷଡଯନ୍ତ୍ର ମକଦ୍ଦମା

– ନ୍ୟାୟମୂର୍ତ୍ତୀ ଶ୍ରୀ ରାଜକିଶୋର ଦାସ

ସ୍ୱର୍ଗତ ଭଗବତୀ ଚରଣ ପାଣିଗ୍ରାହୀଙ୍କ ଘର ଆମ ଗାଁ ବାଗଲପୁର ପାଖ ବିଶ୍ୱନାଥପୁରରେ । ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଶ୍ରୀଯୁକ୍ତ କାଳିନ୍ଦୀ ଚରଣ ପାଣିଗ୍ରାହୀ ତାଙ୍କ ସହୋଦର । ଭୁବନେଶ୍ୱର ଦେଇ କଟକ ଆସିବାବେଳେ ତାଙ୍କ ଗାଁ ପାଖରେ ଭଗବତୀଙ୍କ ସହିତ ମୋର ପ୍ରଥମ ସାକ୍ଷାତ ହୋଇଥିଲା । ସେଦିନ ସେ ମଧ କଟକ ଆସୁଥାନ୍ତି । ଭୁବନେଶ୍ୱରରେ ପହଞ୍ଚି ସେଠାରୁ ରେଲ୍ ଯୋଗେ ଆମେ ସାଙ୍ଗ ହୋଇ କଟକରେ ଆସି ପହଞ୍ଚିଲୁ । ସେତେବେଳେ ଭୁବନେଶ୍ୱରରୁ କଟକ ଆସିବା ରେଳଭଡା ଥିଲା ତୃତୀୟ ଶ୍ରେଣୀରେ ଅଠର ପଇସା (ଏବକାର ପ୍ରାୟ ତିରିଶ ପଇସା) । ଭୁବନେଶ୍ୱର ଷ୍ଟେସନ୍‌ରେ ଗୋଟିଏ ଜଳଖିଆ ଦୋକାନରେ ଆମେ ଦୁଇଅଣା (ବର୍ତ୍ତମାନ ବାର ପଇସା) ର ଜଳଖିଆ ଖାଇଲୁ । ଚାରି ପଇସାରେ ଚାରୋଟି କାକରା ବା ରୋଟି ତରକାରୀ ବେଶ୍ ପେଟପୁରା ଭୋଜନ । ବାସ୍ତବିକ, ସେ ସମୟ ସହିତ ବର୍ତ୍ତମାନର ଦରଦାମ୍‌ର ତୁଳନା କଲେ, ବିସ୍ମିତ ହେବାକୁ ପଡୁଛି ।

ସେଦିନ ପ୍ରଥମ ଦେଖାରେ ମୁଁ ଜାଣିପାରିଥିଲି ଯେ, ଭଗବତୀବାବୁ ଜଣେ ସରଳ ମିଷ୍ଟଭାଷୀ ଲୋକ । ରେଳରେ ବହୁ ସମୟ ଧରି ଆମେ ବିଭିନ୍ନ ବିଷୟ ଆଲୋଚନା କରିଥିଲୁ । ଉଭୟେ ଖଦଡ ପିନ୍ଧିଥିବାରୁ ଆମକୁ କଂଗ୍ରେସ ଦଳର ଲୋକ ବୋଲି ବାହାରକୁ ଜଣାପଡୁଥାଏ ।

କେତେକ ବର୍ଷର ବ୍ୟବଧାନ ପରେ ତାଙ୍କ ସହିତ ମୋର ଯେତେବେଳେ ଦ୍ୱିତୀୟବାର ଦେଖା ହେଲା, ସେତେବେଳକୁ ସେ ଜଣେ ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା ଭାବେ ପରିଚିତ । ଏହି ସାକ୍ଷାତ ପରେ ଆମ ଉଭୟଙ୍କ ମଧରେ ଘନିଷ୍ଠତା ବୃଦ୍ଧି ପାଇଲା ଏବଂ ଶେଷ ପର୍ଯ୍ୟନ୍ତ ଏହା ଅତୁଟ ରହିଥିଲା ।

୧୯୩୦ ମସିହାରେ ସତ୍ୟାଗ୍ରହ ଆନ୍ଦୋଳନ, ଇଂଲଣ୍ଡରେ ଗୋଲ୍‌ଟେବୁଲ୍ ବୈଠକର ନିଷ୍ପତ୍ତି ଭାରତର ନେତୃସ୍ଥାନୀୟ ବ୍ୟକ୍ତି ତଥା ଜନସାଧାରଣଙ୍କ ମନରେ ନୈରାଶ୍ୟଭାବ ସୃଷ୍ଟି କଲା । ଇଂରେଜ ସରକାରଙ୍କ ବିରୁଦ୍ଧରେ କି ପ୍ରକାର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ, ତା' ନେଇ ମତଭେଦ ସୃଷ୍ଟି ହେବାରୁ ୧୯୩୪ରେ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ନେତୃତ୍ୱରେ ସୋସାଲିଷ୍ଟ ପାର୍ଟି ଗଠିତ ହେଲା । ଭଗବତୀବାବୁ କିଛିକାଳ ଏହାର ସମ୍ପାଦକ ଥିଲେ । ଏହି ଦଳର ବହୁ ବ୍ୟକ୍ତି ଓ ଅନେକ କଂଗ୍ରେସ ଲୋକ ଭାରତୀୟ କମ୍ୟୁନିଷ୍ଟ ଦଳ ପ୍ରତି ଆକୃଷ୍ଟ ହୋଇ ଓଡ଼ିଶାରେ ଗୋଟିଏ କମ୍ୟୁନିଷ୍ଟ ଦଳ ଗଠନ କରିଥିଲେ । ଭଗବତୀବାବୁ ଏହି କମ୍ୟୁନିଷ୍ଟ ପାର୍ଟିର ପ୍ରଥମ ସମ୍ପାଦକ ହେଲେ ।

୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଥିଲା । ଭାରତରେ ଇଂରେଜ୍ ସରକାରଙ୍କ ଦମନଲୀଳା ଚାଲିଲା । ବହୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ଗିରଫ୍ କରାଗଲା । ଗଣଆନ୍ଦୋଳନକୁ ଦମନ କରିବାକୁ ଭାରତ ରକ୍ଷା ଆଇନ୍ ଓ ନିୟମ ପ୍ରଣୟନ କରାଯାଇ ବନ୍ଦୀମାନଙ୍କ ବିରୁଦ୍ଧରେ ସଂଖ୍ୟାଧିକ ମୋକଦ୍ଦମା ରୁଜୁ ହେଲା । ବହୁ କଂଗ୍ରେସ ଓ କମ୍ୟୁନିଷ୍ଟ ନେତାମାନଙ୍କୁ ସେଥିରେ ଜଡିତ କରାଗଲା । ସେତେବେଳକୁ ମୋର ଆଇନ୍ ବ୍ୟବସାୟର ପ୍ରାରମ୍ଭିକ ଅବସ୍ଥା । ଭଗବତୀ ମୋତେ କେତେକ ମୋକଦ୍ଦମା ପରିଚାଳନା କରିବାର ଦାୟିତ୍ୱ ଦେଇଥାନ୍ତି । ମୁଁ ସେତେବେଳେ ବିନୋଦବିହାରୀରେ ଥାଏ । ତଳ ଘରଟି ଅଫିସ୍, ଉପର ଘରଟି ବୈଠକଖାନା । ସେଠାରେ ବିଭିନ୍ନ ରାଜନୈତିକ ଗୋଷ୍ଠୀର ବନ୍ଧୁମାନେ ଦେଶର ତଥା ରାଜ୍ୟର ବିଭିନ୍ନ ସମସ୍ୟା ନେଇ ଆଲୋଚନା କରନ୍ତି । ଚା" ପାନ ବି ହୁଏ । ଭଗବତୀ ବାବୁ ବରାବର କହନ୍ତି, "ଆମେ ସବୁ ଉପର ଘରବାଲା ଆସିଲୁ । ଆମେ ପଇସା ଦିଆ ମହକିଲ ନୋହୁ । ଆମ ପାଇଁ ଭୁବନେଶ୍ୱରଠାରେ ଯେଉଁ କାକରା ଖାଇଥିଲେ ସେଇୟା ହେଲେ ଚଳିବ । ବେଶୀ କିଛି ଆୟୋଜନ କରିବେ ନାହିଁ ।" ଏଇ କଥା କହି ସେ ଅନେକ ଥଟ୍ଟା ପରିହାସ ବି କରନ୍ତି । ଏଇଠାରେ ଗୋଟିଏ କଥା ମନେ ପଡେ । ଭଗବତୀ ବାବୁ ଚମତ୍କାର ବଂଶୀ ବଜାଇ ଜାଣିଥିଲେ । ଥରେ ବିନୋଦବିହାରୀରେ ବଂଶୀ ଆଣି ବଜାଇଲେ । ଥଟ୍ଟାରେ କହିଲେ, ଆମେତ ଅଦିଆ ମହକିଲ । ଅର୍ଥନାହିଁ, ଅନର୍ଥ ଅଛି । ମୁଁ କହିଲି, "ଯାହା ମିଳିଲା ।"

ଆଉ ଦିନେ ସେ ଆସି କହିଲେ, "ଅବସ୍ଥା ଦିନକୁ ଦିନ ଜଟିଳ ହୋଇଯାଉଛି । କେତେବେଳେ କାହାକୁ ବାନ୍ଧିନେବେ, କିଛି ଠିକଣା ନାହିଁ । ଆପଣଙ୍କ ଉପରେ ଆମେ ଦିନେ ଆମ ରାଜ୍ୟ



ନ୍ୟସ୍ତକରି ଚାଲିଯିବୁ ।" ମୁଁ କହିଲି, "ଆଜ୍ଞା, ଦେଖିବା ।" ଏହାପରେ କେତେଗୁଡ଼ିଏ ମୋକଦ୍ଦମାର ଦାୟିତ୍ୱ ମୁଁ ନେଇଥିଲି । ସେତେବେଳେ ଏଭଳି କମ୍ୟୁନିଷ୍ଟମାନଙ୍କ ମକଦ୍ଦମା ନେବାକୁ ସମସ୍ତେ ପଛାଉଥାନ୍ତି । ପୋଲିସ୍‌କୁ ଡରୁଥାନ୍ତି ।

"କମ୍ୟୁନିଷ୍ଟ ଷଡଯନ୍ତ୍ର ମୋକଦ୍ଦମା" ସମ୍ପର୍କରେ ଆଲୋଚନା କଲାବେଳେ ମୁଁ ଲେଖିଛି, କିଭଳି ଭାବରେ ଖୋର୍ଦ୍ଧା ଅଞ୍ଚଳରେ କୃଷକ ଆନ୍ଦୋଳନ ସହିତ ଜଡ଼ିତ ଥିବା ପ୍ରାଣନାଥ ପଟ୍ଟନାୟକ, ଗୋକୁଳ ମୋହନ ରାୟ ଚୂଡ଼ାମଣି ଓ ସାଧୁଚରଣ ମହାନ୍ତି ପ୍ରମୁଖଙ୍କ ବିରୁଦ୍ଧରେ ଯେଉଁ ସବୁ ମୋକଦ୍ଦମା ରୁଜୁ ହୋଇଥିଲା, ସେ ସବୁ ମୋକଦ୍ଦମା ପରିଚାଳନା କରିବାକୁ ମତେ ଅନେକଥର ଖୋର୍ଦ୍ଧା ଯିବାକୁ ପଡ଼ିଥିଲା; ଭଗବତୀ ଚରଣ ପାଣିଗ୍ରାହୀ, ଅନନ୍ତ ଚରଣ ପଟ୍ଟନାୟକ, ମନମୋହନ ମିଶ୍ର, ବୈଦ୍ୟନାଥ ରଥ ପ୍ରଭୃତି କମ୍ୟୁନିଷ୍ଟ ଷଡଯନ୍ତ୍ର ମୋକଦ୍ଦମାରେ ମତେ ବହୁଥର ଜେଲ୍ ଭିତରକୁ ଯିବାକୁ ପଡୁଥିଲା । କାରଣ ଜେଲ୍ ଭିତରେ ମକଦ୍ଦମା ବିଚାର ହୁଏ । ଅସ୍ୱାଭାବିକ ପରିସର ମଧ୍ୟରେ । ମୁଖ୍ୟମୁଦ୍ଦାଲା ଭଗବତୀ ଥିଲେ ଜନତାର ପ୍ରକୃତ ନେତା । ତାଙ୍କ ଜୀବନର ମୂଲ୍ୟବାନ ସମୟତକ କଟିଥିଲା କାରାଗାରରେ । ସେ ଥିଲେ ତ୍ୟାଗ ଓ ନିଷ୍ଠାର ପ୍ରତୀକ । ବହୁ ଦୁଃଖ, ନିର୍ଯ୍ୟାତନା ମଧ୍ୟରେ ତାଙ୍କ ମୁହଁରେ ସବୁବେଳେ ହସର ରେଖା ଲାଗି ରହିଥିଲା ।

ବନ୍ଧୁ ଭଗବତୀ ଯେତେବେଳେ ଯାହା କହିଛନ୍ତି, ତା' କରିବାରେ ମୁଁ କେବେ ତ୍ରୁଟି କରିନାହିଁ । ଯେଉଁ ସ୍ୱାଧୀନତା ହାସଲ ଲାଗି ଭଗବତୀ ବାବୁ ଏତେ ଅବିଚାର, ଅତ୍ୟାଚାର ସହ୍ୟ କରିଥିଲେ, ଦେଶର ସେହି ସ୍ୱାଧୀନତା ଆସିବା ପୂର୍ବରୁ ୧୯୪୩ ମସିହା ଅକ୍ଟୋବର ୨୩ ତାରିଖରେ ସେ ଅକାଳରେ ଝରି ପଡ଼ିଥିଲେ ।

## କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମା

ସର୍ବଶ୍ରୀ ଭଗବତୀ ଚରଣ ପାଣିଗ୍ରାହୀ, ଅନନ୍ତ ଚରଣ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ବୈଦ୍ୟନାଥ ରଥ, ବନମାଳୀ ଦାସ, ଦୁର୍ଗାଚରଣ ମହାନ୍ତି, ସିଦ୍ଧେଶ୍ୱର ମହାନ୍ତି ଓ ଗଣେଶ୍ୱର ମହାନ୍ତିଙ୍କ ବିରୁଦ୍ଧରେ ଏକ ଷଡଯନ୍ତ୍ର ମାମଲା ସରକାରଙ୍କ ତରଫରୁ ଦାୟର ହୋଇଥିଲା । ଏହି କନ୍‌ସ୍ପିରେସି କେଶ୍‌ର ମୂଳକଥା ହେଲା - ଭାରତ ସରକାର କମ୍ୟୁନିଷ୍ଟ ପାର୍ଟି ଅଫ୍ ଇଣ୍ଡିଆ ଓ ତା'ର ଶାଖା ଉତ୍କଳ କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ୍ ଦଳ ଭାବେ ଘୋଷଣା କରିଥିଲେ । ଉପରୋକ୍ତ ମୁଦ୍ଦାଲାମାନେ ସେହି ଦଳର ସଦସ୍ୟ ଥିବାରୁ ସେମାନଙ୍କ ବିରୁଦ୍ଧରେ ମକଦ୍ଦମା ଆଗତ କରାଯାଇଥିଲା । କମ୍ୟୁନିଷ୍ଟ ପାର୍ଟିର ମୁଖ୍ୟ କାର୍ଯ୍ୟାଳୟ ସେତେବେଳେ ବମ୍ବେରେ ଥିଲା । ଦେଶ ଭିତରେ ନାନା ପ୍ରକାର ବିଶୃଙ୍ଖଳା ଓ ଗୋଳମାଳ ସୃଷ୍ଟି କରିବା ଏହି ପାର୍ଟିର ମୁଖ୍ୟ ଭୂମିକା ବୋଲି ଅଭିଯୋଗ ହୋଇଥିଲା । ଏହା ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳର ଘଟଣା । କମ୍ୟୁନିଷ୍ଟ ପାର୍ଟି ତରଫରୁ "ଯୁଦ୍ଧ ବିରୁଦ୍ଧରେ ଯୁଦ୍ଧ", "ସର୍ବହରାର ପଥ", "ଫ୍ରାନ୍ସ ପ୍ରତି ବିଶ୍ୱାସଘାତକତା" ଓ "ଆଗେଇ ଚାଲ" ପ୍ରଭୃତି ଅନେକ ସ୍ଲୋଗାନ ଲିଫଲେଟ୍ ଓ ପାମ୍ପଲେଟ୍ ଆକାରରେ ଛାପା ହୋଇ ବଣ୍ଟା ଯାଉଥିଲା । ପ୍ରଚାର ଦ୍ୱାରା କମ୍ୟୁନିଷ୍ଟମାନେ ଲୋକମାନଙ୍କୁ ତାଙ୍କ ଦଳରେ ସାମିଲ୍ ହେବା ପାଇଁ ପ୍ରବର୍ତ୍ତାଉ ଥିଲେ ବୋଲି ଅଭିଯୋଗ ହୋଇଥିଲା । କାଗଜପତ୍ର ସବୁ ବମ୍ବେରୁ ଆସୁଥିଲା ପ୍ରକୃତ ଲୋକଙ୍କ ନାଁରେ ଚିଠି ଆସିଲେ କାଳେ କଥାଟା ଧରା ପଡ଼ିଯିବ, ସେଥିପାଇଁ କେତେକ ବିଶ୍ୱସ୍ତ ଲୋକଙ୍କ ନାଁରେ ଏସବୁ ଆସୁଥିଲା । ଏହି ବ୍ୟକ୍ତିମାନଙ୍କୁ ପୋଷ୍ଟ ବକ୍‌ସ ବୋଲି କୁହାଯାଉଥିଲା । କଟକର ଛତ୍ରବଜାର ଠାରେ "ସାଗର ସୋପ୍ ଫ୍ୟାକ୍ଟରୀ" ବୋଲି ଗୋଟିଏ ସାବୁନ୍ କାରଖାନା ଥିଲା । ତା'ର ସ୍ୱତ୍ୱାଧିକାରୀ ଥିଲେ କୃଷ୍ଣମୋହନ ମହାନ୍ତି । ସେ ମୁଦ୍ଦାଲା ଅନନ୍ତ ଚରଣ ପଟ୍ଟନାୟକ ଓ ଗୁରୁଚରଣ ପଟ୍ଟନାୟକଙ୍କ ଦାଦା । ସିଦ୍ଧେଶ୍ୱର ଓ ଗଣେଶ୍ୱର ଉକ୍ତ ଫ୍ୟାକ୍ଟେରୀର କର୍ମଚାରୀ ଥିଲେ । ଅଭିଯୋଗ ହେଲା ଯେ, ସେ ଫ୍ୟାକ୍ଟରୀ ଜରିଆରେ କମ୍ୟୁନିଷ୍ଟ ପାର୍ଟିର କାଗଜପତ୍ର ସବୁ ଅନନ୍ତ, ଗୁରୁଚରଣ ତଥା ଓଡ଼ିଶାର କମ୍ୟୁନିଷ୍ଟ ଦଳ ନିକଟରେ ପହଞ୍ଚୁଥିଲା ।

ଏହି ଷଡଯନ୍ତ୍ର ମାମଲାଟି ତତ୍‌କାଳୀନ ସି.ଆଇ.ଡି. ଇନସ୍ପେକ୍ଟର ରାୟସାହେବ ମନବୋଧ ପଣ୍ଡା ରୁଜୁ କରିଥିଲେ । ତାଙ୍କ ରିପୋର୍ଟ ଅନୁଯାୟୀ ତା୧୦.୯.୧୯୪୦ରେ ଟାଉନ୍ ଇନସ୍ପେକ୍ଟର ଗଙ୍ଗାଧର ଦ୍ୱିବେଦୀ ପ୍ରାଥମିକ ଏତାଲା ଦେଇଥିଲେ । ପ୍ରାରମ୍ଭିକ ତଦନ୍ତ ପରେ ଉପରୋକ୍ତ ଆଠଜଣ ମୁଦ୍ଦାଲାଙ୍କ ବିରୁଦ୍ଧରେ ମକଦ୍ଦମା ଚାଲିଲା । ଅବଶ୍ୟ ଏପରି ମକଦ୍ଦମା କରିବା ଉପର ହାକିମ ମହଲରେ ଆଗରୁ ସ୍ଥିର ହୋଇଥିଲା । ମକଦ୍ଦମା ପରିଚାଳନା ବନ୍ଦୋବସ୍ତ କରିବା ନିମନ୍ତେ ବିଶିଷ୍ଟ ସମାଜସେବୀ ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ମିଶ୍ର ଓ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ପ୍ରମୁଖ ଗୋଟିଏ କମିଟି ଗଠନ କରିଥିଲେ । ମୋ ଉପରେ ମୁଦ୍ଦାଲାମାନଙ୍କ ତରଫରୁ ମକଦ୍ଦମା ଲଢ଼ିବା ଭାର ମୁଖ୍ୟତଃ ନ୍ୟସ୍ତ କରାଯାଇଥିଲା । ଓଡ଼ିଶାର ପୂର୍ବତନ ଆଇନ୍ ମନ୍ତ୍ରୀ ସ୍ୱର୍ଗତ ଦୀନବନ୍ଧୁ ସାହୁ, ଉଦୀୟମାନ ଆଇନ୍‌ଜୀବୀ ସ୍ୱର୍ଗତ ଚନ୍ଦ୍ରକାନ୍ତ ଘୋଷ ଓ ଆଉ କେତେକ ବନ୍ଧୁ





ମଧ୍ୟ ମୋ ବିନୋଦବିହାରୀ ଘରଠାକୁ ଆସି କାର୍ଯ୍ୟ ସମ୍ପାଦନର ପ୍ରସ୍ତୁତି କରୁଥିଲେ । ଏହା ବ୍ୟତୀତ କଲିକତାର ଜଣେ ବାରିଷ୍ଟର ଶ୍ରୀଯୁକ୍ତ ମୁଖାର୍ଜୀ କିଛି ଦିନ ପାଇଁ ଉକ୍ତ ମକଦ୍ଦମା ପରିଚାଳନା କରିଥିଲେ । ସରକାରଙ୍କ ତରଫରୁ ସରକାରୀ ଓକିଲ ସ୍ୱର୍ଗତ ବାଞ୍ଛାନିଧି ମହାପାତ୍ର ମକଦ୍ଦମା ଚଳାଉଥିଲେ ଓ ତାଙ୍କୁ ସହାୟତା କରୁଥିଲେ ପୋଲିସ୍ ଅଫିସର ସୁଦର୍ଶନ ମହାନ୍ତି ଓ ଅନ୍ୟମାନେ ।

ମୁଦାଲାମାନଙ୍କୁ କୋର୍ଟକୁ ଆଣିଲେ କାଳେ ବହୁ ଲୋକ ଗୁଣ୍ଡ ହୋଇଯିବେ ଓ ଅନେକ କଥା ପ୍ରଚାରିତ ହେବ, ସେଥିଲାଗି ମକଦ୍ଦମାର ବିଚାର କଟକ ଜେଲ୍ ଭିତରେ କରାଯାଇଥିଲା । ବିଚାରପତି ଭାବେ ହରବଂଶ ଲାଲ ଆଇ.ସି.ଏସ୍. ସ୍ୱତନ୍ତ୍ର ଭାବେ ନିଯୁକ୍ତି ପାଇଥିଲେ । ସେ ପାଟନାରେ ପାଠ ପଢୁଥିଲାବେଳେ ଭଗବତୀ ପାଣିଗ୍ରାହୀଙ୍କୁ ଜାଣିଥିଲେ ଓ ତାଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଥିଲା ।

ଏହାକୁ ସେହି ସମୟରେ ଦେଶର ଏକ ବଡ଼ ଧରଣର ଫୌଜଦାରୀ ମକଦ୍ଦମା ବୋଲି କୁହାଯାଇପାରେ । ଏଥିରେ ବହୁସଂଖ୍ୟକ ସାକ୍ଷୀ ଥିଲେ, ପ୍ରମାଣପତ୍ର ଭାବେ ଶହ ଶହ ଦଲୀଲ୍ ଉପସ୍ଥାପିତ କରାଯାଇଥିଲା ଏବଂ ମୁଦାଲାମାନଙ୍କ ବିରୁଦ୍ଧରେ ଅଭିଯୋଗ ମଧ୍ୟ ବହୁମୁଖୀ ଥିଲା । ସାରା ଓଡ଼ିଶାରେ ଏହି ଷଡଯନ୍ତ୍ର ମାମଲା ବେଶ୍ ଚହଳ ସୃଷ୍ଟି କରିଥିଲା । ମୁଦାଲାମାନେ ଭାରତୀୟ ଦଣ୍ଡବିଧି ଆଇନ୍‌ର ୧୨୦ବି, ଭାରତ ରକ୍ଷା ଆଇନ୍ ଓ କ୍ରିମିନାଲ୍ କୋର୍ଟ ସଂଶୋଧନ ଆଇନ୍ ଅନୁସାରେ ସମସ୍ତ ଅଭିଯୋଗକୁ ଅସ୍ୱୀକାର କରିଥିଲେ । ମାଜିଷ୍ଟ୍ରେଟ୍ ମିଷ୍ଟର ଲାଲ୍ ଜଣେ ଯୁବକ ଆଇ.ସି.ଏସ୍. ଏବଂ ମୁଦାଲାମାନଙ୍କ ତରଫରୁ ବାରିଷ୍ଟର ମୁଖାର୍ଜୀ ମଧ୍ୟ ଜଣେ ଯୁବକ ହୋଇଥିବାରୁ ସେ ଦୁଇଜଣଙ୍କ ମଧ୍ୟରେ ବାକ୍‌ଯୁଦ୍ଧ ଅନେକ ସମୟରେ ବେଶ୍ ଉପଭୋଗ୍ୟ ହେଉଥିଲା । ଏହି ବାକ୍‌ଯୁଦ୍ଧ ଭିତରେ "ଝିମିଟି ଖେଳରୁ ମହାଭାରତ" ସୃଷ୍ଟି ହେଲାପରି ମୁଦାଲା ତରଫରୁ ସେ କୋର୍ଟରୁ ମକଦ୍ଦମା ଉଠାଇ ଆଣିବାକୁ ଏକ ଟ୍ରାନ୍ସଫର ପିଟିସନ୍ ଦାଖଲ କରାଗଲା । ସେ ସମୟରେ କ୍ରିମିନାଲ୍ ପ୍ରୋସିଡିୟର କୋର୍ଡର ୫୨୬ ଧାରା ଅନୁସାରେ ସାଙ୍ଗେ ସାଙ୍ଗେ ମକଦ୍ଦମା ବନ୍ଦ ରହିବା କଥା । ମାତ୍ର ସରକାର ଚାହୁଁଥିଲେ ମକଦ୍ଦମାର ବିଚାର ଚଞ୍ଚଳ ଶେଷ ହୋଇଯାଉ । କିନ୍ତୁ ଏହା ଫଳରେ ବିଚାର ବାଧାପ୍ରାପ୍ତ ହେଲା ଏବଂ ମାଜିଷ୍ଟ୍ରେଟ୍ ଶ୍ରୀ ଲାଲ୍ ମଧ୍ୟ ନାନା କାରଣରୁ ଅସୁବିଧାରେ ପଡିଲେ ।

ଦିନେ ବିନୋଦବିହାରୀରେ ମୁଁ ମୋ ଘରେ ବସିଥାଏ । ସମୟ ପ୍ରାୟ ଅପରାହ୍ନ ଚାରିଟା ବେଳେ ହଠାତ୍ ଭଗବତୀ ଆସି ହାଜର । ତାଙ୍କ ସାଙ୍ଗରେ ଆସିଥାନ୍ତି ସରକାରୀ ଓକିଲ ବାଞ୍ଛାନିଧି ମହାପାତ୍ର ଓ କେତେକ ପୋଲିସ୍ ଅଫିସର । ଏମାନଙ୍କୁ ଦେଖିବାକୁ ମୋ ଫାଟକ ପାଖରେ ବହୁତ ଲୋକ ଗୁଣ୍ଡ ହୋଇଥାନ୍ତି । ମୁଁ ପଚାରିଲି, "ଭଗବତୀ, କଥା କ'ଣ ?" ସେ ଉତ୍ତର ଦେଲେ, "ଏ ଦରବାରୀ କାରଖାନାରୁ କ'ଣ କିଛି ବୁଝିପାରୁ ନାହାନ୍ତି ? ସେ ମାଜିଷ୍ଟ୍ରେଟ୍ କହୁଛନ୍ତି, ଏ ଟ୍ରାନ୍ସଫର ପିଟିସନ୍‌କୁ ଉଠାଇ ନିଅ, ନ ହେଲେ ବହୁତ ଡେରି ହେବ ଓ ବିଚାର ପଦ୍ଧତିରେ ବହୁ ଅସୁବିଧା ସୃଷ୍ଟି ହେବ । ସେଥିପାଇଁ ଏପରି ରାଜକୀୟ ଆୟୋଜନ କରି ମୋତେ ଏଠାକୁ ପଠାଇଛନ୍ତି ।" ଯାହାହେଉ, ମକଦ୍ଦମା ଚାଲିଲା । ତା ୩-୧୨-୪୦ରେ ମାଜିଷ୍ଟ୍ରେଟ୍ ରାୟ ଦେଲେ । ଭଗବତୀ, ଅନନ୍ତ, ଗୁରୁଚରଣ, ବୈଦ୍ୟନାଥ ଓ ବନମାଳୀ ଷଡଯନ୍ତ୍ରରେ ଦୋଷୀ ସାବ୍ୟସ୍ତ ହେଲେ । ଭଗବତୀ ବୈଦ୍ୟନାଥ ଓ ଗୁରୁଚରଣଙ୍କୁ ଅଠର ମାସକରି ଅନନ୍ତ ଓ ବନମାଳୀଙ୍କୁ ନଅ ମାସ କରି ଷଡଯନ୍ତ୍ର ଦଫାରେ କାରାଦଣ୍ଡ ଓ ଅର୍ଥଦଣ୍ଡ ଦିଆଗଲା । ଅନ୍ୟ କେତୋଟି ଦଫାରେ ଏମାନଙ୍କୁ ଆଉ କେତେମାସ ଅଧିକ କାରାଦଣ୍ଡ ଦିଆଯାଇଥିଲା ।

ଉକ୍ତ ରାୟ ବିରୁଦ୍ଧରେ ମୁଦାଲାମାନଙ୍କ ତରଫରୁ ଅପିଲ୍ ଦାୟର କରାଗଲା । ଏହାର ଶୁଣାଣି ଜିଲ୍ଲା ଜଜ୍ ଶ୍ରୀ ଜେ. ଏ. ମାହେର ଆଇ.ସି.ଏସ୍.ଙ୍କ କୋର୍ଟରେ ହୋଇଥିଲା । ସେ ତା ୩-୧୨-୪୧ରେ ତାଙ୍କ ରାୟରେ ଗଣେଶ୍ୱର ଓ ସିଦ୍ଧେଶ୍ୱରଙ୍କୁ ଖଲାସ ଆଦେଶ ଦେଲେ । ଅନ୍ୟମାନଙ୍କ ଦଣ୍ଡାଦେଶକୁ କାଏମ୍ ରଖି ରାୟରେ ଉଲ୍ଲେଖ କରିଥିଲେ ଯେ, ଗୁରୁତର ଅଭିଯୋଗରେ ଦୋଷୀ ସାବ୍ୟସ୍ତ ହୋଇଥିବାରୁ ସେମାନଙ୍କୁ ଆହୁରି ଅଧିକ ଦଣ୍ଡ ଦିଆଯାଇଥିଲେ ସେ ତାକୁ ମଧ୍ୟ କାଏମ୍ ରଖିଥାନ୍ତେ । ଏହିପରି ଭାବରେ ଓଡ଼ିଶାର ଗୋଟିଏ ବଡ଼ ଷଡଯନ୍ତ୍ର ମାମଲାର ପରିସମାପ୍ତି ଘଟିଥିଲା । ଉପରୋକ୍ତ ମୁଦାଲାମାନଙ୍କ ସହିତ ଶରତ ପଟ୍ଟନାୟକ ଓ ବିଜୟ ଚନ୍ଦ୍ର ଦାସ ମଧ୍ୟ ଗିରଫ ହୋଇଥିଲେ । ଅନ୍ୟ ଦଫାରେ ଉଭୟଙ୍କୁ ଛଅ ମାସ ଜେଲ୍‌ଦଣ୍ଡ ଦିଆଯାଇଥିଲା ।

** ନ୍ୟାୟମୂର୍ତ୍ତି ୰ ରାଜକିଶୋର ଦାସଙ୍କର ଅମର ଜୀବନୀ "ଅନେକ ଦିନର ଅନେକ କଥା" ପୁସ୍ତକରୁ ଆହୃତ ।*





# ଭଗବତୀଙ୍କ ସ୍ୱପ୍ନର ସାଫଲ୍ୟ

- ପ୍ରାଣନାଥ ପଟ୍ଟନାୟକ

*ଭଗବତୀଙ୍କର ସମଯୋଦ୍ଧା ପ୍ରାଣନାଥ ପଟ୍ଟନାୟକଙ୍କ ସ୍ମୃତିଚାରଣ ୧୯୬୬ ମସିହା ଭଗବତୀ ବିଶେଷାଙ୍କରୁ ଆହୃତ*

ସେଦିନ ୧୯୩୫ ସାଲ୍‌ରେ ମାର୍ଚ୍ଚ ମାସର ଗୋଟିଏ ସୁପ୍ରଭାତ । ଆଜିର ୩୦ ବର୍ଷ ତଳର କଥା । ବନାରସର କାଶୀ ବିଦ୍ୟାପୀଠର ଶାସ୍ତ୍ରୀ ଶିକ୍ଷା ସମାପ୍ତ କରି କଲିକତା ଦେଇ ପୁରୀ ଏକସ୍‌ପ୍ରେସ୍‌ରେ ପୁରୀ ଫେରୁଥାଏ । କଟକ ଷ୍ଟେସନ୍‌ରେ ଆକସ୍ମିକ ଭାବରେ ଭଗବତୀ ସଙ୍ଗେ ଦେଖାହେଲା । ଦେଖିଲା ମାତ୍ରେ ସାଙ୍ଗେ ସାଙ୍ଗେ କୁଣ୍ଢେଇ ପକାଇ କହିଲା "ଆରେ ଆମେ ତ ତୋ କଥା ଭାବୁଥିଲୁ । ତୋ ପାଖକୁ ଚିଠି ଦେଇଥାନ୍ତୁ । ହଉ ଚାଲ୍ କଥାବାର୍ତ୍ତା ହୋଇ ଟ୍ରେନ୍‌ରେ ଯିବା ।" ଟ୍ରେନରେ କ'ଣ କଥାବାର୍ତ୍ତା ହେଲା ସେ ବିଷୟରେ ଜାଣିବା ପାଇଁ ପାଠକମାନଙ୍କର ସ୍ୱାଭାବିକ ଇଚ୍ଛା ଜାତ ହେଉଥିବ । ଶିକ୍ଷିତ ଯୁବକ ଭଗବତୀ ଏମ୍.ଏ.ପାଶ କରିଥାଏ । ଚାକିରୀ କରିବାକୁ ଆଦୌ ଇଚ୍ଛା ନଥାଏ । ଦେଶର ସ୍ୱାଧୀନତା ଲାଭ ଓ ସମାଜବାଦ ପ୍ରତିଷ୍ଠା ପାଇଁ କାୟମନୋବାକ୍ୟରେ ଲାଗିଥାଏ । ତେଣୁ ଓଳିଏ ଖାଇ ଓଳିଏ ଉପବାସ ରହିବା ବାଟଧରି ନେଇଥାଏ । ଯେତେବେଳେ ଏ ସମାଜରେ ଏମ୍.ଏ. ପାଠପଢାର ମୂଲ୍ୟ ଖୁବ୍ ଅଧିକ, ସେତେବେଳେ ଚାକିରୀ ଲୋଭ ଛାଡି ଭୋକଉପାସରେ ରହିବା ରାସ୍ତାବରଣ ଯେ ଚରମ ତ୍ୟାଗର ନମୁନା, ଏକଥାରେ କେହି ଦ୍ୱିମତ ହେବେ ନାହିଁ । ଅନ୍ୟ ପକ୍ଷରେ ପ୍ରଗତିଶୀଳ ସମାଜ ଗଠନ ପାଇଁ କେତେ ଜଣଙ୍କ ନିଷ୍ଠା, ଆତ୍ମତ୍ୟାଗ ଓ ବୈଜ୍ଞାନିକ କାର୍ଯ୍ୟଧାରା ଯେ ଏକାନ୍ତ ଆବଶ୍ୟକ ଏକଥା ପ୍ରତ୍ୟେକ ସ୍ୱୀକାର କରିବେ । ତେଣୁ ଭଗବତୀଠାରେ ହିଁ ଏହି ଉଭୟ ଆଦର୍ଶ ଓ ଆବଶ୍ୟକତାର ସମନ୍ୱୟ ।

ସେତେବେଳେ ଭାରତର ତତ୍କାଳୀନ ଭାଇସରାୟ ୱେଲିଙ୍ଗଡନ୍‌ର ସାରା ଭାରତରେ ସ୍ୱାଧୀନତା ଆନ୍ଦୋଳନର ଦେଶ ପ୍ରେମୀ ବୀରମାନଙ୍କ ଉପରେ ଅକଥନୀୟ ଆକ୍ରମଣ ଏବଂ ଜନସାଧାରଣଙ୍କ ଉପରେ ନାହିଁ ନଥିବା ଦମନ ଫଳରେ ୧୯୩୦ ଗାନ୍ଧି ଇରୱିନ୍ ଶାନ୍ତି ଚୁକ୍ତି ସରି ଯାଇଥାଏ ଏବଂ ୧୯୩୩-୩୪ ଆନ୍ଦୋଳନ କ୍ରମଶଃ ମଉଳି ଯାଇଥାଏ । ତେଣୁ ସ୍ୱାଧୀନତା ସଂଗ୍ରାମର ଛୋଟ ବଡ଼ ସେନାପତିମାନେ ନିଜ ନିଜ କ୍ଷେତ୍ରରେ ଆପଣା ଶକ୍ତିକୁ ଚାହିଁ ଆନ୍ଦୋଳନ ବ୍ୟର୍ଥତାର କାରଣ ବିଶ୍ଳେଷଣ କରୁଥାନ୍ତି ଏବଂ ସ୍ୱାଧୀନତା ଲାଭର ବିଭିନ୍ନ ରାସ୍ତା ଓ ଉପାୟ ନିର୍ଦ୍ଧାରଣ କରିବାରେ ଲାଗିଥାନ୍ତି । ସର୍ବଭାରତୀୟ କ୍ଷେତ୍ରରେ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଶୁଭେଚ୍ଛା ନେଇ ଆଚାର୍ଯ୍ୟ ନରେନ୍ଦ୍ର ଦେବ, ସମ୍ପୂର୍ଣ୍ଣା ନନ୍ଦ, ଜୟପ୍ରକାଶ, ମେହରାଲି, ଅଶୋକ ମେହେଟ୍ଟା, ପି. ସୁନ୍ଦରାୟ ଓ ଇ.ଏମ୍.ଏସ୍. ନମ୍ବୁଦ୍ରିପାଦ୍ ପ୍ରଭୃତିଙ୍କ ଚେଷ୍ଟାରେ ବିଭିନ୍ନ ପ୍ରଦେଶରେ ତଥା ସର୍ବଭାରତୀୟ କ୍ଷେତ୍ରରେ ଗୋଟିଏ "କଂଗ୍ରେସ ସୋସାଲିଷ୍ଟ ପାର୍ଟି" ଗଠନର ଉଦ୍ୟମ ଚାଲିଥାଏ ଏବଂ ସେହି ସମୟରେ ୧୯୩୫ ମଇ ମାସରେ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ସଭାପତିତ୍ୱରେ ଗୟାଠାରେ ଏକ ସମ୍ମିଳନୀରେ "ନିଖିଳ ଭାରତ ସୋସାଲିଷ୍ଟ ପାର୍ଟି" ଗଢାଗଲା । ସେତେବେଳେ ଭାରତରେ ବ୍ରିଟିଶ୍ ଏଜେଣ୍ଟମାନେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ୍ କରି ରଖିଥାଆନ୍ତି । ତେଣୁ ପ୍ରତ୍ୟକ୍ଷ ଭାବରେ କମ୍ୟୁନିଷ୍ଟ ପାର୍ଟି ଜରିଆରେ କାମ କରିବାକୁ ସୁବିଧା ସୁଯୋଗ ନଥାଏ ।

ଏଠାରେ କଂଗ୍ରେସ-ସୋସାଲିଷ୍ଟ ପାର୍ଟିର ଭୂମିକା ଓ ଦିଗ୍‌ଦର୍ଶନ ବିଷୟରେ ପଦେ ଅଧେ ଆଲୋଚନା ନ କଲେ କଥାଟା ଅପୂର୍ଣ୍ଣ ରହିଯିବ । ଭାରତରେ ବ୍ରିଟିଶ୍ ଶାସନ ବିରୁଦ୍ଧରେ ସ୍ୱାଧୀନତା ଲାଭ ପାଇଁ କଂଗ୍ରେସ ନେତୃତ୍ୱରେ ଯେଉଁ ସଂଗ୍ରାମ ଚାଲିଥାଏ ତହିଁରେ ଟାଟା ବିର୍ଲାଠାରୁ ଆରମ୍ଭ କରି କେତେକ କୋଟିପତି ଯେପରି ନିଜ ପଇସା ବଳରେ ସେମାନଙ୍କ ସଂକୀର୍ଣ୍ଣ ସ୍ୱାର୍ଥ ପାଇଁ କଂଗ୍ରେସ ନେତୃତ୍ୱ ବଜାଏ ରଖିବାକୁ ଚେଷ୍ଟା କରୁଥିଲେ, ଅନ୍ୟ ପକ୍ଷରେ ଏ ଦେଶର ଅଗଣିତ ନରନାରୀ ବାଳକ, ଯୁବକ, ପ୍ରୌଢ଼, ବୃଦ୍ଧ, ଚାଷୀ ମୂଲିଆ, ଶ୍ରମିକ, ଛାତ୍ର, ଦୋକାନୀ, ଛୋଟ ବ୍ୟବସାୟୀ ମଧ୍ୟ ସେହିପରି ସେମାନଙ୍କ ବିରାଟ ସ୍ୱାର୍ଥ ପାଇଁ ସଂଗ୍ରାମ ବଳରେ କଂଗ୍ରେସ ନେତୃତ୍ୱକୁ ଆଗେଇ ନେଇ ବ୍ରିଟିଶ୍ ସରକାରଠାରୁ ସ୍ୱାଧୀନତା ଛଡାଇ ଆଣିବା ପାଇଁ ଚେଷ୍ଟା କରୁଥିଲେ । ମାତ୍ର ପ୍ରଥମୋକ୍ତ ଶ୍ରେଷକ ଶ୍ରେଣୀ ସଂଖ୍ୟା ଲଘୁ ହେଲେ ମଧ୍ୟ ଶ୍ରେଣୀ ଚେତନଶୀଳ ଓ ସଂଗଠିତ, ମାତ୍ର ଶେଷୋକ୍ତ ଶ୍ରେଣୀ ସଂଖ୍ୟା ଗରିଷ୍ଠ ହେଲେ ମଧ୍ୟ ଅଚେତନଶୀଳ ଓ ଅସଂଗଠିତ ।





କଂଗ୍ରେସର ୧୯୨୦-୨୧, ୧୯୩୦-୩୧ ଏବଂ ୧୯୩୨-୩୪ ଆନ୍ଦୋଳନ ମାଧ୍ୟମରେ ଏହାହିଁ ସ୍ପଷ୍ଟ ପରିଲକ୍ଷିତ ହୋଇଛି । ଏହି ସମସ୍ତ ସଂଗ୍ରାମରେ ଶେଷୋକ୍ତ ଶ୍ରେଣୀର ଲୋକ ଲକ୍ଷ ଲକ୍ଷ ସଂଖ୍ୟାରେ ଜେଲ୍ ଯାଇଥିଲେ ମଧ୍ୟ ଏବଂ ସ୍ୱାଧୀନତା ସଂଗ୍ରାମରୁ ଅସଲ କଷାଘାତ ଖାଇଥିଲେ ମଧ୍ୟ ନିଜ ଶ୍ରେଣୀ ସ୍ୱାର୍ଥ ଓ ଦାବୀ ପ୍ରତି ଅଚେତନ ଥିବାରୁ ଅସଂଗଠିତ ଭାବରେ ଗେଟିଫଟା ହୋଇ ଲଢୁଥିଲେ । କଂଗ୍ରେସ ନେତୃତ୍ୱ ମଧ୍ୟ ସେମାନଙ୍କୁ ଶ୍ରେଣୀ ଚେତନ ଓ ଶ୍ରେଣୀ ସ୍ୱାର୍ଥ ବିଷୟରେ ସଚେତନ କରାଇବା ପାଇଁ ଅନିଚ୍ଛୁକ ଓ ପରାଙ୍ମୁଖ ଥିଲା । ତେଣୁ ଚେତନା ବର୍ଜିତ, ଦାବୀରହିତ, ଅସଂଗଠିତ ଜନତାର ସଂଗ୍ରାମ ଦୁର୍ବଳ ଓ ବିପଥଗାମୀ ହେବା ସ୍ୱାଭାବିକ । ଏଠାରେ ତାହାହିଁ ଘଟିଥିଲା ।

ଅନ୍ୟପକ୍ଷରେ ବ୍ରିଟିଶ ସରକାର ତା ଦେହରେ ଆଘାତ ନ ଲଗାଇବା ପାଇଁ ଚାରିସାଞ୍ଜୁ ପିନ୍ଧି ରହିଥାଏ । ମୋଗଲବନ୍ଦୀରେ ଜମିଦାର, ଗଡଜାତ ରାଜା ମହାରାଜା, ଉପରେ କୋଟିପତି, ଭିତରେ ଅମଲାତାନ୍ତ୍ରିକ ଶାସନ କଳ, ଏହି ଚାରିସାଞ୍ଜୁ ଭେଦକରି ଟାଣମାଡ ବସିଲେ ବ୍ରିଟିଶ୍ ସରକାର ଉପରେ ଆଘାତ ଲାଗିବ ନଚେତ୍ ନାହିଁ । ମାତ୍ର ବିଗତ ସଂଗ୍ରାମ ମାନଙ୍କରେ ଲୋକଙ୍କ ମାଡ ଏ ଦେଶରେ ବ୍ରିଟିଶ୍ ସରକାରକୁ ରକ୍ଷାକରୀ ଏହି ସମସ୍ତ ଉପରୋକ୍ତ ଶ୍ରେଣୀ ଉପରେ ନବାଜି ଏଣେତେଣେ ବାଜୁଥିବାରୁ ପ୍ରତ୍ୟକ୍ଷ ଫଳ ଦେଉ ନଥାଏ ।

ତେଣୁ ଏ ଦେଶରେ ବ୍ରିଟିଶ ଉପରେ ଠିକଣା ମାଡଦେବା ପାଇଁ ଉପାୟ ନିର୍ଦ୍ଧାରଣ ଓ କର୍ମପନ୍ଥା ଗ୍ରହଣ ହିଁ ସ୍ୱାଧୀନତା ହାସଲର ଅସଲ ବାଟ, ଅନ୍ୟ ବାଟ ନୁହେଁ । ସେହି ବାଟ ନିର୍ଦ୍ଧାରଣ ଓ କାର୍ଯ୍ୟକାରଣ ହିଁ "କଂଗ୍ରେସ ସୋସାଲିଷ୍ଟ୍ ପାର୍ଟି" ଗଠନର ଅସଲ ଉଦ୍ଦେଶ୍ୟ । କଂଗ୍ରେସର ଗୋଟିଏ ଅଙ୍ଗରୂପେ ରହି ସେ ଦିଗରେ ସେ କେତେଦୂର ସଫଳ ବା ଅସଫଳ ହୋଇଛି ତାହାହିଁ ବିଚାର୍ଯ୍ୟର ବିଷୟ । ଏବଂ ଏ ଦିଗରେ ଭଗବତୀର ଭୂମିକା ହିଁ ଅନ୍ୟ ଏକ ଆଲୋଚ୍ୟ ବିଷୟ । ପ୍ରଚାର, ସଂଗଠନ ଓ ସଂଗ୍ରାମ ଜରିଆରେ କଂଗ୍ରେସ ନେତୃତ୍ୱକୁ ଅଧିକ ତୀକ୍ଷ୍ଣ ଓ ଶାଣିତ କରାଇ ଆଶୁ ସ୍ୱାଧୀନତା ହାସଲ କରିବା ହିଁ ଏହି ପାର୍ଟିର ମୁଖ୍ୟ ଲକ୍ଷ ।

ଟ୍ରେନ୍‌ରେ ଭଗବତୀ ଯେଉଁ ଗୁରୁତ୍ୱପୂର୍ଣ୍ଣ କଥା ଆରମ୍ଭ କରିଥିଲା ଓ ଅନ୍ୟମାନେ ମୋତେ ଖୋଜୁଥିଲେ ବୋଲି କହୁଥିଲେ, ତାହାର ତାତ୍ପର୍ଯ୍ୟ ଅନେକେ ଅନୁମାନ କରିନେବେଣି - "ହଇରେ ପ୍ରାଣନାଥ, ବର୍ତ୍ତମାନ ଦେଶର ଯାହା ଅବସ୍ଥା ଓ ସଂଗ୍ରାମର ଯାହା କୌଶଳ, ସେଥିରେ ନବବାବୁ, ମାଳତୀ ଦେବୀ ପ୍ରଭୃତି ଆମେ ଭାବୁଛୁ ଯେ ଆମ ଓଡ଼ିଶାରେ ଗୋଟିଏ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଗଢିବା ଏବଂ ତୋତେ ସେଥିରେ ସଭାପତି କରିବା ପାଇଁ ଆମ୍ଭେମାନେ ଭାବିଛୁ ।" ତୁଚ୍ଛ ବନାରସରେ ଥିଲୁ ଏବଂ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ସହ ଏ ବିଷୟରେ ପ୍ରତ୍ୟକ୍ଷ କଥାବାର୍ତ୍ତା କରିଥିଲୁ । ତୋର ମତ ବା କ'ଣ ? ମୁଁ କହିଲି "ହଁ ମୋର ନରେନ୍ଦ୍ର ଦେବଙ୍କ ସହ ଏ ବିଷୟରେ ବିଶେଷ ଆଲୋଚନା ହୋଇଛି ଏବଂ ମୁଁ ମଧ୍ୟ ସେହି ଦିଗରେ ଭାବୁଛି" ଇତ୍ୟାଦି, ଇତ୍ୟାଦି । ସମୟକ୍ରମେ ସେହି ୧୯୩୫ ମଇ ମାସରେ ଓଡ଼ିଶା କଂଗ୍ରେସ ସୋସାଲିଷ୍ଟ ପାର୍ଟି କଟକଠାରେ ଲେଖକଙ୍କ ସଭାପତିତ୍ୱରେ ଗଠିତ ହେଲା । ପ୍ରଥମେ ଶ୍ରୀ ନବକୃଷ୍ଣ ଚୌଧୁରୀ ତାର ସମ୍ପାଦକ ହେଲେ, ପରେ ଭଗବତୀ ତାହାରା ସମ୍ପାଦକ ଦାୟିତ୍ୱ ନେଇଥିଲା ।

କୃଷକ, ଶ୍ରମିକ, ଛାତ୍ର, ଯୁବକ ଗଡଜାତରଗଣ ଆନ୍ଦୋଳନ ପାଇଁ ଗୋଟିଏ ସଂଗଠିତ ରାଜନୈତିକ ଦଳର ଆବଶ୍ୟକତା ଯେ କେତେ ଅଧିକ ତାର ପ୍ରମାଣ ଏହି କ୍ଷେତ୍ରରେ ସ୍ପଷ୍ଟ ମିଳେ । ତାହା ପରେ ପରେ ୧୯୩୬ ମାର୍ଚ୍ଚ ମାସରେ କଟକଠାରେ ମୋହନଲାଲ ଗୌତମଙ୍କ ସଭାପତିତ୍ୱରେ ପ୍ରାଦେଶିକ କୃଷକସଭା ଗଢାଗଲା ପରେ ହିଁ ବିଜୁଳି ପରି ତାହା ଗାଁ ଗଣ୍ଡା ପୁରପଲ୍ଲୀରେ ମାଡି ଚାଲିଲା - "ଜମିଦାରୀ ପ୍ରଥା ଲୋପ ହେଉ", "ମଠ ଧନ କୋଠ ହେଉ", "ରୋସମପ୍ରଥା ଉଠିଯାଉ", "ବେଠୀ ବେପାରୀ ଲୋପ ପାଉ", ପ୍ରଭୃତି ଜମିଦାରୀ ପ୍ରଥା ଲୋପ ପାଇଁ କେତେକ ନିର୍ଦ୍ଦିଷ୍ଟ ରଣଧ୍ୱନୀ ଆକାଶ ପାତାଳ ପ୍ରକମ୍ପିତ କରି ଜମିଦାରୀ ପ୍ରଥା ବିରୁଦ୍ଧରେ ପ୍ରତ୍ୟକ୍ଷ ପ୍ରଚାର ଓ ସଂଗ୍ରାମ ଆରମ୍ଭ ହୋଇଗଲା ଏବଂ ଯେତେ ଯେଉଁଠି ସଭାସମିତି ହୋଇଛି ହଜାର ହଜାର ସଂଖ୍ୟାରେ ଚାଷୀ ଯୋଗଦେଇଛନ୍ତି । ସେହିପରି ଲେଖକ ଓ ସାଥୀ ଗୋକୁଳ ମୋହନ ରାୟଚୁଡାମଣିଙ୍କ ନେତୃତ୍ୱରେ ଅନୁଷ୍ଠିତ ୧୯୩୬ ସେପ୍ଟେମ୍ବର ତା ୧୫ ଖୋର୍ଦ୍ଧା ସଭାରେ ଆଠ ହଜାର ଚାଷୀ ଯୋଗଦେବା ଏକ ଅଦ୍ଭୁତପୂର୍ବ ଘଟଣା । ଏ ପର୍ଯ୍ୟନ୍ତ ଖୋର୍ଦ୍ଧାରେ ଏତେବଡ଼ ସଭା ହୋଇନାହିଁ । ଖୋର୍ଦ୍ଧା ହିଁ ବ୍ରିଟିଶ ଶାସନର ଏକ ନିଗୁଢ ହସ୍ତମୁଦି ମାହାଲ ଥିଲା । ସେହିପରି ସାଥୀ ଗୋବିନ୍ଦ ପ୍ରଧାନ ଓ ସାଧୁଚରଣ ମହାନ୍ତିଙ୍କ ଚେଷ୍ଟାରେ ଅନୁଷ୍ଠିତ ବ୍ରହ୍ମପୁରର ଏକ ସଭାରେ କୋଡିଏ ହଜାର ଚାଷୀ ଓ ସାଧାରଣ ଲୋକେ ଯୋଗ ଦେଇଥିଲେ ।



ଚାଷୀ ଆନ୍ଦୋଳନ ଯେପରି ବ୍ୟାପକ ରୂପ ନେଲା, ଗଡଜାତ ଆନ୍ଦୋଳନ ମଧ ତତୋଧିକ ବୃଦ୍ଧି ପାଇଲା । ସେହି ସମୟରେ ୧୯୩୭-୩୯ ମଧ୍ୟରେ ଓଡ଼ିଶାର ଉପକୂଳବର୍ତ୍ତୀ ମୋଗଲବନ୍ଦୀ ଇଲାକାକୁ ଲାଗିଥିବା ନୀଳଗିରି, ଢେଙ୍କାନାଳ, ତାଳଚେର, ରଣପୁର, ଖଣ୍ଡପଡା ନୟାଗଡ ପ୍ରଭୃତି ଗଡଜାତ ମାନଙ୍କରେ ରଜା ଓ ରାଜତନ୍ତ୍ର ବିରୁଦ୍ଧରେ ନାହିଁ ନଥବା ଆନ୍ଦୋଳନ ଆରମ୍ଭ ହୋଇ ରାଜତନ୍ତ୍ରକୁ ଦୋହଲାଇ ଦେଲା । ଅନେକଙ୍କର ସ୍ମରଣ ଥିବ ଯେ ନିଶ ଉପୁଡା, ପାଟଅଗଣା ମଡା, ଅତ୍ୟାଚାରୀ ଢେଙ୍କାନାଳୀ ଶାସନ ବିରୁଦ୍ଧରେ ବୈଷ୍ଣବ ପଟ୍ଟନାୟକ ଓ ହରମୋହନ ପଟ୍ଟନାୟକଙ୍କ ନେତୃତ୍ୱରେ ଅନୁଷ୍ଠିତ ଜେନାପୁରଠାରେ ପ୍ରଥମ ସଭାରେ ଗଡଜାତର ବାର ହଜାର ଲୋକ ଯୋଗ ଦେଇଥିଲେ । ଅତ୍ୟାଚାରୀ ଢେଙ୍କାନାଳ ରାଜତନ୍ତ୍ର ବିରୁଦ୍ଧରେ ସତ୍ୟାଗ୍ରହୀ ହିସାବରେ ଢେଙ୍କାନାଳ ରାଜ୍ୟରେ ଅସମ୍ଭବକୁ ସମ୍ଭବ କରି ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ଭଗବତୀ ଅତି ସାହସର ସହ ପ୍ରବେଶ କରିଥିଲେ, ଯାହାକି ଓଡ଼ିଶା ଗଡଜାତ ଆନ୍ଦୋଳନରେ ଏକ ସ୍ମରଣୀୟ ଘଟଣା ।

ତାଳଚେରର ପଚାଶ ହଜାର ଆବାଳ ବୃଦ୍ଧବନିତା ରାଜତନ୍ତ୍ରରେ ଅତ୍ୟାଚାର ବିରୁଦ୍ଧରେ ପ୍ରତିବାଦ କରି ବର୍ଷାଧିକ କାଳ ରାଜ୍ୟ ଓ ଘରଦ୍ୱାର ଛାଡି ମୋଗଲବନ୍ଦୀରେ ଖରା, ବର୍ଷା, ଶୀତକାକର ଖାଇ ପଡିରହିବା ଗଡଜାତ ଆନ୍ଦୋଳନରେ ଏକ ଅଭିନବ ଘଟଣା । ସେହିପରି ସାଥୀ ବନମାଳୀ ଦାସଙ୍କ ନେତୃତ୍ୱରେ ନୀଳଗିରି ଆନ୍ଦୋଳନର କ୍ରମପର୍ଯ୍ୟାୟ ଏଇ ଚରମ ସୀମାସ୍ପର୍ଶ କରିଥିଲା । ସାଥୀ ଗଙ୍ଗାଧର ମିଶ୍ର ଓ ଅନ୍ୟାନ୍ୟଙ୍କ ଚେଷ୍ଟା ୧୯୩୯ରେ ରଣପୁରରେ ବଜେଲ-ଗେଟ୍ ହତ୍ୟାପରେ ଏକ ନୂତନ ପର୍ଯ୍ୟାୟରେ ଗଡଜାତ ଆନ୍ଦୋଳନକୁ ପହଞ୍ଚାଇ ଦେଇଥିଲା । ଅନ୍ୟମାନଙ୍କ ସହ ସାଥୀ ବାସୁଦେବ ଦେରା, ସାଥୀ ପର୍ଶୁରାମ ପଦାତିକ ରାୟ ଓ ଗଙ୍ଗାଧର ପାଇକରାୟଙ୍କ ଚେଷ୍ଟାରେ ନୟାଗଡ, ଖଣ୍ଡପଡା ରାଜତନ୍ତ୍ର ବିରୋଧୀ ଆନ୍ଦୋଳନ ଓ ତାହାର ପ୍ରଭାବରେ ଦଶପଲ୍ଲା ରାଜତନ୍ତ୍ର ଦୋହଲି ଯାଇଥିଲା । ଯାହାର ପରବର୍ତ୍ତୀ ଅଧ୍ୟାୟରେ କଂଗ୍ରେସ ସରକାର ସର୍ବପ୍ରଥମେ ଓଡ଼ିଶା ଗଡଜାତ, ପରେ ଭାରତର ଅନ୍ୟ ଗଡଜାତଗୁଡ଼ିକୁ ମୋଗଲ ବନ୍ଦୀ ସଙ୍ଗେ ସାମିଲ କରିବାକୁ ସୁବିଧା ପାଇଲା ।

ଗଡଜାତ ଆନ୍ଦୋଳନ ସଙ୍ଗେ ସଙ୍ଗେ ସେହି ସମୟରେ ସାଥୀ ବୈଦ୍ୟନାଥ ରଥ, ଅନନ୍ତ ପଟ୍ଟନାୟକ, ବିଶ୍ୱନାଥ ପଶାୟତ ତଥା ବିଜୟ ଚନ୍ଦ୍ର ଦାସଙ୍କ ନେତୃତ୍ୱରେ ଛାତ୍ର ଆନ୍ଦୋଳନ ଓ ସାଥୀ ରାମକୃଷ୍ଣ ପତିଙ୍କ ନେତୃତ୍ୱରେ ଯୁବ ଆନ୍ଦୋଳନ ଓଡ଼ିଶାରେ ଏକ ଅଭୁତପୂର୍ବ ଜାଗରଣର ସ୍ପଷ୍ଟ ସଂକେତ । ଗଣ ଆନ୍ଦୋଳନର ଏହି ସମସ୍ତ ଐତିହାସିକ ବର୍ଣ୍ଣନାବଳୀର ଉଦ୍ଦେଶ୍ୟ ସ୍ୱାଧୀନତା ଆନ୍ଦୋଳନର ପୂର୍ବ ରୂପରେଖ ଓ ରଣ କୌଶଳର ପରିବର୍ତ୍ତନ ଏବଂ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ସମ୍ପାଦକ ହିସାବରେ ଭଗବତୀର ଏଦିଗରେ ଗୃହୀତ ଭୂମିକା ଓ କୃତିତ୍ୱ । ଯାହାର ପରିଣାମରେ ୧୯୩୬-୩୭ ନିର୍ବାଚନରେ ଓଡ଼ିଶାରେ କଂଗ୍ରେସ ପାର୍ଟିର ୪୦ ରୁ ୩୯ ପ୍ରାର୍ଥୀ ଜୟଯୁକ୍ତ ହୋଇଥିଲେ । ସାଥୀ ଗୁରୁଚରଣଙ୍କ ତତ୍ତ୍ୱାବଧାନରେ ପରିଚାଳିତ ପାର୍ଟିର ମୁଖପତ୍ର "କୃଷକ"ର ଭୂମିକା ଏ ଦିଗରେ ଚିରସ୍ମରଣୀୟ ।

କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଏହି ଲଢୁଆ ଓ ପ୍ରଗତିଶୀଳ ଭୂମିକାରେ କଂଗ୍ରେସ ତଥା କଂଗ୍ରେସ ସୋସାଲିଷ୍ଟ ପାର୍ଟିର ନେତୃବୃନ୍ଦ ଛାନିଆ ହୋଇପଡିଲେ ଏବଂ ୧୯୩୯ ସେପ୍ଟେମ୍ବର ୩ ତାରିଖରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ପରେ ପରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ସାଧାରଣ ସମ୍ପାଦକ ଜୟପ୍ରକାଶ ନାରାୟଣ ନଭେମ୍ବର ମାସରେ ଓଡ଼ିଶା ଆସି କଂଗ୍ରେସ ସୋସାଲିଷ୍ଟ ପାର୍ଟି ଭିତରେ କମ୍ୟୁନିଷ୍ଟ ପଶି ଗଲେଣି ବୋଲି ଘୋଷଣା କରି ଓଡ଼ିଶା କଂଗ୍ରେସ ସୋସାଲିଷ୍ଟ ପାର୍ଟିକୁ ଭାଙ୍ଗିଦେଇ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଉପରେ ନୂତନ ପାର୍ଟି ଗଠନ ଓ ପରିଚାଳନାର ପୂର୍ଣ୍ଣ ଦାୟିତ୍ୱ ଦେଇଗଲେ । ଏହିଠାରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଯବନିକା ପତନ ହେଲା । ଏହାପରେ ଭଗବତୀ, ଗୁରୁଚରଣ, ବୈଦ୍ୟନାଥ, ବନମାଳୀ, ଶରତ ପଟ୍ଟନାୟକ, ବିଜୟଚନ୍ଦ୍ର ଦାସ ପ୍ରଭୃତିଙ୍କ ବିରୁଦ୍ଧରେ ୧୯୪୧ରେ ବ୍ରିଟିଶ୍ ସରକାର କମ୍ୟୁନିଷ୍ଟ ଷଡଯନ୍ତ୍ର ମାମଲା ଚାଲୁକଲା ଏବଂ ବିଭିନ୍ନ ବ୍ୟକ୍ତିଙ୍କୁ ତିନିମାସଠାରୁ ଆରମ୍ଭ କରି ୨ ବର୍ଷ ପର୍ଯ୍ୟନ୍ତ ଜେଲ ଦେଲା । ତାହା ଅନ୍ୟ ଏକ ଅଧ୍ୟାୟ । ଆଜି ଭଗବତୀର ସ୍ମୃତି ଦିବସରେ ଏ ସମସ୍ତ ଉଲ୍ଲେଖ କରିବାର ତାତ୍ପର୍ଯ୍ୟ ଓ ଉଦ୍ଦେଶ୍ୟ ହେଉଛି ଓଡ଼ିଶାର ବାସ୍ତବ ପରିସ୍ଥିତିକୁ ଚାହିଁ ଓଡ଼ିଶା କଂଗ୍ରେସ ସୋସାଲିଷ୍ଟ ପାର୍ଟିର ସଠିକ୍ ରଣନୀତି ଓ ରଣ କୌଶଳ ଭଗବତୀର ନେତୃତ୍ୱରେ ମାତ୍ର ୫ ବର୍ଷ ମଧ୍ୟରେ ତାର ସ୍ୱପ୍ନ କେତେ ଦୂର ସାଫଲ୍ୟ ଲାଭ କରିଥିଲା ଏବଂ ଓଡ଼ିଶାରେ ଏକ ନୂତନ ଯୁଗର ପ୍ରବର୍ତ୍ତନ ହୋଇଥିଲା ତାହା ତାହାର ସ୍ମୃତିକୁ ଚିର ମହାନ୍ ଓ ଜାଜ୍ଜ୍ୱଲ୍ୟମାନ କରି ରଖିବ । ଏ ପ୍ରସଙ୍ଗରେ ଓଡ଼ିଶାର ଜାତୀୟନେତା ଗୋପବନ୍ଧୁଙ୍କର ଗୋଟିଏ ପଦ କବିତା ମନେ ପଡେ-

"ମାନବ ଜୀବନ ନୁହଁଇ କେବଳ
ବର୍ଷ ମାସ ଦିନ ଦଣ୍ଡ ।
କର୍ମେ ଜୀଏ ନର କର୍ମ ହିଁ ତାହାର
ଜୀବନର ମାନଦଣ୍ଡ ।"







# ଗୋପବନ୍ଧୁ ଓ ଭଗବତୀ

- ଶ୍ରୀ ଗୁରୁଚରଣ ପଟ୍ଟନାୟକ

ଭଗବତୀଙ୍କ ମୃତ୍ୟୁର ଚଉଷଠୀ ବର୍ଷ ହୋଇଗଲା । ସେ ଏବେ ଇତିହାସରେ ପରିଣତ ହେଲେଣି । ଇତିହାସ ତାଙ୍କର ମୂଲ୍ୟାୟନ ପ୍ରତି ନିର୍ଲିପ୍ତଭାବେ ଦୃଷ୍ଟିଦେବା ଉଚିତ୍ । ୧୯୪୩ ରେ ମୃତ୍ୟୁ ବେଳକୁ ତାଙ୍କର ବୟସ ମାତ୍ର ୩୪ ବର୍ଷ । ସେ ଗଞ୍ଜାମର ଅନାହାରଗ୍ରସ୍ତ ଅଞ୍ଚଳରେ ରିଲିଫ୍ ଦେବାକୁ ଯାଇ ନାଳଗଣ୍ଡ ରୋଗ ଧରି ଫେରିଲେ; ସେଥିରୁ ଆଉ ଉଠି ନାହାନ୍ତି । ଏହି କ୍ଷୁଦ୍ର ଜୀବନକାଳ ଭିତରେ ବାଲ୍ୟ ଜୀବନରେ ବିଦ୍ୟା ଅଧ୍ୟୟନ ଗୋଟାଏ ବିଶେଷ ଭାଗହେବା ସ୍ୱାଭାବିକ । ତାଙ୍କର ପ୍ରକୃତ କର୍ମର ସମୟ ହେଲା ୧୯୩୪/୩୫ରୁ ୧୯୪୩; ଏଇ ଆଠ ବର୍ଷ । ସେଥି ମଧ୍ୟରୁ ଦୁଇ ବର୍ଷରୁ ଊର୍ଦ୍ଧ୍ୱକାଳ କଟିଛି ଜେଲରେ କିନ୍ତୁ "ମଣିଷ ଜୀବନ ବର୍ଷ ମାସ ଦିନ ଦଣ୍ଡ ନୁହେଁ, କର୍ମ ହିଁ ତାର ଏକମାତ୍ର ମାନଦଣ୍ଡ" ଗୋପବନ୍ଧୁଙ୍କର ଏହି ମହାନ୍ ଉକ୍ତିଟି ଭଗବତୀଙ୍କ କ୍ଷେତ୍ରରେ ଅକ୍ଷରେ ଅକ୍ଷରେ ସତ୍ୟ ।

ଭଗବତୀଙ୍କୁ ମାପିବା ଲାଗି ଗୋପବନ୍ଧୁଙ୍କ ମାନଦଣ୍ଡ କେବଳ ଆବଶ୍ୟକ ନୁହେଁ, ଖୋଦ୍ ସେହି ଗୋପବନ୍ଧୁଙ୍କ ପ୍ରତି ମଧ୍ୟ ଦୃଷ୍ଟି ଦେବା ଦରକାର । ତାଙ୍କୁ ନ ଦେଖିଲେ ଭଗବତୀଙ୍କୁ ଦେଖି ହେବ ନାହିଁ, ଯେହେତୁ ଗୋପବନ୍ଧୁଙ୍କ ସୃଷ୍ଟି ଓ ଇତିହାସ ଉପରେ ହିଁ ଭଗବତୀଙ୍କ ଜନ୍ମ ଓ ବିକାଶ ଆଉ ସେ ସେହି ଇତିହାସର ଗତିଧାରାର ବାହକ । ଅନାଇବାକୁ ହେବ, ତାଙ୍କରି ଦର୍ଶନର ଚକ୍ଷୁରେ ଦେଖିବାକୁ ହେବ । କାରଣ ଇତିହାସ ପ୍ରତି ତାଙ୍କର ଦୃଷ୍ଟିକୋଣ । ଏକମାତ୍ର ବୈଜ୍ଞାନିକ ଦୃଷ୍ଟିକୋଣ । ତାହା ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଉପରେ ପ୍ରତିଷ୍ଠିତ । ସେଥିଯୋଗୁଁ ଜଣଙ୍କୁ ବାଦଦେଇ ଅନ୍ୟଜଣଙ୍କର ବିଚାର ଅସମ୍ଭବ ।

ଗୋପବନ୍ଧୁଙ୍କ ମୃତ୍ୟୁ ଘଟିଛି ସ୍ୱାଧୀନତାର ୧୯ ବର୍ଷ ପୂର୍ବରୁ । ସେତେବେଳେ ରାଜନୀତିରେ ଭଗବତୀଙ୍କ ଜନ୍ମ ନାହିଁ । ଅଥଚ ଭଗବତୀଙ୍କ ମୃତ୍ୟୁ ହେଲା ସ୍ୱାଧୀନତାର ଚାରି ବର୍ଷ ଆଗରୁ । ଗୋପବନ୍ଧୁଙ୍କ ବେଳେ ସ୍ୱାଧୀନତା ଏକ ସୁଦୂର ଲକ୍ଷ୍ୟ ବ୍ରିଟିଶର ନିରଙ୍କୁଶ ଶାସନ, ଜନସାଧାରଣ କୁସଂସ୍କାର ଗ୍ରସ୍ତ, "ଆତ୍ମ-ଚେତନାହୀନ, ଦମ୍ଭ ସାହସ ଶୂନ୍ୟ, ନିଜର ଭବିଷ୍ୟତ ଲକ୍ଷ୍ୟ ଓ ପନ୍ଥା ସମ୍ବନ୍ଧରେ ଅନଭିଜ୍ଞ, ପ୍ରଚଳିତ ଉତ୍ପାଦନ ପ୍ରଣାଳୀରେ କ୍ଷୁଦ୍ର କୃଷି ଅର୍ଥନୀତିର ପ୍ରାଧାନ୍ୟ, ସେହି ଅନୁସାରେ ସଂକୀର୍ଣ୍ଣ ଚିନ୍ତାଧାରାର ପ୍ରତିଫଳନ - ଏହି ଅବସ୍ଥା ଭିତରୁ ଗୋପବନ୍ଧୁଙ୍କ ଜନ୍ମ । ସେ ଚାହିଁଛନ୍ତି ତାର ପରିବର୍ତ୍ତନ । ଆଉ ସେହି ପରିବର୍ତ୍ତନର ପ୍ରକ୍ରିୟା ଭିତରେ ଜନ୍ମ ନେଇଛନ୍ତି ଭଗବତୀ । ସେତେବେଳକୁ ଓଡ଼ିଶା ୧୯୨୨ ଓ ୧୯୩୦।୩୨ର ଦୁଇଟା ସଂଗ୍ରାମ ଲଢ଼ିଛି । ତାର ଆତ୍ମବିଶ୍ୱାସ ଆସିଛି, ତାର ଲକ୍ଷ୍ୟ ପରିଷ୍କାର ହୋଇଛି । କୃଷକ ଆନ୍ଦୋଳନ ଓ ଶ୍ରମିକ ଧର୍ମଘଟର ପ୍ରଭାବ ପଡୁଛି, ଗଡଜାତ ଆନ୍ଦୋଳନ ହେଉଛି ଏବଂ ନୂତନ ଆନ୍ତର୍ଜାତିକ ଚିନ୍ତାଧାର ଓଡ଼ିଶାରେ ପ୍ରବେଶ କରୁଛି, କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢ଼ିଛି, ବିଶ୍ୱଯୁଦ୍ଧ ଆରମ୍ଭ ହୋଇଛି । ସେତେବେଳେ ପ୍ରଶ୍ନ ଉଠୁଛି ସ୍ୱାଧୀନତାର ଶେଷ ସଂଗ୍ରାମ ହେବ କିପରି ଏବଂ ସ୍ୱାଧୀନତା ପରେ ଆଉ କ'ଣ ? ଏ ଦୁଇ ଅବସ୍ଥାର ପାର୍ଥକ୍ୟ ପ୍ରତିଫଳନ ଘଟିଛି ଦୁହିଁଙ୍କ ଜୀବନରେ, କହିବାକୁ ଗଲେ ସେମାନେ ସେ ଦୁଇ ଅବସ୍ଥା, ତାର ସମସ୍ୟା ଓ ସମାଧାନର ପ୍ରତିମୂର୍ତ୍ତି ।

ଗୋପବନ୍ଧୁଙ୍କ ପୂର୍ବରୁ ଥିଲା ବ୍ରିଟିଶ ସରକାର ପାଖରେ ପ୍ରାର୍ଥନା, ପିଟିସନ୍‌ର ଯୁଗ । ସେ ତାକୁ ଭାଙ୍ଗିଛନ୍ତି, ଘୋଷଣା କରିଛନ୍ତି ମାନବର ମୌଳିକ ଅଧିକାର - ସ୍ୱାଧୀନତା ।

ସେଇ ସ୍ୱାଧୀନତା ସଂଗ୍ରାମକୁ କଂଗ୍ରେସ ଅହିଂସା ଓ ସତ୍ୟାଗ୍ରହ ପରିସର ଭିତରେ ବାନ୍ଧି ଦେଇଛି । ସେଥିରେ ଦୋଦୁଲ୍ୟମାନ ଭାବ ଦେଖାଇଛି, ବ୍ରିଟିଶ୍ ସହିତ ସାଲିସ୍ କରିଛି । ଭଗବତୀ ଚେଷ୍ଟା କରିଛନ୍ତି ତାକୁ ଭାଙ୍ଗିବାକୁ, ସେ ଘୋଷଣା କରିଛନ୍ତି ସାଲିସହୀନ ସଂଗ୍ରାମ । ବାଡ଼ି ପଛେ ଭାଙ୍ଗୁ, କିନ୍ତୁ ସାପ ମରୁ । ସେ ବିଶ୍ୱାସ କରୁଥିଲେ ଦୁନିଆରେ ସବୁ ଶୋଷକଙ୍କ ବିରୋଧରେ ସମଗ୍ର ଶୋଷିତ ଶ୍ରେଣୀ ଏକଜୁଟ୍ ହେବା ଦରକାର, ନିଜର ମୁକ୍ତି ସଂଗ୍ରାମରେ ପରସ୍ପରକୁ ସାହାଯ୍ୟ କରିବା ଉଚିତ୍ ।

******

ତେବେ ଗୋପବନ୍ଧୁ ଧର୍ମର ମହତ ଦିଗଗୁଡ଼ିକୁ ନେଇଛନ୍ତି । ତାକୁ ବ୍ୟବହାର କରିଛନ୍ତି ସେହି ଦରିଦ୍ର ନାରାୟଣଙ୍କ ସେବା ଓ ଉନ୍ନତି ଦିଗରେ । ତାହା ହୋଇଛି ତାଙ୍କ ଆନ୍ଦୋଳନର ଏକ ପ୍ରଧାନ ଉପାୟ ଆଉ ତାକୁ ନିଜ କ୍ଷେତ୍ରରେ ଚିରନ୍ତନ ଜନ୍ମ ମୃତ୍ୟୁର ସଂସାର ଜଞ୍ଜାଳରୁ ମୁକ୍ତ ହୋଇ, ଭଗବାନଙ୍କ ସହିତ ବିଲୀନ ହେବା ବା



ମୋକ୍ଷପ୍ରାପ୍ତି ହୋଇଛି ତାଙ୍କର ଜୀବନ ଆଦର୍ଶ ।

ଭଗବତୀ ଏହି ବ୍ୟକ୍ତିମାନବର ମୁକ୍ତି ଅନ୍ୟବାଟରେ ଲୋଡ଼ିଛନ୍ତି । ଗଣର ମୁକ୍ତିରେ ସେହି ବ୍ୟକ୍ତିମାନବର ମୁକ୍ତି ଦେଖିଛନ୍ତି । ସେଥିଲାଗି ଭଗବାନଙ୍କ ଉପରେ ବିଶ୍ୱାସ କରିନାହାନ୍ତି । ସେ ଆଶ୍ରା କରିଛନ୍ତି ସାମାଜିକ ବିକାଶର ବୈଜ୍ଞାନିକ ନିୟମକୁ । ତେଣୁ ଦୁଃଖ, ଶୋକ, ଅନ୍ୟାୟ, ଅତ୍ୟାଚାର ଯେଉଁଥିରେ ଗୋପବନ୍ଧୁ ଜର୍ଜରିତ ହୋଇ ମୋକ୍ଷ ଲାଗି ଭଗବାନଙ୍କ ପାଖକୁ ଧାଇଁ ଯାଇଛନ୍ତି, ଭଗବତୀ ଚାହିଁଛନ୍ତି ଏହି ମର୍ତ୍ତ୍ୟରେ ତାର ନିରାକରଣ । ଆଉ ସେ ଦିଗରେ ପ୍ରଧାନ ଅନ୍ତରାୟ ହେଉଛି ବ୍ୟକ୍ତିଗତ ସମ୍ପତ୍ତି । ତାହା ଏକ ଦିଗରେ ମଣିଷକୁ ଯେପରି ନିଃସ୍ୱ, ଦରିଦ୍ର ଓ ଅମଣିଷ କରିଦିଏ, ଅନ୍ୟ ଦିଗରେ ସେହି ସମ୍ପତ୍ତିର ମାଲିକକୁ ମଧ୍ୟ ସେହିପରି ନିର୍ବୋଧ ଅମଣିଷରେ ପରିଣତ କରେ । ନିଜର ମାଲିକପଣିଆ ମଣିଷକୁ ଏତେ ଘାରେ ଯେ ସେ ବାସ୍ତବ ଜଗତର ସମ୍ପଦ ସୌନ୍ଦର୍ଯ୍ୟର ଉପଭୋଗ କରିପାରେ ନାହିଁ । ସେ ସବୁବେଳେ ସମସ୍ତଙ୍କ ଭିତରେ ତାର ବିନିମୟ ମୂଲ୍ୟ ଖୋଜେ, ସେ କେତେ ଟଙ୍କାର ଅଧିକାରୀ ତାହାହିଁ ମାପୁଥାଏ । ଯେହେତୁ ଜଣେ ଅନ୍ୟକୁ ମାନବିକ ସମ୍ପଦରୁ ବଞ୍ଚିତ କରେ, ସେ ନିଜେ ମାନବିକ ସମ୍ପଦରୁ ବଞ୍ଚିତ ହୁଏ ।

ଗୋପବନ୍ଧୁ ମଧ୍ୟ ସେହି ବ୍ୟକ୍ତିଗତ ସମ୍ପତ୍ତି ନେଇ ପ୍ରଶ୍ନ କରିଛନ୍ତି, ସେ, ସେତେବେଳେ 'ସମାଜର' ଅଗ୍ରଲେଖା ଲେଖିଥିଲେ, "ଜଣେ କାହିଁକି କୋଟୀଶ୍ୱର, ଆଉ ଜଣେ କାହିଁକି ଦିନରାତି ଖଟିଖଟି ପେଟପୁରା ଗଣ୍ଡେ ଖାଇବାକୁ ପାଉ ନାହିଁ । ସମାଜରେ ଏ ବିଷମ ଅବସ୍ଥା ରହିବା ଉଚିତ୍ ନୁହେଁ । ଦେଶର ସବୁ ସମ୍ପତ୍ତି ସମଗ୍ର ଜାତିର । ଏହା ସମସ୍ତଙ୍କ କୋଠ ସମ୍ପତ୍ତି ।" ଗୋପବନ୍ଧୁ ନିଜର ବାସ୍ତବ ଅଭିଜ୍ଞତାରୁ ଆସି ପହଞ୍ଚିଛନ୍ତି ସେଇ ବ୍ୟକ୍ତିଗତ ସମ୍ପତ୍ତିର ବିଲୋପ ଓ କୋଠ ସମ୍ପତ୍ତିର ସୃଷ୍ଟିରେ ।

୧୯୨୫ ଶେଷକୁ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପ୍ରଥମ ସମ୍ମିଳନୀ ହୋଇଛି । ସେମାନେ, ମୁଷ୍ଟିମେୟ ଅଜ୍ଞାତଲୋକ କେତେଜଣ – ତାଙ୍କୁ ଦେଖୁଛି କିଏ, କିଏ ବା ତାଙ୍କୁ ପଚାରେ ? କିନ୍ତୁ ସେଥିପ୍ରତି ଦୃଷ୍ଟି ପଡ଼ିଛି ଗୋପବନ୍ଧୁଙ୍କର । ମହାନ୍ ପୁରୁଷ ହିଁ ବର୍ତ୍ତମାନର କ୍ଷୁଦ୍ର ନଗଣ୍ୟବୀଜ ଭିତରେ ଭବିଷ୍ୟତର ମହାଦ୍ରୁମକୁ ଦେଖିପାରେ । ତେଣୁ ତାଙ୍କ ମୃତ୍ୟୁର ଦୁଇବର୍ଷ ପୂର୍ବରୁ, ସେହି କମ୍ୟୁନିଷ୍ଟ ସମ୍ମିଳନୀ ୧୩ ଦିନ ପରେ ସାପ୍ତାହିକ 'ସମାଜ'ର ଅଗ୍ରଲେଖାରେ ସେ ଲେଖିଛନ୍ତି –

ଭିନ୍ନ ଭିନ୍ନ ଶ୍ରେଣୀର ଲୋକଙ୍କ ମଧ୍ୟରେ ଅବସ୍ଥାର ଏପରି ବିଷମ ବିଚ୍ଛେଦ ଘୁଞ୍ଚାଇ ସମସ୍ତଙ୍କୁ ସମାନ ସୁଖ ଶାନ୍ତି ଅଧିକାର ଦେବା କମ୍ୟୁନିଷ୍ଟ ବା କୋଠବାଦୀଙ୍କର ଯଦି ନୀତି ହୁଏ; ତାହା ଗରିବ ଲୋକଙ୍କୁ ନିଶ୍ଚୟ ଭଲ ଲାଗିବ । ପ୍ରଜା ଓ ମଜୁରିଆ ଏକଥା ଶୁଣି ମୁଣ୍ଡିଆ ମାରିବେ । ମାତ୍ର ଏମାନଙ୍କର ନୀତି ଓ କାର୍ଯ୍ୟ ଯଦି ବିଧାତାଙ୍କ ଇଙ୍ଗିତରେ ଆସିଥାଏ, ତେବେ ଏହାର ପ୍ରଭାବରେ ଦିନେ ସମାଜ ଶାସନର ବ୍ୟବସ୍ଥା ଯେ ନ ବଦଳିବ ବୋଲି କିଏ କହିପାରେ ।"

'ସମାଜ'ର ସେହି ଅଗ୍ରଲେଖାରେ ସମୟର ପ୍ରୟୋଜନ ଅନୁଯାୟୀ ଆସିଛନ୍ତି ଭଗବତୀ । ଆଜି କମ୍ୟୁନିଷ୍ଟ ପାର୍ଟିର ସେହି ନୀତି ପୃଥିବୀର ବହୁସ୍ଥାନରେ ପ୍ରତିଷ୍ଠିତ । ସମାଜବାଦୀ ପ୍ରତିଷ୍ଠା ଏବେ ଭାରତର ଲକ୍ଷ୍ୟ । ଫରକ ହେଉଛି, ଗୋପବନ୍ଧୁ ଏହାକୁ କହିଛନ୍ତି ବିଧାତାଙ୍କ ଇଙ୍ଗିତ, ଭଗବତୀ ତାକୁ କହିଛନ୍ତି ସାମାଜିକ ପରିବର୍ତ୍ତନର ଅପରିହାର୍ଯ୍ୟ ନିୟମ, ଲୋକମାନଙ୍କ ସଂଗ୍ରାମ ଦ୍ୱାରା ସୃଷ୍ଟ ।

ଗୋପବନ୍ଧୁ, ଭଗବାନଙ୍କ ଇଙ୍ଗିତରେ ନିଜେ ନିମିତ୍ତ ମାତ୍ର ହୋଇ ଆତ୍ମୋତ୍ସର୍ଗ କରିଯାଇଛନ୍ତି । ସେ ନିଜର ଦେହକୁ ଏ ମାଟିରେ ମିଶାଇ ତା ଉପରେ ଆମକୁ ଚଲାଇ ଦେଇଛନ୍ତି । ଆଉ ଭଗବତୀ ପ୍ରାକୃତିକ ବିକାଶର ଅପରିହାର୍ଯ୍ୟ ନିୟମକୁ ଧରି ଏ ସମାଜକୁ ଭାଙ୍ଗିବା ଓ ଗଢ଼ିବାର ଆହ୍ୱାନ ଜଣାଇଛନ୍ତି, ସେହି ବିପ୍ଳବ ଆଣିବାରେ ଆତ୍ମୋତ୍ସର୍ଗ କରିଛନ୍ତି ।

ଗୋପବନ୍ଧୁ ଜୀବନର ଲକ୍ଷ୍ୟ ସ୍ୱାଧୀନତା ଏବେ ବହୁଦିନରୁ ଆସିଲାଣି । କିନ୍ତୁ ତାଙ୍କର ସେହି ଦରିଦ୍ର ନାରାୟଣଙ୍କ ଦୁଃଖ ଯାଇନାହିଁ । ସେମାନଙ୍କ ଆଖିରୁ ଲୋତକର ଧାର ଶୁଖିନାହିଁ । ତେଣୁ ତାଙ୍କର ପରିକଳ୍ପିତ ସ୍ୱାଧୀନତା ଆଜି ବି ପୂର୍ଣ୍ଣାଙ୍ଗ ନୁହେଁ । ତାହା କେବଳ ଆସିପାରେ ଭଗବତୀଙ୍କ ନିର୍ଦ୍ଦେଶିତ ନୀତି, ବିଚାର ଓ କର୍ମଧାରା ଦ୍ୱାରା ।

ଏହା ଗୋପବନ୍ଧୁ ଓ ଭଗବତୀଙ୍କ ତୁଳନା ନୁହେଁ । କାରଣ ତୁଳନା କେବଳ ସମାନ ଜିନିଷ ବା ସମସାମୟିକଙ୍କ ମଧ୍ୟରୁ ହୋଇପାରେ । ଏହା ଓଡ଼ିଶାର କ୍ରମବିକାଶ ଧାରାର ଦୁଇଟି ଯୁଗ ମାତ୍ର; ଆଉ ଗୋପବନ୍ଧୁ, ଭଗବତୀ ସେହି ଧାରାର ଅନିବାର୍ଯ୍ୟ ସୃଷ୍ଟି । ଆଜିର ନୂତନ ପରିସ୍ଥିତିରେ ଭଗବତୀଙ୍କ ମଧ୍ୟରେ ଗୋପବନ୍ଧୁ ରୂପାୟିତ । ଗୋପବନ୍ଧୁଙ୍କ ସେହି ଅପୂରଣୀୟ ଆଶା ଓ ଆକାଙ୍କ୍ଷା ଭଗବତୀଙ୍କ ମତାଦର୍ଶ ମଧ୍ୟରେ କେବଳ ଉଦ୍‌ଜୀବିତ ଓ ପରିପୂର୍ଣ୍ଣ ହୋଇପାରେ ।









# ଦ୍ୱିତୀୟ ଅଂଶ

**ଭଗବତୀଙ୍କର ଅମ୍ଳାନ କଲମରୁ.....**

...... ସବୁ ଅବସ୍ଥାରେ, ପ୍ରତି ମୁହୂର୍ତ୍ତରେ ପରିବର୍ତ୍ତନର ଧାରା ପ୍ରବାହିତ ହେଉଛି । ଏହି ଧାରାର ସ୍ରୋତ୍ ପ୍ରବାହ ବା ଶିଥିଳ ଧରିଛି । ଏହା ସାଧାରଣତଃ ଶିଥିଳ ଗତିରେ ପ୍ରବାହିତ ହେଉଥାଏ । ଶେଷରେ ଏପରି ଏକ ସମୟ ଆସେ, ଯେତେବେଳେ ଦୁଇକୂଳ ଉଛୁଳି ଉଠେ, ଗତି ଅତ୍ୟନ୍ତ ପ୍ରଖର ହୁଏ, ସବୁ ବାଧାବନ୍ଧକୁ ଅତିକ୍ରମ କରି ଏହା ଚତୁର୍ଦ୍ଦିଗକୁ ପ୍ଲାବିତ କରିଦିଏ ।
ଏହି ପରିବର୍ତ୍ତନର ବାର୍ତ୍ତା ଯେ ଆସି ଆଘାତ କଲାଣି, ଆଧୁନିକ ତାହାହିଁ ତାର ସ୍ୱରରେ ପ୍ରଚାର କରିବ ।...

- ଆଧୁନିକର ସମ୍ପାଦକୀୟର କିୟଦଂଶ
- ଆଧୁନିକର ସମ୍ପାଦକୀୟ ଟିପ୍ପଣୀ
- ନବକୃଷ୍ଣ ଚୌଧୁରୀଙ୍କ ଚିଠି ଓ ସମ୍ପାଦକଙ୍କ ଉତ୍ତର
- ଢେଙ୍କାନାଳ ଆନ୍ଦୋଳନ



ଭଗବତୀଙ୍କ କଲମରୁ - ଆଧୁନିକର ପ୍ରଥମସଂଖ୍ୟାର ସମ୍ପାଦକୀୟ ମେ’ ୧୯୩୬

# ନିଜ କଥା

> ଆରାମ ଚୌକିରେ ବସି ପଢ଼ିବାଯୋଗ୍ୟ ସୌଖୀନ ସାହିତ୍ୟ ପାଇଁ ଆଧୁନିକରେ ସ୍ଥାନ ପ୍ରଶସ୍ତ ନୁହେଁ ।
>
> ସାହିତ୍ୟ ପତ୍ର ପତ୍ରିକାର ସାଧାରଣ ନୀତି ହେଉଛି, "ସାପ ମରିବ ନାହିଁ କି ବାଡି ଭାଙ୍ଗିବ ନାହିଁ ।" ସାପ ସହିତ ସେମାନଙ୍କର କୌଣସି ସଂପର୍କ ନାହିଁ, ନିଜର ବାଡିଟି ବଜାୟ ରଖିବା ହିଁ, ସେମାନଙ୍କର ଲକ୍ଷ୍ୟ । ଆଧୁନିକର କିନ୍ତୁ ତା’ ନୁହେଁ । ବାଡି ଭାଙ୍ଗିଯାଉ ପଛେ ସାପ ମରୁ ଏହାହିଁ ତାହାର ନୀତି । ତାର ପ୍ରଧାନ ଲକ୍ଷ୍ୟ ହେଉଛି ସାପକୁ ମାରିବା ।

ଆଧୁନିକ ପ୍ରକାଶିତ ହେଲା । କୌଣସି ଏକ ବିରାଟ ନୀତିବାଦ ସୃଷ୍ଟି କରିବା କିମ୍ବା ଏକ ମହାନ୍ ସତ୍ୟ ଆବିଷ୍କାର କରିବାର ଅହଂକାର ଏହା ପୋଷଣ କରି ନାହିଁ । ମୋଟ ଉପରେ ଗୋଟିଏ କିଛି ନୂଆ ସର୍ଜନା କରିବାର ଆକାଂକ୍ଷା ଏହାର ନାହିଁ । ଜଗତର ସବୁ ଅଂଶରେ ଏକ ଡ଼ୁମୂଳ ପରିବର୍ତ୍ତନର ଆଭାସ ମିଳୁଛି ଏବଂ ଏହି ପରିବର୍ତ୍ତନ ନାନା ସ୍ଥଳରେ ଯେପରି ବିବିଧ ଉପାୟରେ ଆତ୍ମପ୍ରକାଶ କରୁଛି, ଓଡ଼ିଶାରେ ଆଧୁନିକର ଆବିର୍ଭାବ ସେହିପରି ଗୋଟିଏ ପ୍ରାଥମିକ ଉପାୟର ଚିହ୍ନ ମାତ୍ର । ଏହି ପରିବର୍ତ୍ତନର ଆହ୍ୱାନ ଯେ ଓଡ଼ିଶାର ଯୁବପ୍ରାଣକୁ ଚଞ୍ଚଳ କରିଛି, ଆଧୁନିକ ତାହାର ନିଦର୍ଶନ ।

ଉଭୟ ଚିନ୍ତା-ରାଜ୍ୟରେ ଓ କର୍ମ -କ୍ଷେତ୍ରରେ ଏ ଯେଉଁ ବିପ୍ଳବର ସୂତ୍ରପାତ ହେଉଛି, ତାହା ଅଧିକାଂଶଙ୍କର ଆଗୋଚରରେ ହିଁ ହେଉଛି । ଜନସାଧାରଣଙ୍କୁ ଏଦିଗରେ ସଚେତନ କରିବା ଓ ତାହା ଗ୍ରହଣ କରିବା ଲାଗି ପ୍ରସ୍ତୁତ କରିବାକୁ ସଙ୍କେତ ଦେବା ଏହାର ଅଭିପ୍ରାୟ । ଏହି ପରିବର୍ତ୍ତନ ଅବଶ୍ୟ ଆସିବ । ସମାଜର ବିବିଧ ଶ୍ରେଣୀ ଓ ସ୍ୱାର୍ଥର ସଂଘର୍ଷ ମଧ୍ୟରୁ ଯେଉଁସବୁ ସମସ୍ୟା ଆପେ ଆପେ ଜାତ ହୋଇଛି, ତାହା ସମାଧାନ ସ୍ୱତଃସିଦ୍ଧ । ବ୍ୟକ୍ତିବିଶେଷର ଆସ୍ଥା ଅବସ୍ଥା ପ୍ରତି ଏହା ଅପେକ୍ଷା କରିବ ନାହିଁ ।

ଏହି ପରିବର୍ତ୍ତନର ଗତିରୋଧ କରିବାକୁ ଯେଉଁମାନେ ଠିଆହେବେ, ସେମାନେ ସମାଜର ପ୍ରଗତିବିରୋଧୀ, ଶତ୍ରୁ । ବଞ୍ଚି ରହିବାର ପ୍ରବଳ ଇଚ୍ଛା ସତ୍ତ୍ୱେ ଯେଉଁମାନଙ୍କର ଆୟୁକାଳ ଶେଷ ହୋଇଯାଏ, ସେମାନେ ଭୂତପାଲିଟି ନାନା ଉପଦ୍ରବ କରନ୍ତି ବୋଲି ଶୁଣାଯାଏ । ତେବେ ଏ ଧରଣର ଭୂତର ଅସ୍ତିତ୍ୱ ବିଷୟରେ ଆମର ପୂରା ଅବିଶ୍ୱାସ ଅଛି । କିନ୍ତୁ ଆମର ଆଖିଆଗରେ ଦଳେ ଲୋକ ଭୂତ ପ୍ରେତପରି ଉପଦ୍ରବ କରିବାର ଦେଖାଯାଏ । ପରିବର୍ତ୍ତିତ ଓ ଉନ୍ନତ ସାମାଜିକ ବ୍ୟବସ୍ଥା ମଧ୍ୟରେ ଯେଉଁମାନଙ୍କର ବଞ୍ଚିରହିବା ଅସମ୍ଭବ ହୋଇଉଠେ, ସେମାନେ ପରିବର୍ତ୍ତନ ଓ ପ୍ରଗତି ବିରୁଦ୍ଧରେ ଠିଆ ହୋଇ ନିଜର ଅସ୍ତିତ୍ୱକୁ ସାବ୍ୟସ୍ତ କରିବାକୁ ଚେଷ୍ଟା କରନ୍ତି । ଜନସମାଜରେ ଏହି ପ୍ରତିକ୍ରିୟାଶୀଳ ଲୋକେ ହିଁ ପ୍ରକୃତ ଭୂତ ।

କେବଳ ବର୍ତ୍ତମାନ ମୁହୂର୍ତ୍ତରେ ସେ ପରିବର୍ତ୍ତନର ସ୍ରୋତ ଫିଟିଛି, ଆଗେ ସବୁ ଗତିହୀନ ଅବସ୍ଥାରେ ରହିଥିଲା, ଏହା ଆମେ କହିବାକୁ ଯାଉ ନାହୁଁ । ସବୁଅବସ୍ଥାରେ, ପ୍ରତିମୁହୂର୍ତ୍ତରେ ପରିବର୍ତ୍ତନର ଧାରା ପ୍ରବାହିତ ହେଉଛି । ଏହି ଧାରାର ସ୍ରୋତ କେତେ ବେଳେ ପ୍ରଖର ବା ଶିଥିଳ ଗତି ଧରିଛି । ଏହା ସାଧାରଣତଃ ଶିଥିଳ ଗତିରେ ପ୍ରବାହିତ ହେଉଥାଏ, ଶେଷରେ ଏପରି ଏକ ସମୟ ଆସେ, ଯେତେବେଳେ ଦୁଇକୂଳ ଉଚ୍ଛୁଳି ଉଠେ, ଗତି ଅତ୍ୟନ୍ତ ପ୍ରଖର ହୁଏ, ସବୁ ବାଧା ବନ୍ଧକୁ ଅତିକ୍ରମ କରି ଏହା ଚତୁର୍ଦ୍ଦିଗ ପ୍ଳାବିତ କରିଦିଏ । ଯୁଗ ପରିବର୍ତ୍ତନର ଏହି ମୁହୂର୍ତ୍ତ ବର୍ତ୍ତମାନ ଉପସ୍ଥିତ ।

ଏହି ପରିବର୍ତ୍ତନର ବାର୍ତ୍ତା ଓଡ଼ିଶାର ଦ୍ୱାରେ ଦ୍ୱାରେ ଆଘାତ କରି ଗଲାଣି, କିନ୍ତୁ ଅନେକ ସେ ବିଷୟରେ ସଚେତନ ନୁହନ୍ତି । ଏହି ବାର୍ତ୍ତା ଯେ ଆସି ଆଘାତ କଲାଣି, ଆଧୁନିକ ତାହାହିଁ ତାର ସ୍ୱରରେ ପ୍ରଚାର କରିବ । ଅର୍ଥାତ୍ କାକତାଳୀୟ ନ୍ୟାୟରେ ଆଧୁନିକ ଯଦି କିଛି କରିପାରିଲା, ତାହା ଆମର ଯଥେଷ୍ଟ । ଗଛରେ ତାଳଟିଏ ଫଳାଇବା ବା ପାଚିଲା ତାଳଟିଏ ଭିଆଣକରିବାର ଦୁରାଶା ଆଧୁନିକ ଘୋଷଣା କରି ନାହିଁ । ତାଳ ଫଳିବା ବା ପାଚିବା କାମ ଆପେ ଆପେ ହେବ । ପାଚିଲା ତାଳଟିକୁ ଉପଯୁକ୍ତ ଅବସ୍ଥାରେ ଝଡାଇବା ହିଁ ଆଧୁନିକ ଉଦ୍ଦେଶ୍ୟ ।

ଆଧୁନିକ କେବଳ ସାହିତ୍ୟ ପାଇଁ ସାହିତ୍ୟ ଚର୍ଚ୍ଚା କରିବାକୁ ଯାଉ ନାହିଁ । ଓଡ଼ିଶାରେ ଏହି ପୃଥିବୀବ୍ୟାପୀ ଆନ୍ଦୋଳନ ବିଷୟରେ





ଚେତନା ଆଣିବା ଏହାର ଲକ୍ଷ୍ୟ । ଓଡ଼ିଶା ସାହିତ୍ୟର ଅଭାବ ମୋଚନ ପାଇଁ କିମ୍ବା ସାହିତ୍ୟ କଳାରେ କିଛି ଗୋଟାଏ ନୂତନତ୍ୱ ସୃଷ୍ଟି କରିବା ଲାଗି ଆଧୁନିକର ଜନ୍ମ ନୁହେଁ । ସେ ଦିଗରେ ଓଡ଼ିଶାରେ ପତ୍ର ପତ୍ରିକାର ନିତାନ୍ତ ଅଭାବ ନାହିଁ ।

କଳା, ବିଜ୍ଞାନ, ସାହିତ୍ୟ, ଦର୍ଶନ ଆଦି ସମସ୍ତ ବିଷୟରେ ଦୁଇଟି ଦିଗ ଅଛି । ଗୋଟିଏ ଦିଗର କର୍ମ ସହିତ ସଂଯୋଗ ଅଛି । ତାହା କର୍ମତତ୍ପରତାର ପରିପୋଷକ ଅନ୍ୟଟିର କୌଣସି ବାହ୍ୟ ଉଦ୍ଦେଶ୍ୟ ନଥାଏ । ତାହାରି ଚର୍ଚ୍ଚାରେ ହିଁ ତାର ଉଦ୍ଦେଶ୍ୟର ଚରମ ପରିଣତି । ଶେଷୋକ୍ତ ବିଷୟକ ଲେଖା ଚର୍ଚ୍ଚା କରିବାକୁ ଆଧୁନିକ ର ସ୍ଥାନାଭାବ । ଆଧୁନିକ ଏପରି ଲେଖାର ପୋଷକତା କରିବ, ଯାହା ମାନବର ମନକୁ କର୍ମତତ୍ପର ହେବାପାଇଁ ଚଞ୍ଚଳ କରିବ । ପ୍ରବନ୍ଧ ହେଉ, କବିତା ହେଉ, ଗଳ୍ପ ଉପନ୍ୟାସ ନାଟକ ହେଉ, ଯାହା ମାନବକୁ କର୍ମକ୍ଷେତ୍ରକୁ ପ୍ରଧାବିତ କରିବ, ଯାହା କର୍ମର ଉଦ୍ଦୀପନା ମାନବ ମନରେ ଆଣି ଦେବ, ସେହିପରି ଲେଖା ବସ୍ତୁତଃ ଆଧୁନିକରେ ପ୍ରକାଶ ପାଇବ । ଆରାମ ଚୌକିରେ ବସି ପଢ଼ିବାଯୋଗ୍ୟ ସୂକ୍ଷ୍ମ ସୌଖୀନ ସାହିତ୍ୟ ପାଇଁ ଆଧୁନିକରେ ସ୍ଥାନ ପ୍ରଶସ୍ତ ନୁହେଁ ।

ସାହିତ୍ୟ ପତ୍ରପତ୍ରିକାଙ୍କର ସାଧାରଣ ନୀତି ହେଉଛି, "ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ ।" ସାପ ସହିତ ସେମାନଙ୍କର କୌଣସି ସମ୍ପର୍କ ନାହିଁ, ନିଜର ବାଡିଟି ବଜାୟ ରଖିବା ହିଁ ସେମାନଙ୍କର ଲକ୍ଷ୍ୟ । ଆଧୁନିକର କିନ୍ତୁ ତା ନୁହେଁ । ବାଡ଼ି ଭାଙ୍ଗିଯାଉ ପଛେ ସାପ ମରୁ ଏହାହିଁ ତାର ନୀତି । ତାର ପ୍ରଧାନ ଲକ୍ଷ୍ୟ ହେଉଛି ସାପକୁ ମାରିବା । ବାଡି ଉଞ୍ଚେଇ ସାପକୁ ଘଉଡି ଦେଲେ ଖାଲି ହେଲାନାହିଁ - ସେ ଆଘାତ କରିବାକୁ ଚାହେଁ, ବାଡ଼ି ଭାଙ୍ଗୁ ଅବା ରହୁ । ଯେଉଁସବୁ ବଦ୍ଧମୂଳ ଧାରଣା ଓ ସଂସ୍କାର ମାନବର ସାମାଜିକ ବ୍ୟକ୍ତିଗତ ଜୀବନକୁ ଆଚ୍ଛନ୍ନ କରି ରଖିଛି, ତାହାରି ମୂଳରେ ଏହାର ପ୍ରଥମ ଆଘାତ ।

ଅନ୍ୟାନ୍ୟ ପତ୍ରପତ୍ରିକା ମାନଙ୍କଠାରୁ ଆଧୁନିକ ଉଦ୍ଦେଶ୍ୟ ଭିନ୍ନ, ତାର କର୍ମକ୍ଷେତ୍ର ମଧ୍ୟ ପୃଥକ । ସେଥିଲାଗି ଓଡ଼ିଶାର କୌଣସି ପତ୍ରପତ୍ରିକା ଯେପରି ଏହାଠାରୁ ପ୍ରତିଯୋଗିତାର ଆଶଙ୍କା ନକରନ୍ତି ।

ଆଧୁନିକ ଆପାତତଃ ଏହି ଆକାରରେ ପ୍ରକାଶିତ ହେବ । ଏହାର ଉଦ୍ଦେଶ୍ୟ ସିଦ୍ଧି ଲାଗି ବହ୍ୱାଡମ୍ବର ଆବଶ୍ୟକତା ନାହିଁ ।





ଭଗବତୀଙ୍କ କଲମରୁ - ଆଧୁନିକ ପ୍ରଥମସଂଖ୍ୟାର ସମ୍ପାଦକୀୟ ଟିପ୍ପଣୀରୁ -

# ସାମୟିକୀ

## ନୂତନ ପତ୍ର ପତ୍ରିକା ଓ ପାଠକ :

### ନୂଆ ପତ୍ରିକାର ଆବିର୍ଭାବରେ ଜନ ସାଧାରଣଙ୍କ ଆଶଙ୍କା

ଓଡ଼ିଶାରେ ନୂଆ ପତ୍ରଟିଏ ବାହାରିଲେ ଅନେକ ନାକ ଟେକନ୍ତି । ପ୍ରଥମରୁ ତାର ପରମାୟୁ ବିଷୟ ଆଲୋଚନା କରନ୍ତି । ତାହା କରିବା ସ୍ୱାଭାବିକ, କାରଣ ଏ ଦେଶର ଶିଶୁମୃତ୍ୟୁ ଗୋଟିଏ ଅତି ସାଧାରଣ, ଅତି ପରିଚିତ ଘଟଣା । ଅନେକ ନୂଆ ପତ୍ରିକାର ଆବିର୍ଭାବରେ ଚମକି ଉଠନ୍ତି ଏବଂ ଯୁକ୍ତିର ଜାଲଦ୍ୱାରା ସେମାନଙ୍କର ପଡୋଶୀ ମାନଙ୍କର ମନକୁ ଆଚ୍ଛନ୍ନ କରନ୍ତି । ସେମାନେ ପଚାରନ୍ତି - ଓଡ଼ିଶାରେ କ'ଣ ଆଉ ନୂଆ ପତ୍ରିକା ପାଇଁ କ୍ଷେତ୍ର ଅଛି ? ଓଡ଼ିଆ ଭାଷାଭାଷୀ ଯଦି ଏକ କୋଟି ହୁଅନ୍ତି, ସେମାନଙ୍କ ଭିତରେ ଲେଖାପଢା ଜାଣିବା ଲୋକଙ୍କ ସଂଖ୍ୟା ଅତିକମ୍ । ଗଲା ଜନଗଣନାରେ ମୋଗଲ ବନ୍ଦୀର ଲେଖାପଢା ଜାଣିବା ଲୋକସଂଖ୍ୟା ଶତକଡ଼ା ସାତ । ଗଡଜାତ ଓ ମାଳ ଅଞ୍ଚଳରେ ଏହାର ଅନୁପାତ କମ୍ । ମୋଟ୍ ଉପରେ ଯଦି ଏମାନଙ୍କ ସଂଖ୍ୟା ଶତକଡ଼ା ପାଞ୍ଚ ଧରାଯାଏ ତେବେ ଓଡ଼ିଶାରେ ଲେଖାପଢା ଜାଣିବା ଲୋକସଂଖ୍ୟା ପାଞ୍ଚ ଲକ୍ଷ । ଏହା କିନ୍ତୁ ସେନ୍‌ସସ୍ ଲେଖାପଢା ଜାଣିବା ଲୋକସଂଖ୍ୟା; ମାତ୍ର ଏଥି ମଧ୍ୟରୁ ପତ୍ର ପତ୍ରିକା ପଢନ୍ତି କେତେଜଣ ? ଏହାର ଶତକଡ଼ା ପାଞ୍ଚ ହେଲେ ବଡ଼ । ତାହା ହେଲେ ପତ୍ର ପତ୍ରିକା ପଢିବା ଲୋକସଂଖ୍ୟା ହାରାହାରି ପଚିଶ ହଜାର । ଏହା ଭିତରେ ଦିଆ ଅଦିଆତ ଅଛନ୍ତି । ଅଦିଆଙ୍କୁ ବାଦ ଦେଲେ ମୋଟ ଉପରେ ଦଶହଜାର ଟଙ୍କା ଦିଆ ପାଠକ ହେଲେ ଖୁବ୍ । ଏମାନେ ପୁଣି ନାନା ପତ୍ର ପତ୍ରିକା ମଧ୍ୟରେ ବଣ୍ଟାବଣ୍ଟି ହେବେ । ସେଥିଲାଗି ପତ୍ରିକା ସଂଖ୍ୟା ଯେତିକି ବଢିବ ପ୍ରତ୍ୟେକ ଗ୍ରାହକ ସଂଖ୍ୟା ସେହି ଅନୁପାତରେ କମିବ । ଫଳରେ ପ୍ରତ୍ୟେକ ପତ୍ରିକାର ଆର୍ଥିକ ଅବସ୍ଥା ହେବ ଦୁଃସ୍ଥ । ଖାଲି ସେତିକି ନୁହେଁ, ଓଡ଼ିଶାରେ ଲେଖକର ବଡ ଅଭାବ । ପ୍ରତ୍ୟେକ ପତ୍ରିକା ପାଇଁ ଏ ଦେଶରେ ଲେଖା ଯଥେଷ୍ଟ ପରିମାଣରେ ମିଳେ ନାହିଁ । ସେହି ହେତୁରୁ ପତ୍ରିକା ସଂଖ୍ୟା ଯେତିକି ବଢିବ, ଲେଖାର ଅଭାବ ସେହି ପରିମାଣରେ ଅଧିକ ଅନୁଭୂତ ହେବ ।

ନୂତନ ପତ୍ରିକାର ଆବିର୍ଭାବରେ ଏହିପରି ନାନା ଯୁକ୍ତିର ଅବତାରଣା ହୋଇଥାଏ । କିନ୍ତୁ ଏପରି ଯୁକ୍ତି ନିତାନ୍ତ ଏକଦେଶଦର୍ଶୀ । ସବୁବେଳେ କ'ଣ ଓଡ଼ିଶାରେ ପାଠକ ସଂଖ୍ୟା ସମାନ ରହିଥିବ ? ତାର କ'ଣ କ୍ଷୟବୃଦ୍ଧି ନାହିଁ ? ପ୍ରତିବାଦ ହୋଇପାରେ - ଏହା କେହି କହୁ ନାହିଁ, କିନ୍ତୁ ଶିକ୍ଷାର ପ୍ରସାର ନ ହେଲେ ପାଠକ ସଂଖ୍ୟା ବୃଦ୍ଧି ପାଇବାର କୌଣସି ଆଶା ନାହିଁ । ଏ ଦିଗରେ ପାଶ୍ଚାତ୍ୟ ଦେଶର ପହଞ୍ଚିବାକୁ ଆମକୁ ଅନେକ ସମୟ ଲାଗିବ ।

### ପତ୍ରିକା ଦ୍ୱାରା ମଧ୍ୟ ଶିକ୍ଷାର ପ୍ରସାର ହୁଏ -

ଶିକ୍ଷାର ପ୍ରସାର କ'ଣ କେବଳ ସ୍କୁଲ କଲେଜର ସଂଖ୍ୟାବୃଦ୍ଧି ଉପରେ ନିର୍ଭର କରେ ? ପତ୍ର ପତ୍ରିକା ଓ ପୁସ୍ତକ ଦ୍ୱାରା କଣ ଶିକ୍ଷାର ପ୍ରସାର ହୁଏ ନାହିଁ ? ଲୋକେ ବହି ପଢିବା ପାଇଁ ଅକ୍ଷର ଚିହ୍ନନ୍ତି । କେବଳ ଅକ୍ଷର ଚିହ୍ନିବା ପାଇଁ କେହି ଅକ୍ଷର ଚିହ୍ନି ନାହିଁ । ଓଡ଼ିଶାରେ ଅନେକ ନିରକ୍ଷର ଭାଗବତ, ଦାର୍ଢ୍ୟତାଭକ୍ତି, ମଥୁରା ମଙ୍ଗଳ, ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ, ସାମନ୍ତସିଂହାର, ନହେଲେ ବୈଷ୍ଣବ ପାଣିଙ୍କ ଗୀତ ବୋଲିବା ପାଇଁ ଅକ୍ଷର ଚିହ୍ନନ୍ତି । ଓଡ଼ିଶାରେ ଅନେକ ସ୍ତ୍ରୀ ପୁରୁଷ ବଙ୍ଗଳା ଉପନ୍ୟାସ ଆଦି ପଢିବା ପାଇଁ ବଙ୍ଗଳା ଭାଷା ଶିଖନ୍ତି । ଲୋକଙ୍କୁ ସାହିତ୍ୟ ଯୋଗାଇଲେ ଲୋକେ ତାହା ପଢିବାକୁ ଆଗ୍ରହ ଦେଖାଇବେ । ଲୋକଙ୍କ ଠାରେ ପଢିବାରେ ପ୍ରୟୋଜନ ସୃଷ୍ଟି କରିବା ଦରକାର ।

### ନୂଆ ପତ୍ରିକା ନୂଆ ପାଠକ ତିଆରି କରେ -

ପ୍ରତ୍ୟେକ ନୂତନ ପତ୍ରିକା ନୂତନ ପାଠକ ତଥା ଗ୍ରାହକ ସୃଷ୍ଟି କରେ, ପାଠକଙ୍କ ସଂଖ୍ୟା ବୃଦ୍ଧି କରେ । ପାଞ୍ଚ ବର୍ଷତଳେ ଓଡ଼ିଶାରେ ଆଦୌ ଦୈନିକ ପତ୍ରିକା ନଥିଲା । ଓଡ଼ଆ ଜାଣିବା ଲୋକେ ଦୁନିଆର ହାଲଚାଲ୍ ଜାଣିବା ପାଇଁ ସାତଦିନ ଅପେକ୍ଷା କରୁଥିଲେ । ଏବେ ତିନି ତିନିଟା ଦୈନିକ ସମ୍ବାଦପତ୍ର ଓଡ଼ିଶାରେ ଚଳୁଛି । ବର୍ତ୍ତମାନ ଯଦି ଓଡ଼ିଆ ଭାଷାରେ କୌଣସି ଦୈନିକ ପତ୍ର ପ୍ରକାଶିତ ନହୁଏ, ଲୋକେ ରୀତିମତ ଗୋଟାଏ ଅଭାବ ଅନୁଭବ କରିବେ । ଏ ଅଭାବ ବୋଧଟା କ'ଣ ପାଞ୍ଚ ବର୍ଷତଳେ ଲୋକଙ୍କର





ନଥିଲା ? ଥିଲା, କିନ୍ତୁ ସୁପ୍ତାବସ୍ଥାରେ । ସେ ଅଭାବ ବୋଧକୁ ସ୍କୁଲ କଲେଜର ଶିକ୍ଷା ଜାଗରିତ କଲାନାହିଁ । ତାହା ଦୈନିକ ପତ୍ରିକା ପ୍ରକାଶିତ ହେବା ଦ୍ୱାରା ହିଁ ଜାଗରିତ ହୋଇ ପଡିଲା । ଜନତାର ଶିକ୍ଷା ସଂସ୍କୃତି ପାଇଁ ପତ୍ର ପତ୍ରିକା ଯେ କେତେଦୂର ଦାୟୀ ତାହା ଏହି ସାମାନ୍ୟ ଘଟଣାରୁ ଅନୁମିତ ହୁଏ ।

ଆଉ ମଧ ଦେଶର ଶିକ୍ଷା ପ୍ରଚାର ବହୁ ପରିମାଣରେ ପତ୍ରିକାର ପରିଚାଳନା ଉପରେ ନିର୍ଭର କରେ । ଗୋଟିଏ ସମ୍ବାଦପତ୍ରର କାଟ୍‌ତି କିଛି ବର୍ଷ ତଳେ ୭/୮ ହଜାର ହେଉଥିଲା । ଓଡ଼ିଶାର ଘରେ ଘରେ ଅତି ଅଶିକ୍ଷିତ ଗାଁରେ ମଧ ତାର ଆଦର ହେଉଥିଲା । ତାହା କେବଳ ସମ୍ପାଦକ ଓ ପରିଚାଳନାର ଯୋଗରେ । ବର୍ତ୍ତମାନ ସେହି ପତ୍ରର କାଟ୍‌ତି ସେତେବେଳର ଚାରିଭାଗରୁ ଭାଗେ ବି ନୁହେଁ । ଏପରିକି ୧୯୩୦, ୩୧ ସାଲ୍‌ରେ ଯେତେବେଳେ ଦେଶର ହାଲଚାଲ୍ ଜାଣିବା ଲାଗି ଲୋକେ ଉତ୍‌କଣ୍ଠିତ ହୋଇ ବସିଥିଲେ, ସେ ସମୟରେ ମଧ ତାର କାଟ୍‌ତି ବିଶେଷ ବୃଦ୍ଧି ପାଇନଥିଲା । ଖାଲି ଆମର ଅଶିକ୍ଷା, ଆମର ଦରିଦ୍ରତା ମୁଣ୍ଡରେ ଅଠାବୋଳି ଦେଇ ବସିଗଲେ ହେବନାହିଁ । ଅସଲ ଗଲ୍‌ତିଟା କେଉଁଠି, ତାହା ଆବିଷ୍କାର କରି ତାକୁ ସୁଧାରିବା ପାଇଁ ଚେଷ୍ଟା କରିବାକୁ ହେବ ।

**ପତ୍ରିକା ଅଳ୍ପକାଳ ସ୍ଥାୟୀ ହେଲେବି ତାର ଉପଯୋଗୀତା ଅଛି -**

ବହୁକାଳ ପ୍ରକାଶିତ ହେବା ପୂର୍ବରୁ ଯଦି କୌଣସି ପତ୍ର ପତ୍ରିକା ବନ୍ଦ ହୋଇଯାଏ, ତେବେ ସେ ଦେଶର କିଛି କାମ କରେ ନାହିଁ, ନୁହେଁ । ସେ ଯେତେ ଦିନ ରହେ, ସେତିକି ଦିନ କାମଦିଏ, ଆଉ ବେଶିଦିନ ଥିଲେ, ଆଉ ଅଧିକ କାମ ଦେଇଥାନ୍ତା । ଓଡ଼ିଶାରେ ସାହିତ୍ୟ ପତ୍ରିକାର ନିତାନ୍ତ ଅଭାବ ନାହିଁ । ତଥାପି କେତେକ ସାମୟିକ ପତ୍ରିକା ଅଳ୍ପଦିନ ପ୍ରକାଶିତ ହେଲାପରେ ବନ୍ଦ ହୋଇ ଯାଇଥିବାରୁ ଲୋକେ ତା, ପାଇଁ ଆଜି ସୁଦ୍ଧା ଅବ୍‌ଶୋଷ୍ କରୁଛନ୍ତି; ବନ୍ଦ ହେବାର ୨।୩ ବର୍ଷ ପରେ ମଧ ଲୋକେ ତାହାର ଗ୍ରାହକ ଶ୍ରେଣୀଭୁକ୍ତ ହେବା ପାଇଁ ଅର୍ଡର ପଠାଉଛନ୍ତି । କିନ୍ତୁ ଯେଉଁ ପତ୍ର ବା ପତ୍ରିକା ଗ୍ରାହକ ମାନଙ୍କର ଋଣ ପରିଶୋଧ ପୂର୍ବରୁ ବନ୍ଦ ହୋଇଯାଏ; ତାହା ଉପକାର ଅପେକ୍ଷା ଅପକାର କରେ ଅଧିକ । ଏହା ଏକ ରକମ ଯୁଆଚୋରୀ ।

**ନୂତନ ପତ୍ରିକାର ଆବିର୍ଭାବରେ ନୂତନ ଲେଖକର ଆବିର୍ଭାବ ହୁଏ -**

ନୂଆପତ୍ର ପତ୍ରିକା ଯେ କେବଳ ନୂଆ ପାଠକ, ନୂଆ ଗ୍ରାହକ ତିଆରି କରି ଶିକ୍ଷା ପ୍ରଚାର ସଙ୍ଗେ ସଙ୍ଗେ ନିଜର ଆର୍ଥିକ ଅବସ୍ଥାକୁ ସ୍ୱଚ୍ଛଳ କରେ, ତା ନୁହେଁ; ଏହା ନୂଆ ଲେଖକ ମଧ ଆବିଷ୍କାର କରେ, ଅନେକଙ୍କୁ ଲେଖିବାର ପ୍ରେରଣା ଦିଏ । ଏହା ଯେପରି ଜନସାଧାରଣଙ୍କ ଠାରେ ପଢ଼ିବାର ବୃତ୍ତିକୁ ଜାତ କରାଏ, ଲେଖକଙ୍କ ଠାରେ ମଧ ତାର ସୁପ୍ତ ପ୍ରବୃତ୍ତିକୁ ଜାଗରିତ କରାଏ । ଓଡ଼ିଶାର ପତ୍ରପତ୍ରିକା ମାନଙ୍କର ଇତିହାସ ପ୍ରତି ଦୃଷ୍ଟି ଦେଲେ କଥାଟା ଯେ କେତେଦୂର ସତ୍ୟ ତାହା ବୁଝାଯିବ । ଓଡ଼ିଶାର ପ୍ରତ୍ୟେକ ନୂତନ ପତ୍ରିକା ଭିତରଦେଇ ଦଳେ ନୂଆ ଲେଖକଙ୍କର ଆବିର୍ଭାବ ହେବାର ଦେଖାଯାଏ । ଏହାର କାରଣ ଖୋଜି ବସିଲେ ଅନେକ ମିଳିବ । ସେଥି ମଧ୍ୟରୁ ଗୋଟିଏ ହେଉଛି - ନୂଆ ପତ୍ରିକା ନୂଆ ଲେଖକପାଇଁ ଯେଉଁ ସୁବିଧା ସୁଯୋଗ ଯୋଗାଏ, ପୁରୁଣା ପତ୍ରିକା ତାହା କରେ ନାହିଁ ।

ନୂତନ ପତ୍ର ବା ପତ୍ରିକାର ଆବିର୍ଭାବରେ ଆମର ଲୋକେ ଆତଙ୍କିତ ହୁଅନ୍ତୁ ପଛେ, ଆଶଙ୍କିତ ଯେ ହୁଅନ୍ତି, ସେଥିରେ ସନ୍ଦେହ ନାହିଁ ଏବଂ ଏ ଆଶଙ୍କା ଯେ ନିତାନ୍ତ ଅହେତୁକ, ସେଥିରେ ମଧ ସନ୍ଦେହ ନାହିଁ ।





# ଓଡ଼ିଶାରେ ସାହିତ୍ୟିକ ସମାଲୋଚନା

## ସମାଲୋଚନା ପାଠକ ସାଧାରଣର ରୁଚି ଗଠନ ପାଇଁ ଦାୟୀ

ସାହିତ୍ୟିକ ରଚି ଗଠନ ପାଇଁ ସମାଲୋଚନା ଅତ୍ୟନ୍ତ ଉପଯୋଗୀ । ଲେଖକ ଉପରେ ଏହାର ଯେତେଦୂର ପ୍ରଭାବ ନପଡେ, ତାଠାରୁ ଅଧିକ ପ୍ରଭାବ ପଡେ ପାଠକ ଉପରେ । ଭଲ ଓ ଭେଲ୍ ମଧ୍ୟରେ ପାର୍ଥକ୍ୟ ଜଣାଇବା ଦ୍ୱାରା ଜନସାଧାରଣର ରଚିକୁ ମାର୍ଜିତ ଓ ଉନ୍ନତ କରିବାର ଏକମାତ୍ର ଉପାୟ ହେଉଛି ସମାଲୋଚନା । ସେଥିଗି ସମାଲୋଚକର ଦାୟିତ୍ୱ ବଡ଼ ଗୁରୁତର । କିନ୍ତୁ ଓଡ଼ିଶାରେ ଏ ଦାୟିତ୍ୱ ହୃଦୟଙ୍ଗମ କରି କେହି ସମାଲୋଚନା କରିବାର ଦେଖାଯାଏ ନାହିଁ ।

ଆମର ଅଧିକାଂଶ ସମାଲୋଚନା ସମାଲୋଚନା ନୁହେଁ, କୁତ୍ସା । ଏପରି କରିବାର ପ୍ରଧାନ ଉଦ୍ଦେଶ୍ୟ ହେଉଛି, ବ୍ୟକ୍ତିଗତ ବିଦ୍ୱେଷଭାବର ପରିତୃପ୍ତ । କାହାରି ସହିତ ଆମର ବ୍ୟକ୍ତିଗତ କଳହ ଥିଲେ, ଘର ଭିତରେ ଭିତରେତ ଯାହା ବକାବକି ହେବାର ହୁଏ, ସାହିତ୍ୟ ପତ୍ର ପତ୍ରିକାରେ, ସଭା ସମିତିରେ, ସର୍ବସାଧାରଣରେ ମଧ୍ୟ ଆମର ପୂର୍ବ ଦାଉ ସାଧିବାକୁ ଆମେ ଛାଡୁ ନାହିଁ । ଏ ଧରଣର ସମାଲୋଚନା ଯେଉଁ ରୁଚି ତିଆରି କରେ, ତାହା କଦର୍ଯ୍ୟ ବିଭତ୍ସ । ଲୋକେ ସ୍ୱଭାବତଃ ଅନ୍ୟର ପ୍ରଶଂସା ଶୁଣିବା ଅପେକ୍ଷା କୁତ୍ସା ଶୁଣିବାକୁ ଅଧିକ ଉତ୍କର୍ଣ୍ଣ । ସେହି ହେତୁରୁ ଏ ଧରଣର ସମାଲୋଚନା ଲୋକଙ୍କ ଭିତରେ ଇନ୍ଦ୍ରଜାଲ୍ ପରି କାମ କରେ । ଲୋକଙ୍କର ରୁଚିକୁ ଅବନତି ମାର୍ଗରେ ଚାଳିତ କରିବା ପାଇଁ ଏହା ବଡ଼ କାର୍ଯ୍ୟକାରୀ ହୋଇଉଠେ ଏବଂ ଜନସମାଜର କଳନାତୀତ ଅପକାର କରେ ।

## ଅଯଥା ନିନ୍ଦା ଅପେକ୍ଷା ଅଯଥା ପ୍ରଶଂସା ଅଧିକ କ୍ଷତିକାର

ଆମେ କହିବାକୁ ଯାଉ ନାହୁଁ ଯେ ସମାଲୋଚନା ପ୍ରଶଂସାରେ ପର୍ଯ୍ୟବେଶିତ ହେବା ଉଚିତ୍ । ଆମ ଦେଶରେ ଏପରି ସମାଲୋଚନା ବିରଳ ନୁହେଁ । ଆମର ସମାଲୋଚକ ଶତୃପକ୍ଷର ଯଦି କୁତ୍ସାରଚନା କରେ, ମିତ୍ର ପକ୍ଷରେ ଘୋଷଣା କରେ ପ୍ରଶଂସା । ଓଡ଼ିଶାର ଏକ ସମାଲୋଚନା ପତିକ୍ରାର କାର୍ଯ୍ୟ ଏହାହିଁ ଥିଲା । ବ୍ୟକ୍ତିଗତ ଆକ୍ରୋଶରହିତ ନିନ୍ଦାବାକ୍ୟ ଅଯଥା ପ୍ରଶଂସାବାକ୍ୟ ଅପେକ୍ଷା ଅଧିକ କ୍ଷତିକାରକ । ସମାଲୋଚନା ଦ୍ୱାରା ମନ୍ଦ ଲେଖାକୁ ଭଲ ବୋଲି ପ୍ରତିପାଦନ କରିବା, ଭଲ ଲେଖାକୁ ମନ୍ଦ ବୋଲି କହିବା ଅପେକ୍ଷା ରୁଚି ଗଠନ ପକ୍ଷରେ ଅଧିକ ଅନୁପଯୋଗୀ, ମୂଲ୍ୟହୀନ ଲେଖାରେ ଗୋଟାଏ ମୂଲ୍ୟ ନିହିତ କରିବା ଏକରକମ ଶଠତା । କାଚକୁ ମଣି ବୋଲି କହି ବୁଲିବା ଯେତେଟା ଦୋଷାବହ, ମଣିଷକୁ କାଚ କହିବା ସେତେ ନୁହେଁ । ମନ୍ଦକୁ ଭଲବୋଲି କହି ଆମର ସମାଲୋଚନା ଜାତିର ସାହିତ୍ୟିକ ରୁଚିକୁ ଦୂଷିତ କରେ । ଏ ଧରଣର ଦାୟିତ୍ୱହୀନ ସମାଲୋଚନା କୌଣସି ପତ୍ରପତ୍ରିକାରେ ଆଦୌ ପ୍ରକାଶ ପାଇବା ଉଚିତ୍ ନୁହେଁ ।

ସମାଲୋଚନା ସାହିତ୍ୟକୁ ଗତିଶୀଳ କରେ - ସମାଲୋଚନା କେବଳ ଲୋକଙ୍କର ରୁଚି ଗଠନରେ ସାହାଯ୍ୟ କରେନାହିଁ, ଏହାଦ୍ୱାରା ଆହୁରି ଏକ ମହତ୍ତର କାର୍ଯ୍ୟ ସାଧିତ ହୁଏ । କୌଣସି ବିଷୟରେ ସମାଲୋଚନା ବା ବାଦ ପ୍ରତିବାଦ ଆବିଷ୍କାର କରେ ପ୍ରକୃତ ସତ୍ୟ । ବାଦ ଓ ପ୍ରତିବାଦର ସମିଶ୍ରଣରେ ବୃହତ୍ତର ସତ୍ୟ ଜାତ ହୁଏ । ପଦାର୍ଥ ବିଜ୍ଞାନର ଗୋଟିଏ ନିୟମ ହେଉଛି ବିନା ସଂଘର୍ଷରେ ଗତି ଅସମ୍ଭବ, ରାସ୍ତା ଉପରେ ଆମର ପାଦର ସଂଘର୍ଷ ହେଉଥିବାରୁ ଆମେ ଚାଲିପାରୁଥାଉଁ । ରାସ୍ତାଟି ଯଦି ପୂର୍ଣ୍ଣତମ ରୂପେ ମସୃଣ ହୁଏ ତେବେ ସେଥିରେ ଆମର ଗତି ଅସମ୍ଭବ ହୋଇ ଉଠିବ, ଆମେ ତା ଉପରେ ଅଚଳ ହୋଇ ରହିବା, ଆମର ସାହିତ୍ୟକୁ ଗତିଶୀଳ କରିବାକୁ ହେଲେ ସଂଘର୍ଷ ଆବଶ୍ୟକ । ଏଥିପାଇଁ ସମାଲୋଚନା ବାଦ ପ୍ରତିବାଦ ଏକାନ୍ତ ଉପଯୋଗୀ ।

ମୋଟ ଉପରେ ସମାଲୋଚକ ବ୍ୟକ୍ତିଗତ ସମ୍ପର୍କ ଭୁଲିଯାଇ ସଂସ୍କାରଶୂନ୍ୟ ଚିତ୍ତରେ ସମାଲୋଚନା କରିବା ଦରକାର । ଏପରି ସମାଲୋଚନା ସାହିତ୍ୟକୁ ପ୍ରଗତିଶୀଳ କରିବା ସଂଗେ ସଂଗେ ପାଠକ ସାଧାରଣ ରୁଚି ଗଠନରେ ସାହାଯ୍ୟ କରେ ।

(ପ୍ରଥମବର୍ଷ ପ୍ରଥମ ସଂଖ୍ୟା, ମେ ୧୯୩୬)







'ଆଧୁନିକ'ର ଦ୍ୱିତୀୟ ସଂଖ୍ୟାରେ ପ୍ରକାଶିତ ନବକୃଷ୍ଣ ଚୌଧୁରୀଙ୍କ ସଂପାଦକଙ୍କୁ ଚିଠି

# ବାଦାନୁବାଦ

– କମ୍ରେଡ ସମ୍ପାଦକ, ଏକ ସଙ୍ଗୀନ ବିପ୍ଳବ ରାଜନୀତି-ଅର୍ଥନୀତି କ୍ଷେତ୍ରରେ ସମାସନ୍ନ !

"ଆଧୁନିକ" ସକାଶେ ଲେଖା ଦେବା ପାଇଁ ତମର ତାଗଦା ଉପରେ ତାଗଦା । ମାସିକ ପତ୍ରରେ ମୋ ଲେଖା ବାହାରିବ ଏ ଗୌରବର ଲୋଭ ମଧ ଭିତରୁ ମତେ ଠେଲା ଦେଉଛି । କିନ୍ତୁ ତମର ଓ ମୋର ନସୀବ ଖରାପ । ଲେଖି ବସିଲା କ୍ଷଣି ମୋ ଭିତରେ ଯେଉଁ ଖରଦୃଷ୍ଟି ସମାଲୋଚକ ପୁରୁଷଟି ଅଛନ୍ତି ସେ ବିଘ୍ନ ପହଞ୍ଚଉଛନ୍ତି । ମୋ ଲେଖା ତମର ଓ ଅନ୍ୟ ପାଠକ ମାନଙ୍କ ମନକୁ ପାଇବକି ନାହିଁ ଜାଣିବା ପୂର୍ବରୁ ମୋରିଠାରୁ କାଟଖାଇ ଅଳିଆ ଟୋକେଇକୁ ଯାଉଛି । ଏପରି ଅବସ୍ଥାରେ ଉପାୟ କ'ଣ ? ବହୁତ ଭାବିଚିନ୍ତି ତମକୁ ଖଣ୍ଡେ ଲମ୍ୱାଚିଠି ଲେଖି ସନ୍ତୁଷ୍ଟ କରିବାକୁ ଠିକ୍ କରିଛି ।

ପ୍ରଥମ ସଂଖ୍ୟା "ଆଧୁନିକ" ପଢ଼ି ସାଧାରଣ ପାଠକଙ୍କ ମନରେ କି ପ୍ରତିକ୍ରିୟା ହେଉଛି ସେଟା ଜାଣିବା ପାଇଁ "ଆଧୁନିକ"ର ବନ୍ଧୁ ଭାବରେ ମୁଁ ଟିକିଏ ଚେଷ୍ଟା କରିଥିଲି ଭଗବାନ ବିଶ୍ୱାସୀ ମଣିଷ ମନରେ ସବୁଠାରୁ ବଦ୍ଧମୂଳ ଓ ଗଭୀର ସଂସ୍କାର ବୋଲି ଅନେକ ସମୟରେ ଧରିନିଆଯାଇଥାଏ । ତା' ହୋଇଥିଲେ କାଳିନ୍ଦୀ ବାବୁଙ୍କ "ବିଦାୟ ଭଗବାନ" କବିତା ଉପରେ ସବୁଠାରୁ ବେଶି କୋପଦୃଷ୍ଟି ପଡିଥାନ୍ତା । କିନ୍ତୁ ବାସ୍ତବରେ ତା ହୋଇନାହିଁ । ବିବାହ ସମସ୍ୟା ପ୍ରବନ୍ଧଟି ହିଁ ସବୁଠାରୁ ବେଶି ଚାଞ୍ଚଲ୍ୟ ସୃଷ୍ଟି କରିଛି । ଏଥିରୁ ଅନୁମାନ ହୁଏ ଭଗବାନ୍ ବିଶ୍ୱାସଠାରୁ ସଭ୍ୟ ମଣିଷର ଯୌନ ସଂସ୍କାରଟା ବେଶୀ ବଦ୍ଧମୂଳ । ଫ୍ରଏଡ ଆଦି ଆଧୁନିକ ମନସ୍ତତ୍ତ୍ୱବିଦ୍‌ମାନେ କହନ୍ତି ଯେ ଯୌନବୃତ୍ତି ମଣିଷର ସବୁଠାରୁ ଶକ୍ତିଶାଳୀ ବୃତ୍ତି । ଆଧୁନିକ ମନସ୍ତତ୍ତ୍ୱର ଆଲୋଚନା ଯେ କରିନାହିଁ ସେ ଆଦୌ କଳ୍ପନା କରିପାରିବ ନାହିଁ ଏହି ଯୌନବୃତ୍ତି କେଡେ ଶକ୍ତିଶାଳୀ । କାବ୍ୟ, ଇତିହାସ, ପୁରାଣ ଠାରୁ ଆରମ୍ଭ କରି ସରକାରୀ ଓ ଜମିଦାରୀ କଚିରୀ ପର୍ଯ୍ୟନ୍ତ ନାନା ଠାରେ ଏହି ଯୌନବୃତ୍ତି ମଣିଷର ବ୍ୟକ୍ତିଗତ – ତଥା ସାମାଜିକ ଜୀବନରେ କିପରି ଉତ୍ପାତ ଲଗାଇଛି, ତାର ଚିତ୍ର ଦେଖିବାକୁ ମିଳେ । ଏହାଛଡା ପ୍ରତ୍ୟେକ ବ୍ୟକ୍ତିର ବହୁ ଯୌନ ଅଭିଜ୍ଞତା ରହିଛି ଯାହାକି ଅନ୍ୟ ନିକଟରେ ଗୁପ୍ତ ହେଲେ ହେଁ ନିଜ ପାଖରେ ନୁହେଁ । ତଥାପି ଏ ସବୁକୁ ମିଶାଇଲେ ମଧ ଯୌନବୃତ୍ତିର ଶକ୍ତିର ଶହେ ଭାଗରୁ ଭାଗକର ସୁଦ୍ଧା ପରିଚୟ ମିଳେ ନାହିଁ । ଆଧୁନିକ ମନୋବିଜ୍ଞାନ ଏକଥା ନିଃସନ୍ଦେହ ଭାବରେ ପ୍ରମାଣ କରିଛନ୍ତି ଯେ ମଣିଷର ଗୋଟିଏ ଅବଚେତନ ସତ୍ତା ଅଛି । ତାର ତା ଜୀବନ ଉପରେ ସଚେତନ ମନଠାରୁ ଢେର ବେଶି ପ୍ରଭାବ । ଯୌନବୃତ୍ତିର ଅସଲ କର୍ମକ୍ଷେତ୍ର ଏହି ଅଚେତନ ରାଜ୍ୟରେ । ମଣିଷ ତାର ବୁଦ୍ଧି ବିବେକ ଓ ସଂଯମ ଶକ୍ତି ପ୍ରୟୋଗ କରି ତାର ବ୍ୟକ୍ତିଗତ ଓ ସାମାଜିକ ଜୀବନକୁ ନିୟନ୍ତ୍ରଣ କରିବାକୁ ହଜାର ଚେଷ୍ଟା କରି ସଫଳ ହୋଇପାରୁ ନାହିଁ ଏହି "ଅଚେତନ" ର ପ୍ରଭାବ ଯୋଗୁଁ ।

ରସାୟନ ବିଜ୍ଞାନର ତତ୍ତ୍ୱ ନଜାଣି କୌଣସି ରାସାୟନିକ ଏକ୍‌ସପେରିମେଣ୍ଟ କରିବା ଯେପରି ବିଡମ୍ୱନା, ସେହିପରି ମଣିଷର ସଚେତନ ଓ ଅଚେତନ ମନରେ ତତ୍ତ୍ୱ ନଜାଣି ଜୀବନକୁ ନିୟନ୍ତ୍ରଣ କରିବାକୁ ଚେଷ୍ଟା କରିବା – ସମାଜ ତଥା ବ୍ୟକ୍ତିପାଇଁ ନୈତିକ ବିଧି ନିଷେଧ ଗଢିବା ସେହିପରି ବିଡମ୍ୱନା । ଆଦିମ କାଳରୁ ଆଜି ପର୍ଯ୍ୟନ୍ତ ମାନବ ସମାଜର ଇତିହାସ ଆଲୋଚନା କଲେ ଏବଂ ଏହି ବର୍ତ୍ତମାନ ଯୁଗରେ ମଧ ବିଭିନ୍ନ 'ସଭ୍ୟ' ଓ 'ଅସଭ୍ୟ' ଜାତିର ସାମାଜିକ ଓ ନୈତିକ ବିଧି ବିଧାନର ବୈଚିତ୍ର୍ୟ ଲକ୍ଷ୍ୟ କଲେ ଖୁବ୍ ପରିଷ୍କାର ଜଣାପଡେ ମଣିଷ କେତେ ପ୍ରକାରର ଏକ୍‌ସପେରିମେଣ୍ଟ କରିଛି ଓ କରୁଛି । କୃଷି ବିଜ୍ଞାନ ନଜାଣି ଆମ ଗାଁର ଚାଷୀମାନଙ୍କର ବେଶିଫଳ ଫଳେଇବା ପାଇଁ ଅଷ୍ଟଶମ୍ଭୁଙ୍କ ପାଦୁକ ପାଣି ଆଣି ଗଛରେ ଛିଞ୍ଚିବା ଯାହା, ମନୋବିଜ୍ଞାନ ଓ ସମାଜ ବିଜ୍ଞାନ ନଜାଣି ବ୍ୟକ୍ତିଗତ ଓ ସାମାଜିକ ଜୀବନକୁ ସୁସ୍ଥ ଓ ଉନ୍ନତ କରିବା ପାଇଁ ଆମର ଅଧିକାଂଶ ବିଧି ନିଷେଧ ଓ ଧାରଣା ମଧ ସେୟା । ବିବାହ ଗୋଟିଏ ଅତି ପ୍ରାଚୀନ ଓ ଆଦିମ ବିଧି ନିଷେଧ ମୂଳକ ଅନୁଷ୍ଠାନ, ଶ୍ରୀ ଉତ୍କଳୀୟ "ଆଧୁନିକ"ରେ ଏହି ଅନୁଷ୍ଠାନଟିକୁ ବିଜ୍ଞାନର ଆଲୋକରେ ପରୀକ୍ଷା କରିବାକୁ ଚେଷ୍ଟା କରିଛନ୍ତି । କିନ୍ତୁ ତାଙ୍କର ଲେଖାଟି ଅତି ସଂକ୍ଷିପ୍ତ ହୋଇଥିବାରୁ – ସେ ପାଠକଙ୍କ ସଂସ୍କାରରେ କେବଳ ଆଘାତ କରିବାକୁ ସମର୍ଥ ହୋଇଛନ୍ତି । ତେବେ ଏହି ଆଘାତ ଦେବା ଫଳରେ ଯଦି ଏ ବିଷୟରେ ବିଶଦ ଆଲୋଚନା ହୁଏ ତାହାହେଲେ ଭଲ ହେବ । କିନ୍ତୁ ମୁଁ ଦେଖୁଛି ଯେଉଁମାନେ ଶ୍ରୀ ଉତ୍କଳୀୟଙ୍କ ଲେଖାଟିକୁ ନିନ୍ଦା କରୁଛନ୍ତି, ସେମାନେ କେବଳ ନାକ ଟେକିବା ଛଡା ଆଉ କିଛି କରିବାକୁ ନାରାଜ । ଏପରି ଅବସ୍ଥାରେ ଶ୍ରୀ ଉତ୍କଳୀୟଙ୍କୁ ଅନୁରୋଧ, ସମାଜ ମଧରେ ଏ ବିଷୟରେ ବୈଜ୍ଞାନିକ ଚିନ୍ତା ଓ ବିଜ୍ଞାନ ସମ୍ମତ ଧାରଣା ଯେପରି ବାସ୍ତବରେ ପ୍ରସାର ହେବ ସେ ଉଦ୍ଦେଶ୍ୟରେ



ଧାରାବାହିକ ଭାବରେ ଓ ବିଶଦ ଭାବରେ ବିବାହ ସମସ୍ୟା ସମ୍ବନ୍ଧରେ ଲେଖା ପ୍ରକାଶ କରନ୍ତୁ । ମୋର ମନେ ହୁଏ, ଦୁନିଆରେ ବିଭିନ୍ନ ଦେଶରେ ବିଭିନ୍ନ କାଳରେ ଯୌନ ମିଳନ ସମ୍ବନ୍ଧରେ କିପରି ବିଭିନ୍ନ ପ୍ରକାର ବିଧି ନିଷେଧ ଓ ଧାରଣା ଥିଲା ଓ ଅଛି ସେ ସମ୍ବନ୍ଧରେ, କୌଣସି ମତାମତ ପ୍ରକାଶ ନକରି କେବଳ ତାହାର ବର୍ଣ୍ଣନା ପ୍ରକାଶ କଲେ ପାଠକଙ୍କ ଦୃଷ୍ଟିର ସଂକୀର୍ଣ୍ଣତା ବହୁ ପରିମାଣରେ ଦୂର ହୋଇଯିବ । ଯାହା ଅଛି ତାହା ଦୁନିଆ ସାରା ଚିରକାଳ ଥିଲା, ଏହି ଧାରଣା ଦୂର ନହେବା ଯାଏ ଯାହା ଅଛି ତାହା ରହିବା ଉଚିତ୍ କି ନା ଏ କଥା ବିଚାର କରିବା ପାଇଁ ଆମର ମନ ପ୍ରସ୍ତୁତ ହୁଏ ନାହିଁ ।

ବିବାହ ବନ୍ଧନରୁ ମୁକ୍ତ ହୋଇ ଯୌନ ସ୍ୱାଧିନତା ଭୋଗ କରିବା ପାଇଁ ଶ୍ରୀ ଉତ୍କଳୀୟ ନରନାରୀଙ୍କୁ ଆହ୍ୱାନ କରିଛନ୍ତି । ଯୌନ ସ୍ୱାଧୀନତା କଥାଟା ଶୁଣିଲାକ୍ଷଣି ହଠାତ୍ ଗୋଟାଏ ଉଚ୍ଛୃଙ୍ଖଳ ଇନ୍ଦ୍ରିୟ ସମ୍ଭୋଗ ଓ ବ୍ୟଭିଚାରର ଚିତ୍ର ଆମ ଆଖି ଆଗରେ ନାଚି ଯାଉଛି । ଏଟା ଆମର ରୁଗ୍ଣ ଓ ବିକାରଗ୍ରସ୍ତ ମାନସିକ ଅବସ୍ଥାରେ ଲକ୍ଷଣ । ଅସ୍ୱାଭାବିକ ଓ ଅସ୍ୱାସ୍ଥ୍ୟକର ସାମାଜିକ୍ ବିଧି ନିଷେଧ ଏପରି ମାନସିକ ଅବସ୍ଥାର ହେତୁ । ସେଦିନ ଜଣେ ଜାପାନ ଫେରନ୍ତା ବନ୍ଧୁଙ୍କଠାରୁ ଶୁଣିଥିଲି ଯେ ଜାପାନରେ ଅନେକ ପୁରୁଷ ସ୍ତ୍ରୀ ଉଲଗ୍ନ ହୋଇ ଏକା ଜାଗାରେ -ଗାଧୋଇବାର ପ୍ରଥା, ବହୁ କାଳରୁ ଥିଲା । ଏବେ ୟୁରୋପୀୟଙ୍କ ଶିକ୍ଷାରେ ସେମାନେ ଏ ପ୍ରଥାକୁ ଟିକିଏ ବଦଳେଇ ଦେଇଛନ୍ତି । ପୁରୁଷ ସ୍ତ୍ରୀ ଏକା ଯାଗାରେ ଉଲଗ୍ନ ହୋଇ ଗାଧୋଇଛନ୍ତି, ମଝିରେ ଗୋଟିଏ ପରଦା ରହୁଛି, କିନ୍ତୁ ପାଣିରୁ ବାହାରି ଲୁଗା ପିନ୍ଧିବାକୁ ଗଲା ବେଳେ ପରସ୍ପର ସାମନାରେ ଯିବା ଆସିବା କରୁଛନ୍ତି । ଏସବୁ କଥା କଳ୍ପନା କଲାକ୍ଷଣି ଆମର ଲାଳସା ପୂର୍ଣ୍ଣ ମନରେ ବିକାର ଆସୁଛି କିନ୍ତୁ ମୋର ବନ୍ଧୁ କହୁଥିଲେ କୌଣସି ଜାପାନୀର ମନରେ ଏପରି ବିକାର ସେ ଲକ୍ଷ୍ୟ କରି ନାହାନ୍ତି । ସୋଭିଏତ୍ ରୁଷିଆରେ ଯୌନ ସ୍ୱାଧୀନତାର ପରୀକ୍ଷା ଚାଲିଛି ବୋଲି ଶ୍ରୀ ଉତ୍କଳୀୟ ଲେଖିଛନ୍ତି । ଏଥିରୁ କେହି ଯେପରି ମନେ ନକରନ୍ତି ସେଠାକାର ସ୍ତ୍ରୀ ପୁରୁଷ ମାନେ ଯଥେଚ୍ଛା ଇନ୍ଦ୍ରିୟର ସମ୍ଭୋଗରେ ଉନ୍ମତ୍ତ ରହିଛନ୍ତି । ଇଂଲଣ୍ଡ, ଆମେରିକା ଓ ୟୁରୋପୀୟ ଦର୍ଶକମାନେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି, ସୋଭିଏଟ୍ ଋଷର ସାଧାରଣ ଯୌନ ଜୀବନ ଅନ୍ୟ ଦେଶ ତୁଳନାରେ ସୁରୁଚି ସମ୍ପନ୍ନ ଓ ଉନ୍ନତ । ତାର ଗୋଟିଏ କାରଣ ଋଷ ନାରୀଯୌନସ୍ୱାଧୀନତା ସଙ୍ଗେ ସଙ୍ଗେ ଆର୍ଥିକ ସ୍ୱାଧୀନତାଲାଭ କରିଛନ୍ତି । ସମାଜର ବିବିଧ ସମସ୍ୟା ସମାଧାନର ଦାୟିତ୍ୱ ସେ ପୁରୁଷ ସହିତ ସମାନ ଭାବରେ ମୁଣ୍ଡେଇଛି । ସେ ନିଜକୁ ପୁରୁଷର ଭୋଗର ସାମଗ୍ରୀ ବୋଲି ଭାବିବାକୁ ଘୃଣାକରେ ଏବଂ ସେଥି ସକାଶେ ପୁରୁଷ ଯୌନ ବାସନା ଜାଗ୍ରତ କରାଇଲା ଭଳି ବେଶଭୂଷା ବା ଭାବଭଙ୍ଗୀ ସେ କରେନାହିଁ । ଆମ ଦେଶ ପବିତ୍ର ଆଧ୍ୟାତ୍ମିକ ଦେଶ ବୋଲି ଏବେ ସୁଦ୍ଧା କେହି କେହି କହୁଥାଆନ୍ତି । କିନ୍ତୁ କାଳିଦାସଙ୍କଠାରୁ ଆରମ୍ଭ ଉପେନ୍ଦ୍ର ଭଞ୍ଜଙ୍କ ପର୍ଯ୍ୟନ୍ତ ଆମ ଦେଶର ପ୍ରତ୍ୟେକ କବି ନାରୀକୁ ପୁରୁଷର ସମ୍ଭୋଗର ସାମଗ୍ରୀଛଡା ଅନ୍ୟ କିଛି - ଭାବରେ ଚିତ୍ରଣ କରି ନାହାନ୍ତି । ସମସାମୟିକ ଭାରତୀୟ ଓ ଉତ୍କଳୀୟ ସମାଜର ଚିତ୍ର ମାନଙ୍କରୁ ମିଳେ । କୃଷ୍ଣଙ୍କ ଗୋପଲୀଳାର ଆମେ ଆଧ୍ୟାତ୍ମିକ ବ୍ୟାଖ୍ୟା କରିପାରୁ; କିନ୍ତୁ କାବ୍ୟ, ଇତିହାସ, ରତିଶାସ୍ତ୍ର ଆଦି ନାନା ସୂତ୍ରରୁ ଓ ଆମ ପ୍ରାଚୀନ ସାଆନ୍ତିଆ କାଳର ଯେଉଁ ସବୁ ବହୁମୂଲ୍ୟ ନମୂନା ଏବେସୁଦ୍ଧା ଆମ ଦେଶୀୟରାଜ - ଅନ୍ତଃପୁର ମାନଙ୍କରେ ରହିଯାଇଛି ସେଥିରୁ ପରିଷ୍କାର ଜଣାପଡୁଛି ଯେ ଯୌନ ଭୋଗ ବିଳାସରେ ଆମ 'ଆଧ୍ୟତ୍ମିକ' ଭାରତ ଜଡବାଦୀ ପାଶ୍ଚାତ୍ୟ ଦେଶମାନଙ୍କଠାରୁ ବହୁତ ଅଗ୍ରସର ।

କମ୍ରେଡ୍ ସମ୍ପାଦକ କ୍ଷମା କରିବ । ଆହୁରି କେତେକ ବିଷୟରେ ଚିଠିରେ ଲେଖିବାର ଇଚ୍ଛା ଥିଲେ ମଧ ଲେଖିବାର ସମୟ ନାହିଁ । ସାହିତ୍ୟ କ୍ଷେତ୍ରରେ 'ଆଧୁନିକ' ବିପ୍ଲବ ଆଣିବାକୁ ବସିଛି । ତା'ଠାରୁ ଏକ ସଙ୍ଗିନ୍ ବିପ୍ଳବ ରାଜନୀତି ଓ ଅର୍ଥନୀତି କ୍ଷେତ୍ରରେ ସମାସନ୍ନ । ବର୍ତ୍ତମାନ ସେଆଡେ ମନ ଦେବାକୁ ହେବ । ସେ ବିପ୍ଳବ ଅବଶ୍ୟମ୍ଭାବୀ ଜାଣି ବାସ୍ତବ ପୁଞ୍ଜିପତିମାନଙ୍କ ମନରେ ଭୟ ଜନ୍ମିଲାଣି । କିନ୍ତୁ ଭାରତର ଆଧ୍ୟାତ୍ମିକତା ଓ ବୈଶିଷ୍ଟ୍ୟକୁ ପୁଞ୍ଜିକରି ଯେଉଁ ନେତା ଓ ଖବର କାଗଜ ବାଲାମାନେ କାରବାର ଚଳେଇଛନ୍ତି, ସେମାନେ କହୁଛନ୍ତି ଏଦେଶ ମାଟିରେ ସାମ୍ୟବାଦ ମଞ୍ଜି ପୋତିଲେ ଗଛ ହେବ ନାହିଁ - ଗଛ ହେଲେ ଉଧେଇବ ନାହିଁ । ଆମ ଦେଶରେ କୋଉ କୋଉ ଗଛ ବିଦେଶରୁ ଆସିଲେ ସୁଦ୍ଧା ଉଧେଇବ, କୋଉଗୁଡ଼ାକ ଉଧେଇବ ନାହିଁ ସେ କଥା ଯୋଉ ପୋଥି ଖଣ୍ଡକରେ ଅଛି ସେ ପୋଥିଖଣ୍ଡକ ଏ ପର୍ଯ୍ୟନ୍ତ ମୋର ହସ୍ତଗତ ହୋଇନାହିଁ । ଯୋଉ ପାଥିରେ ଅଛି - ବ୍ରାହ୍ମଣଙ୍କ ଛଡା ଆଉ କେହି ନଡିଆଗଛ ପକେଇବେ ନାହିଁ କିମ୍ବା - ଯାହାଘରେ ପୂର୍ବରୁ କେହି ପକେଇ ନାହାନ୍ତି ସେ ପକାଇବ ନାହିଁ - ସେ ଘରେ ପୂର୍ବରୁ ଆୟୁ ନାହିଁ ସେ ଆୟୁ ଲଗେଇବ ନାହିଁ ସେହି ପୋଥିରେ ବୋଧହୁଏ ସେକଥାଟା ମଧ ଅଛି । ଯାହା ହେଉଛି, ଏ ବିଷୟରେ ପରେ ସମୟ ହେଲେ ଲେଖା ଲେଖି କରିବି ।

(ଇତି)
ନବଚୌଧୁରୀ





## ନବକୃଷ୍ଣ ଚୌଧୁରୀଙ୍କର ଚିଠିର ଉତ୍ତରରେ ଭଗବତୀଙ୍କର ଜବାବ

# ଚିଠିର ଜବାବ୍

**"ଆପଣଙ୍କ କଲମ ତରବାରୀ କିମ୍ବା ବନ୍ଧୁକ ନହେଲେବି ନିହାତି ଗୋଟିଏ ହାତୁଡ଼ି ବା ଦା ହେବ ନିଶ୍ଚୟକରି ଆମେ ଦ୍ୱାରସ୍ଥ**

ନବବାବୁ,

ଆମେ "ଆଧୁନିକର" ନିଜ କଥାରେ ଘୋଷଣା କରି ଦେଇଛୁ ଯେ "ଆଧୁନିକ" କେବଳ ସାହିତ୍ୟ ପାଇଁ ସାହିତ୍ୟ ଚର୍ଚ୍ଚା କରିବାକୁ ଯାଉନାହିଁ । ଯେଉଁ ଲେଖା ମାନବକୁ କର୍ମକ୍ଷେତ୍ରକୁ ପ୍ରଧାବିତ କରିବ, ତାକୁ କର୍ମ ପ୍ରବଣ କରିବ, ସେହିପରି ଲେଖା ଆଧୁନିକରେ ପ୍ରକାଶିତ ହେବ । ଏ ଧରଣର ଲେଖା ଆପଣଙ୍କର କଲମରୁ ବାହାରି ପାରେ - ଆମର ଭରସା । ଆମେ ଶୁଣୁ, କେତେକଙ୍କର କଲମ କଲମନୁହେଁ, ତାହା ତରବାରୀ କିମ୍ବା ବନ୍ଧୁକ । କିନ୍ତୁ ଆମେ ଏଠାରେ ତ କଲମକୁ ସେପରି ଭାବରେ ବ୍ୟବହାର କରିବା ସମ୍ଭବ ନୁହେଁ । ଏ ଦେଶ ଲୋକଙ୍କ ପାଖରେ ସେ ସବୁ ଜିନିଷ ଯେ କେବଳ ଯାଦୁଘରର ସାମଗ୍ରୀ ହୋଇ ପଡିଛି । ଏପରି ଅବସ୍ଥାରେ ଆପଣଙ୍କର କଲମଟା ଯେ ଗୋଟାଏ ତରବାରୀ କି ବନ୍ଧୁକ ହୋଇଥିବ - ସେ ଦୁରାଶା ଆମର ନାହିଁ । ତେବେ ଆପଣଙ୍କର କଲମ, ଆଉ କିଛି ନହେଲେ, ନିହାତି ଗୋଟାଏ ହାତୁଡି କିମ୍ବା ଦା ହେବ ନିଶ୍ଚୟ କରି ଆମେ ଆପଣଙ୍କ ଦ୍ୱାରସ୍ଥ ।

ଆଧୁନିକର ପ୍ରଥମ ସଂଖ୍ୟା ପାଇବାପରେ ଜଣେ ବନ୍ଧୁ ପଚାରିଥିଲେ, "ଏହାଦ୍ୱାରା ଅଧର୍ମ ପ୍ରଚାର କରିବାକୁ ଚାହିଁ ନା ଆଉ କିଛି" ? ଆଧୁନିକରେ ପ୍ରକାଶତ କେତେକ ଲେଖା - କେବଳ ତାଙ୍କର ନୁହେଁ - ଆଉ ଅନେକଙ୍କର ମନରେ ଏପରି ସନ୍ଦେହ ଆଣି ଦେଇଛି । ଦୁଃଖର ବିଷୟ ଏସବୁ ବିଷୟରେ ବୈଜ୍ଞାନିକ ନଜିର ଦେଇ ଯୁକ୍ତିଯୁକ୍ତ ଭାବରେ ପ୍ରତିବାଦ କରିବାକୁ କେହି ପ୍ରସ୍ତୁତ ହେଉ ନାହାନ୍ତି । ବର୍ତ୍ତମାନ ସବୁ ବିଷୟକୁ ନିଜର ବିଚାରବୁଦ୍ଧି ଓ ବିଜ୍ଞାନର ମାପକାଠି ଦ୍ୱାରା ପରଖ କରିବାର ଯୁଗ ଆସିଛି । କୌଣସି କିମ୍ବା କୌଣସି ପ୍ରଥା ବହୁ କାଳରୁ ଆମ ଭିତରେ ରହିଯାଇଛି ବୋଲି ତାହା ପବିତ୍ର ଏବଂ ତା ବିରୁଦ୍ଧରେ କିଛି ଉଚ୍ଚାରଣ କରିବା ମହାପାପ, କହିଦେଲେତଖାଲି ହେବ ନାହିଁ ସେଥିପାଇଁ ବିଜ୍ଞାନ ସମ୍ମତ ପ୍ରମାଣ ଆବଶ୍ୟକ ।

ଶ୍ରୀ ଉତ୍କଳୀୟଙ୍କର ବିବାହ ସମସ୍ୟା ପ୍ରବନ୍ଧଟି ପାଠକଙ୍କ ସଂସ୍କାରରେ ଆଘାତ କରିପାରିଛି ବୋଲି ଆପଣ ଲେଖିଛନ୍ତି । ବାସ୍ତବିକ ଏ ପ୍ରବନ୍ଧଟି ନାନା ସ୍ତରର ପାଠକଙ୍କ ମନରେ ଗୋଟିଏ ଚାଞ୍ଚଲ୍ୟ ଆଣିଛି । ଲେଖକ ପ୍ରବନ୍ଧଟିରେ କହିବାକୁ ଚାହିଁଛନ୍ତି ଯେ ବିବାହ ପ୍ରଥାଲାଗି ମନୁଷ୍ୟର ବ୍ୟକ୍ତିଗତ ତଥା ସାମାଜିକ ଜୀବନର ସ୍ୱଚ୍ଛନ୍ଦ ଅଭିବୃଦ୍ଧ ହୋଇପାରୁ ନାହିଁ ଏବଂ ସେଥିଲାଗି ମନୁଷ୍ୟକୁ ଏକ ଅସ୍ୱାସ୍ଥ୍ୟକର କୃତ୍ରିମ ଜୀବନ ଯାପନ କରିବାକୁ ପଡୁଛି । ଲେଖକ ଏହି କାରଣରୁ ଏ ବିବାହ ପ୍ରଥାକୁ ଏକାବେଳକେ ଉଠାଇଦେଲେ ଯେ, ଅବରୋଧ ପ୍ରଥା ଉଠିଯିବ ବା ନାରୀ ଓ ପୁରୁଷ ମଧ୍ୟରେ ବର୍ତ୍ତମାନ ଯେଉଁ ଦୂଷିତ ସମ୍ପର୍କ ରହିଛି ତାହା ଲୋପ ହେବ । ବିବାହ ପ୍ରଥାକୁ ଉଠାଇ ଦେଲେ ପୁରୁଷ ନାରୀକୁ ରକ୍ଷିତା କରିପାରେ, ବେଶ୍ୟାଳୟରେ ଅବରୁଦ୍ଧ କରିପାରେ ନିଜର ଉପଭୋଗ ପାଇଁ । ଲେଖକ ଏପରି ପ୍ରଶ୍ନର ଆଶଙ୍କା କରିଲେଖିଛନ୍ତି, "ବିବାହ ମୂଳରେ ରହିଛି ନାରୀର ଆର୍ଥିକ ପରାଧିନତା'' ଏହି ଆର୍ଥିକ ପରାଧିନତାଟି ସବୁ ଅନର୍ଥର ମୂଳରେ ରହିଛି ଏ ପରାଧୀନତା ।" ଏହି ଆର୍ଥିକ ପରାଧିନତାଟି ସବୁ ଅନର୍ଥର ମୂଳରେ ରହିଛି । ଏ ପରାଧିନତା ନତୁଟିଲେ ବିବାହ ପ୍ରଥାକୁ ତୁଟାଇ ଲାଭ ନାହିଁ ଏବଂ ଆର୍ଥିକ ପରାଧୀନତା ତୁଟିଗଲେ ବିବାହ ପ୍ରଥା ନତୁଟିଲେ ବି କିଛି କ୍ଷତି ନାହିଁ । ଋଷ ଏହା ହିଁ କରିବାକୁ ଯାଉଛି । ବିବାହ ପ୍ରଥା ବା ପରିବାର ପ୍ରଥା ବିରୁଦ୍ଧରେ ତାର ଅଭିଯାନ ନୁହେଁ - ତାର ଅଭିଯାନ ଆର୍ଥିକ ପରାଧୀନତା ବିରୁଦ୍ଧରେ ।

ପୃଥିବୀର ଚାରିଆଡେ ନାରୀ ସ୍ୱାଧୀନତାର ଡିଣ୍ଡିମ ବାଜେ। ନାରୀକୁ ନେଇ ଦାଣ୍ଡଘାଟରେ ପୁରୁଷ ବାହାରେ । କହେ, ନାରୀ ଆଉ ତାର ଭୋଗ୍ୟବସ୍ତୁ ନୁହେଁ, ସେ ତାର ଅର୍ଦ୍ଧାଙ୍ଗିନୀ ସହଧର୍ମିଣୀ ଅନ୍ଧକାରମୟ ଗୃହକୋଣ ଆଉ ତାର କର୍ମକ୍ଷେତ୍ର ନୁହେଁ । ତାର କର୍ମକ୍ଷେତ୍ର ଏହି ମୁକ୍ତ ଆକାଶ, ସୁବିସ୍ତୃତ ସମୁଦ୍ର ସେ ବ୍ୟୋମଯାନରେ ଉଡି ପାରିବ, ଜାହାଜରେ ଚଢି ପାରିବ, ବ୍ୟବସ୍ଥାପକ ସଭାରେ ବସି ପାରିବ । ନାରୀ ସ୍ୱାଧୀନତାର ଏହାହିଁ ହେଲା ସଂଜ୍ଞା । ନାରୀ ପ୍ରଥମରେ ଅନ୍ଧାରିଆ ଘର କଣରେ ପୁରୁଷର ଭୋଗ୍ୟବସ୍ତୁ ହୋଇ



ରହିଥିଲା । ଏବେ ନାରୀକୁ ବାହାରେ ଖୋଲା ଯାଗାରେ ଉପଭୋଗ କରିବାର ଖେୟାଲ୍ ପୁରୁଷ ମୁଣ୍ଡରେ ଚାପିଛି । ମୋଟ ଉପରେ ନାରୀ ଓ ପୁରୁଷ ମଧ୍ୟରେ ପ୍ରଥମରୁ ଯେଉଁ ସମ୍ପର୍କ ରହିଥିଲା, ତାହା ବର୍ତ୍ତମାନ ସୁଦ୍ଧା ଅକ୍ଷୁର୍ଣ୍ଣ ରହିଛି । ସ୍ତ୍ରୀକୁ ବାହାରକୁ ନେଲାବେଳେ ପୁରୁଷ ଜଗିଥାଏ – ସ୍ତ୍ରୀ ଅନ୍ୟ କାହାକୁ ଚାହିଁଲା ନା ମୁହଁ ପୋତି ଚାଲିଛି । ଏପରି ସତୀତ୍ୱ ନାରୀଠାରୁ ପୁରୁଷ ଯେ ଦାବୀ କରୁଛି, ସେ କାହା ବଳରେ । ବିବାହ ପ୍ରଥା ବଳରେ କି ? ନାରୀର ଆର୍ଥିକ ଜୀବନକୁ ନିୟନ୍ତ୍ରଣ କରିବା ଜୋରରେ ହିଁ ପୁରୁଷ ନାରୀ ଉପରେ ଏପରି ଦାବୀ କରିଥାଏ । ପୁରୁଷର ଏହି ଆର୍ଥିକ ପ୍ରଭୁତ୍ୱ ନାରୀ ଉପରେ ନଯିବା ଯାଏ ନାରୀର ପ୍ରକୃତ ସ୍ୱାଧୀନତା ସମ୍ଭବ ନୁହେଁ । ଯେଉଁ ସାମାଜିକ ବ୍ୟବସ୍ଥା ମଧ୍ୟରେ ଗୋଟିଏ ଶ୍ରେଣୀ ଅନ୍ୟର ଆର୍ଥିକ ଜୀବନର ନିୟାମକ ହୋଇ ରହିଛି ତାହା ଭିତରେ ନାରୀ ନିଜର ଆର୍ଥିକ ଜୀବନକୁ ନିଜେ ପରିଚାଳିତ କରି ପାରିବ ନାହିଁ । ଏ ଯୁଗର ପୁଞ୍ଜିବାଦୀ ବ୍ୟବସ୍ଥା ମଧ୍ୟରେ ଏହା ସମ୍ଭବ ନୁହେଁ ।

ବିବାହ ପ୍ରଥାର ନିରାକରଣ ସପକ୍ଷରେ କହିବାକୁ ଯାଇ ଶ୍ରୀ ଉକ୍ଲୀୟ କେତେ ଗୁଡ଼ିଏ ସମସ୍ୟା ଉତ୍ଥାପନ କରିଛନ୍ତି, ଯଥା ସନ୍ତାନ ପାଳନ, ଶିଶୁ ଆଶ୍ରମ ଇତ୍ୟାଦି ବିବାହ ପ୍ରଥା ଉଠିଗଲେ ଏ ସବୁ କାମ ଉଠାଇବ କିଏ ? ଲେଖକ କହିଛନ୍ତି, ନାରୀର ଭାଇ କି ଭଉଣୀ ଏ କାମ ମୁଣ୍ଡାଇ ପାରନ୍ତି । ଯାହାର ଭାଇ ଭଉଣୀ ନାହାନ୍ତି ସେ ସନ୍ତାନଙ୍କୁ ଶିଶୁ ଆଶ୍ରମରେ ଛାଡିଦେଇ ପାରେ । ପ୍ରଥମତଃ ଭାଇ ଭଉଣୀମାନେ ପଢାଶୁଣା କିମ୍ୱା ନିଜର ସ୍ୱାଧୀନ କାମଦାମ ନକରି ଏପରି ରହିବାକୁ ରାଜିହେବେ କାହିଁକି ? ଦ୍ୱିତୀୟତଃ ଶିଶୁ ଆଶ୍ରମର ରକ୍ଷଣାବେକ୍ଷଣର ଭାର କିଏ ନେବ ? ପୁରୁଷତ ଏ ଭାର ମୁଣ୍ଡାଇବ ନାହିଁ । ସେ ଯେ ଏକାବେଳେ ଦାୟିତ୍ୱଶୂନ୍ୟ ହେବ । ନାରୀକୁ ଯଦି କେବଳ ଏସବୁ ଭାର ମୁଣ୍ଡାଇବାକୁ ହୁଏ – ତେବେ ଏ ଧରଣର ସ୍ୱାଧୀନତା ଗ୍ରହଣ କରିବା ତା ପକ୍ଷରେ କଷ୍ଟକର ହୋଇ ଉଠିବ । ଏପରି ସମସ୍ୟାର ସମାଧାନ ପାଇଁ ଲେଖକ କୌଣସି ବ୍ୟବସ୍ଥା ଦେଇ ନାହାନ୍ତି । ଲେଖକ ପିତୃତ୍ୱକୁ ପୁରୁଷ ଉପରୁ ଉଠାଇ ନେଇ ଯଦି ରାଷ୍ଟ୍ର ଉପରେ ନ୍ୟସ୍ତ କରି ଦିଅନ୍ତି ତେବେ ଆଉ କିଛି ଗୋଳମାଳ ରହିବ ନାହିଁ । ଶିଶୁ ଆଶ୍ରମ ସନ୍ତାନ ପାଳନାଦିର ବ୍ୟବସ୍ଥା ତାହା ସୁଚାରୁ ରୂପେ ପରିଚାଳନା କରିବ । ଅର୍ଥାତ୍ କେବଳ ସାମ୍ୟବାଦୀ ରାଷ୍ଟ୍ରରେ ହିଁ ନାରୀର ଆର୍ଥିକ ତଥା ଯୌନ ସ୍ୱାଧୀନତା ସମ୍ଭବପର ।

ଋଷ ଦେଶରେ ସ୍ତ୍ରୀ ପୁରୁଷର ସମ୍ପର୍କ ଅନ୍ୟ ଦେଶମାନଙ୍କ ଅପେକ୍ଷା ଏହିଠାରେ ହିଁ ପୃଥକ । ସେଠାରେ ସ୍ତ୍ରୀ ପୁରୁଷର ମନନେବା ଏକମାତ୍ର ପେଶା କରି ବସିନାହିଁ, କି ପୁରୁଷ ନାରୀକୁ କେବଳ ଗୋଟାଏ ଭୋଗ୍ୟ ବସ୍ତୁ କି ସନ୍ତାନ ଜନନର ଯନ୍ତ୍ର ବୋଲି ଧରି ନାହିଁ । ପୁରୁଷର ମନ ନେବାପାଇଁ ବେଶ ବିନ୍ୟାସ ନାରୀର ଏକମାତ୍ର ସମସ୍ୟା ନୁହେଁ । ମହତ୍ତର ଓ ବୃହତ୍ତର ସମସ୍ୟା ପାଇଁ ବର୍ତ୍ତମାନ ତାର ମସ୍ତିଷ୍କ ଚାଳିତ ହେଉଛି । ନାରୀ ପୁରୁଷର ସମ୍ପର୍କ ଯେ କେବଳ ଯୌନବୃତ୍ତିରେ ପର୍ଯ୍ୟବସିତ, ସେକଥା ସେ ଦେଶବାସୀ ପଛରେ ପକାଇ ଦେଇଛି । ନବବାବୁ, ଏହି କାରଣରୁ ହିଁ ଆପଣଙ୍କ ଭାଷାରେ "ଋଷର ସାଧାରଣ ଯୌନଜୀବନ ଅନ୍ୟ ଦେଶ ତୁଳନାରେ ସୁରୁଚିସମ୍ପନ୍ନ ଓ ଉନ୍ନତ ।" ସେ ଦେଶରେ ନାରୀର ଆର୍ଥିକ ପରାଧୀନତା ଲୋପ ହୋଇଯାଇଛି । ସେହି କାରଣରୁ ସେଠାରେ ନାରୀ ବେଶ୍ୟା ନୁହେଁ ରକ୍ଷୀତା ନୁହେଁ କି ଗୃହପାଳିତ ଜୀବ ନୁହେଁ । ବ୍ୟକ୍ତିଗତ ସମ୍ପତ୍ତିର ଜନ୍ମ ତାରିଖଠାରୁ ନାରୀର ସ୍ୱାଧୀନତା ଲୋପ ହୋଇଅଛି । ନାରୀ ପୁରୁଷର ବିବିଧ ଭୋଗ୍ୟ ବସ୍ତୁ ମଧ୍ୟରେ ପରିଗଣିତ ହୋଇଅଛି । ବ୍ୟକ୍ତିଗତ ସମ୍ପତ୍ତିର ବିନାଶ ନହେବାଯାଏ, ସ୍ତ୍ରୀର ଆର୍ଥିକ ସ୍ୱାଧୀନତା ସଂଭବ ନୁହେଁ । ବ୍ୟକ୍ତିଗତ ସମ୍ପତ୍ତି ଥିବା ପର୍ଯ୍ୟନ୍ତ ପୁରୁଷ ସ୍ତ୍ରୀକୁ ନିଜ ପରିବାର ଭିତରେ ନହେଲେ ଅନ୍ୟତ୍ର ନିଜର ସମ୍ଭୋଗ ପାଇଁ ଅବରୁଦ୍ଧ କରି ରଖିବ ।

।।ଇତି।।

ସମ୍ପାଦକ

(ପ୍ରଥମ ବର୍ଷ, ୨ୟ ସଂଖ୍ୟା, ଜୁନ୍ ୧୯୩୯)







# ଢେଙ୍କାନାଳ ଆନ୍ଦୋଳନ

- ଭଗବତୀ ଚରଣ ପାଣିଗ୍ରାହୀ

ସାଥୀ ଭଗବତୀ ଚରଣ ପାଣୀଗ୍ରାହୀ ଢେଙ୍କାନାଳ ପ୍ରଜା ଆନ୍ଦୋଳନ ସମ୍ପର୍କରେ ଲେଖିଥିବା ଏହି ପ୍ରବନ୍ଧଟି ୧୯୩୯ ମାର୍ଚ୍ଚ ୧୦ ତାରିଖରେ କଲିକତାରୁ ପ୍ରକାଶ ପାଉଥିବା ଇଂରେଜ୍ 'ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ' ର କଂଗ୍ରେସ ବିଶେଷାଙ୍କରେ ପ୍ରକାଶ ପାଇଥିଲା । ସ୍ମରଣ କରାଯାଇପାରେ ଯେ ୧୯୩୯ରେ ତ୍ରିପୁରାଠାରେ କଂଗ୍ରେସ ଅଧିବେଶନ ବସିବା ଉପଲକ୍ଷେ ଏହି ବିଶେଷାଙ୍କ ପ୍ରକାଶ ପାଇଥିଲା ।

ସାଥୀ ଭଗବତୀ ଚରଣ ପାଣିଗ୍ରାହୀ ମଧ ଗୋପନ କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ଥିଲେ । ବ୍ରିଟିଶ୍ ସାମ୍ରାଜ୍ୟବାଦର ଆକ୍ରମଣ ହେତୁ ଓ କମ୍ୟୁନିଷ୍ଟ ପାର୍ଟି ବେଆଇନ୍ ଥିବାରୁ କମ୍ୟୁନିଷ୍ଟ ପାର୍ଟି ଖୋଲାଖୋଲି କାମ କରିପାରୁନଥିଲା । ସେ ଥିଲେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ପ୍ରଥମ ସମ୍ପାଦକ ।

ସାଥୀ ପାଣିଗ୍ରାହୀଙ୍କ ଏହି ଲେଖାଟି ଐତିହାସିକ ଢେଙ୍କାନାଳ ଆନ୍ଦୋଳନର ଆଦ୍ୟ ପର୍ବର ବର୍ଣ୍ଣନା ଦେଇଛି । ନୀଳକଣ୍ଠପୁରରେ ବାଜି-ରଘୁ, ନଟ, ଗୁରି, ହୁରୁଷୀ, ଲକ୍ଷ୍ମଣଙ୍କୁ ହତ୍ୟା ଓ ତତ୍‌ପରବର୍ତ୍ତୀ ହତ୍ୟା ଘଟଣା ଘଟିବା ପୂର୍ବରୁ ଏବଂ ଢେଙ୍କାନାଳରୁ ହଜାର ହଜାର ଲୋକଙ୍କର ମୋଗଲବନ୍ଦୀଙ୍କୁ ପଳାୟନ ପୂର୍ବରୁ ଏବଂ କଟକରୁ ଶ୍ରୀ ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ଗୌରାଙ୍ଗ ଚରଣ ଦାସଙ୍କ ନେତୃତ୍ୱରେ ଢେଙ୍କାନାଳରେ ପ୍ରବେଶ କରି ସତ୍ୟାଗ୍ରହ ପୂର୍ବରୁ ଏବଂ ଅନନ୍ତ ପଟ୍ଟନାୟକ, ରବିଘୋଷ ଓ ଢେଙ୍କାନାଳ ପ୍ରଜାମଣ୍ଡଳର ନେତାମାନେ ବ୍ୟାପକ ଭାବରେ ଗିରଫ ହେବା ପୂର୍ବରୁ ଏହି ଲେଖା ସାଥୀ ପାଣିଗ୍ରାହୀ ଲେଖିଥିଲେ ।

ଇଷ୍ଟର୍ଣ୍ଣ ଷ୍ଟେଟ୍ ଏଜେନ୍‌ସି (ଓଡ଼ିଶା ଓ ମଧ୍ୟପ୍ରଦେଶର ଗଡଜାତଗୁଡ଼ିକୁ ଘେନି ବ୍ରିଟିଶ୍ କର୍ତ୍ତୃତ୍ୱାଧୀନ ପ୍ରଶାସନିକ ସଂସ୍ଥା) ରେ ଢେଙ୍କାନାଳ ଏକ କ୍ଷୁଦ୍ର ରାଜ୍ୟ । ପୂର୍ବପଟେ କଟକ ଜିଲ୍ଲା ଓ ପଶ୍ଚିମପଟେ ଏହି ଜିଲ୍ଲାର ବ୍ରିଟିଶ ରେଗୁଲେସନ୍‌ରେ ଶାସିତ ଅନୁଗୋଳ । ଅନ୍ୟ ପାଖଗୁଡ଼ିକରେ ଅନ୍ୟାନ୍ୟ ଗଡଜାତ । ଏହାର ଜନସଂଖ୍ୟା ପ୍ରାୟ ୩ ଲକ୍ଷ । ଏବର ରଜା ସାବାଳକ ହେଲାପରେ ଗତ ୧୨ ବର୍ଷ ଧରି ରାଜ୍ୟ ଶାସନ କରୁଛନ୍ତି ଏବଂ ଏହି ବାରବର୍ଷ କାଳ ଢେଙ୍କାନାଳର ଲୋକେ ଏକ ଅଗ୍ନିପରୀକ୍ଷା ଭିତରେ କାଳାତିପାତ କରୁଛନ୍ତି । ଅତ୍ୟାଚାର ଓ ନିର୍ଯ୍ୟାତନାର ନୂଆ ନୂଆ ପଦ୍ଧତି ବାହାର କରାଯାଇଛି ଏବଂ ଶୋଷଣର ନୂତନ ଉପାୟମାନ ଆବିଷ୍କାର କରାହୋଇଛି । ରାଜ୍ୟବାହାରୁ ଅଣାଯିବା ପାନ ଉପରେ ଓ ରାଜ୍ୟରୁ ବାହାରକୁ ଯାଉଥିବା ଧାନ, ଚାଉଳ, ଡାଲି ଇତ୍ୟାଦି ଉପରେ ଏକଚାଟିଆ ନିୟନ୍ତ୍ରଣ ଜାରି କରାଯାଇଛି । ଜଙ୍ଗଲ ଆଇନକୁ ଅଧିକ କଡାକଡି ଓ ମନମୁଖୀ କରାଯାଇଛି । ଏତଦ୍ୱାରା ଫରେଷ୍ଟ ରେଞ୍ଜର ଓ ଗାର୍ଡଙ୍କୁ ଯେକୌଣସି ଗାଁର, ଯେକୌଣସି ବ୍ୟକ୍ତିର ଘରେ ପଶିବାକୁ ଅଧିକାର ଦିଆଯାଇଛି । ୪୦/୫୦ ବର୍ଷ ପୂର୍ବେ ଯେଉଁମାନେ ଜଙ୍ଗଲ ବିଭାଗରୁ କାଠ କିଣି ଝରକା କବାଟ ଓ ଆସବାବପତ୍ର କରିଥିଲେ ସେଥିଲାଗି 'ପରମିଟ୍' ଦେଖାଇନପାରିବା ସ୍ୱାଭାବିକ । ତେଣୁ ସେମାନଙ୍କ ଉପରେ ଜୋର୍ ଜରିମାନା ବସୁଛି । ତାହାଛଡା ଜଙ୍ଗଲର ଶ୍ରେଣୀ ବିନ୍ୟାସ କରାଯାଇଛି । ଚିହ୍ନିତ, ସଂରକ୍ଷିତ ଓ ରିଜର୍ଭ ଇତ୍ୟାଦି ଏପରି ସୂକ୍ଷ୍ମ ଯେ କାରଣ ନଥାଇ ମଧ ଲୋକଙ୍କୁ ଜଙ୍ଗଲ ଆଇନ୍ ଭଙ୍ଗ ଅଭିଯୋଗରେ ଧରି ନିଆଯାଇଛି । ଏହି ଅତ୍ୟାଚାରର ଆଉ ଏକ ଦିଗ ହେଲା 'ବେଠି' । ରାସ୍ତାଘାଟ କୋଠାବାଡି ଓ ପ୍ରାସାଦଗୁଡ଼ିକ ବେଠିରେ କରାଯାଉଛି । ଏହି ରୀତିରେ ମଧ ହାତୀ 'ଖେଦା' ବା ଶିକାର ମଞ୍ଚ ବେଠିରେ ନିର୍ମିତ ହେଉଛି । ଏହି ବର୍ବର ବ୍ୟବସ୍ଥାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ହେଲା, ଏକ ପାହାଡ ଉପରେ ନିର୍ମିତ "ଯତନନଗର ।" (ଢେଙ୍କାନାଳ ସହର ନିକଟରେ ସମ୍ପୂର୍ଣ୍ଣ ବେଠି, ହତ୍ୟା ଓ ମାଡରେ ଢେଙ୍କାନାଳ ରଜାଙ୍କ ଦ୍ୱିତୀୟ ଭାଇ ପଟ୍ଟନାୟକଙ୍କ ଦ୍ୱାରା ନିର୍ମିତ ପ୍ରାସାଦଟି ପରିତ୍ୟକ୍ତ ହେଲେବି ଦଣ୍ଡାୟମାନ) ସର୍ବୋପରି ରହିଛି ଅନ୍ଧାରୀ କଚେରୀ ଅବା ରାତ୍ରି ଅଦାଲତ । ଏ ସମ୍ପର୍କରେ ୧୯୩୯ ଜାନୁଆରୀ ୨୨ରେ ନାସନାଲ୍ ଫ୍ରଣ୍ଟର ସମ୍ପାଦକ କମ୍ରେଡ୍ ପି ସି ଯୋଷୀ ୧୯୩୮ ଡିସେମ୍ବର ମାସରେ



ଢେଙ୍କାନାଳ ପରିଦର୍ଶନ ପରେ ଲେଖିଛନ୍ତି । ଏକ ଶିରୋନାମାରେ ଯୋଷୀ ଲେଖିଛନ୍ତି "ରଜା ହିଁ ପ୍ରଧାନ ଆଇନ୍ ଉଲଘଂନକାରୀ ।" ସାଧାରଣ ପ୍ରଶାସନର ପରିସର ବାହାରେ ରଜା ଏକ ସମାନ୍ତରାଳ ସରକାର ଚଳାଇଛନ୍ତି, ଯାହାକୁ ଲୋକେ 'ଅନ୍ଧାରୀ କଚେରୀ' କହନ୍ତି । ଏହାର ମୁଖ୍ୟ ହେଉଛନ୍ତି ପେସ୍କାର ଓ ସ୍ଥାନୀୟ ଏଜେଣ୍ଟ ହେଲା ଗାଁ ଚୌକିଦାର । କୌଣସି ସାକ୍ଷ୍ୟ ପ୍ରମାଣ ନିଆଯାଏ ନାହିଁ, କି କୌଣସି ରସିଦ୍ ଦିଆଯାଏ ନାହିଁ । ମିଛ ସତ ଏକ ମକଦ୍ଦମା ଯୋଡା ଯାଏ । ସବୁ କ୍ଷେତ୍ରରେ ଆଗ ଜରିମାନା ୧୦ ଟଙ୍କାରୁ ୧୦୦୦ ଟଙ୍କା ଯାଏ ରଜାଙ୍କର ଖର୍ଚ୍ଚର ସୀମା ନାହିଁ । ତାହାକୁ ଭରଣା କରିବା ଲାଗି ଅର୍ଥ ଆଦାୟର ଏହା ଏକ ସରଳ ଉପାୟ । ପେସ୍କାର ଓ ତାଙ୍କ. ବୋଲକରାମାନେ କମିଶନି ପାଆନ୍ତି । ମାତ୍ର ସିଂହ ଭାଗ ରଜା ନିଅନ୍ତି... ଗୋଟିଏ ଘଟଣାରେ ଖୋଲା କଚେରୀରେ ଦେବାନଙ୍କୁ ପେସ୍କାର ଗୋଟିଏ ଫାଇଲ୍ ତାଙ୍କୁ ଦେଇଦେବା ଲାଗି କହିଲେ । କାରଣ ମକଦ୍ଦମାଟି ଖୋଲା କଚେରୀରେ ଉପଯୁକ୍ତ ବିଚାର ଦୃଷ୍ଟିରୁ ଦୁର୍ବଳ ଥିବା ପେସ୍କାର ଏପରି କ୍ଷମତାଶାଳୀ ଯେ ଦେବାନ ବାଧ୍ୟ ହୋଇ ଫାଇଲଟିକୁ ବଢେଇଦେଲେ ।."ଅନ୍ଧାରୀ କଚେରୀ"ରେ ତାହାର ବିଚାର ହେବ । ଏହି ଅନ୍ଧାରୀ କଚେରୀ ବ୍ୟାପାରରେ କେବଳ ପେସ୍କାର ଯେ ସହଯୋଗୀ ତାହା ନୁହେଁ, ବିଭିନ୍ନ ପଦବୀର ପୁଲିସ୍ ଅଫିସର ମଧ୍ୟ ଏଥିରେ ଭାଗୀଦାର ଏବଂ ଏଥିଲାଗି ଏକ ଗୁଇନ୍ଦା ବ୍ୟବସ୍ଥା ମଧ୍ୟ ରହିଥିଲା । ଖାଲି ମନଗଢା 'ସତ ମିଛ ମକଦ୍ଦମା ବିଚାର କରିବାରେ ଅନ୍ଧାରୀ କଚେରୀ ସୀମିତ ନଥିଲା, ଯାବତୀୟ କୁତ୍ସିତ ରକମର ରାତ୍ରି କାଳୀନ ମଉଜ ମଜଲିସ୍‌ର ଏହା ଥିଲା ଏକ ପୀଠସ୍ଥଳୀ । ଯିଏ ଯେତିକି ପାଇବାର କଥା ସେତିକିରେ ଏହି ସହଯୋଗୀମାନଙ୍କୁ ସନ୍ତୁଷ୍ଟ ରହିବାକୁ ପଡୁଥିଲା । ଯଦି ଯାହାର ଯାହା ଭାଗ ତାଠାରୁ ଅଧିକ ନେଇଛି ବୋଲି ଜଣାପଡିଲା, ସେ ଯେଉଁ ଦଣ୍ଡ ପାଇବ ତାହାର ଭୟାବହତା କଳ୍ପନାର ବାହାରେ । ଲୋକଙ୍କୁ ଦଣ୍ଡିତ କରିବା ଲାଗି ଦଣ୍ଡବିଧି ବିଜ୍ଞାନକୁ ଅଜଣା ପନ୍ଥା ପଦ୍ଧତିର ଉଦ୍‌ଭାବନ କରାଯାଇଥିଲା । ଅନ୍ଧାରୀ କଚେରୀର ଶିକାର ଉଭୟ ନାରୀ ଓ ପୁରୁଷ । ସେମାନଙ୍କର ବିଚାର ସେଠାରେ କରାଯାଇ ସଂଗେ ସଂଗେ ଦଣ୍ଡ ଦିଆଯାଉଥିଲା । ଏହି କଚେରୀ ରାଜାଙ୍କୁ କେବଳ ଟଙ୍କା ଦେଉ ନଥିଲା, ତାଙ୍କର ଆନନ୍ଦ ଉଲ୍ଲାସ ଲାଗି ଏଠାରେ ନାନା ବିଭତ୍ସ ଦୃଶ୍ୟ ମଧ୍ୟ ରଚିତ ହେଉଥିଲା । ଯେଉଁମାନେ ଶିକାର ସେମାନେ ନାରୀ କି ପୁରୁଷ ସେମାନଙ୍କର ସ୍ୱାସ୍ଥ୍ୟ ଓ ଆଉ ବିଶେଷ ଲକ୍ଷଣକୁ ଦେଖି କି ପ୍ରକାର ଦଣ୍ଡ ଦିଆଯିବ ତାର ବ୍ୟବସ୍ଥା ହେଉଥିଲା । ଏପରି ଅତ୍ୟାଚାର ଓ ନିର୍ଯ୍ୟାତନା ହେତୁ ଢେଙ୍କାନାଳରୁ ଲୋକେ ବାହାରକୁ ପଳାଇ ଆସୁଥିଲେ । ଦୃଷ୍ଟାନ୍ତ ସ୍ୱରୂପ, କଟକରେ ଅଦକ୍ଷ ମଜୁରିଆଙ୍କ ମଜୁରୀ ସାଢେ ଚାରିଅଣାରୁ ତିନି ଅଣାକୁ ଖସିପଡିଲା । ତାଠାରୁ ମଧ୍ୟ କମ୍ ହୋଇଗଲା । ଢେଙ୍କାନାଳରୁ ଏପରି ଜନସ୍ରୋତ୍ କଟକକୁ ଚାଲିଲା ଯେ ସେମାନଙ୍କୁ ଘୃଣା ବ୍ୟଞ୍ଜକ ଶବ୍ଦ ଢେଙ୍କାନାଳୀ' ଆଖ୍ୟା ଦେଇ ତାଛଲ୍ୟ କରାଗଲା । ସେତିକି ନୁହଁ ଅନ୍ୟ ଯେ କେହି ସାଧାରଣ ହିତାହିତ ଜ୍ଞାନ ନଥିବା ଲୋକଙ୍କୁ ଏପରି ସମ୍ବୋଧନ କରାଗଲା । ସେତେବେଳେ କିଏ ଜାଣିଥିଲା ଯେ ସେମାନେ ଦିନେ ବନ୍ଧୁକ ନଳୀ ଓ ଗୁଳି ଆଗରେ ସାହସିକତାର ନିଦର୍ଶନ ପ୍ରଦର୍ଶନ କରି ଛିଡା ହେବେ ଏବଂ ଆମ ଦେଶର ମୁକ୍ତି ସଂଗ୍ରାମରେ ଏକ ଶ୍ରେଷ୍ଠ ସଂଗ୍ରାମୀ ବାହିନୀରେ ପରିଣତ ହେବେ ?

## ପ୍ରସ୍ତୁତି

ଢେଙ୍କାନାଳର ପଡିଶା ବ୍ରିଟିଶ୍ ଜିଲ୍ଲାଗୁଡ଼ିକରେ ଲୋକେ ମହାନ୍ ଜାତୀୟ ସଂଗଠନ ଭାରତୀୟ ଜାତୀୟ କଂଗ୍ରେସର ଧ୍ୱଜାତଳେ ଆଗେଇ ଯାଉଥିବାବେଳେ ଏହା ହିଁ ଥିଲା ଢେଙ୍କାନାଳବାସୀଙ୍କ ଅବସ୍ଥା । ଜୀବନର ଅତି ସାଧାରଣ, ସାମାନ୍ୟତମ ସୁଯୋଗରୁ ବଞ୍ଚିତ ହୋଇ କାହିଁକି ସେମାନେ ଲାଞ୍ଛିତ ହୋଇ ରହିବେ ? ମାନବ ଜାତି ଉତ୍ତରାଧିକାର ସୂତ୍ରେ ହାସଲ କରିଥିବା ସକଳ ଅଧିକାରରୁ ସେମାନେ ବଞ୍ଚିତ ହୋଇପାରିଥାନ୍ତି, କିନ୍ତୁ ମୁକ୍ତି ପାଇଁ ସଂଗ୍ରାମ କରିବାର ଅଧିକାରରୁ କିଏ ଏମିତି ପୃଥିବୀରେ ଅଛି ସେମାନଙ୍କୁ ବଞ୍ଚିତ ହୋଇପାରିଥାନ୍ତି, କିନ୍ତୁ ମୁକ୍ତି ପାଇଁ ସଂଗ୍ରାମ କରିବାର ଅଧିକାରରୁ ସେମାନେ ବଞ୍ଚିତ କରିବ ? ଏହିପରି ଚିନ୍ତାରେ ଢେଙ୍କାନାଳବାସୀ ଆକୁଳିତ ହେଲେ ।

ଗଡ଼ ଢେଙ୍କାନାଳ ଷ୍ଟେସନ୍ ଅଞ୍ଚଳରେ ରେଳ ଶ୍ରମିକମାନେ (ଗ୍ୟାଙ୍ଗମେନ୍, ମୋଟିଆ ଇତ୍ୟାଦି) ସେମାନଙ୍କର ରୀତିମତ ଭଜନମେଳାରେ ଠୁଳ ହୁଅନ୍ତି । ଅଧିକାଂଶ ଥିଲେ ଢେଙ୍କାନାଳବାସୀ । ସେମାନଙ୍କ ପାଖରେ ସୁପରିଚିତ ଉକ୍ତ ଷ୍ଟେସନ୍‌ରେ ବେଙ୍ଗଲ ନାଗପୁର ରେଳବାଇ ଶ୍ରମିକ ବୈଷ୍ଣବ ପଟ୍ଟନାୟକ ଆସି ପହଞ୍ଚନ୍ତି । ସେ ମଧ୍ୟ ଢେଙ୍କାନାଳର ବାସିନ୍ଦା । ମୁହଁରେ ଆର୍କଣୀୟ ହସ ଫୁଟାଇ ଭଜନ୍‌ମେଳା ଗୃହାରେ ବୈଷ୍ଣବ ପ୍ରବେଶ କରି କହିଲେ, "ଭାଇମାନେ କଣ କରୁଛ ଏଠାରେ ?"





"ଆରେ ଆମେ ଗଞ୍ଜେଇ ପିଇ ଭଜନ ଗାଉଛୁ । ଏ ଦୁଃଖୀ ଜୀବନରେ ଟିକିଏ ଆମୋଦପ୍ରମୋଦ ।" "କିନ୍ତୁ ଏସବୁ କ'ଣ ତୁମ ଦୁଃଖ ଦୁର୍ଦ୍ଦଶା ମୋଚନ କରିବ ?" ବୈଷ୍ଣବ ଉତ୍ତର ଦେଲେ । "କାହିଁକି ତମର ଏ ଦୁଃଖ ଦୁର୍ଦ୍ଦଶା ସେକଥା କେବେ ଚିନ୍ତା କରିଛ କି ? କିଏ ତମମାନଙ୍କ ଜୀବନକୁ ଏପରି ଅସହ୍ୟ କରିଦେଇଛି ? କ'ଣ ତମ ଭାଗ୍ୟ ? ନା ନୁହେଁ । ଯେଉଁମାନେ ଉଚ୍ଚ ଆସନରେ ବସିଛନ୍ତି, ଯେଉଁମାନେ ତମକୁ ଶୋଷି ମୋଟା ହୁଅନ୍ତି ସେମାନେ ହିଁ ଏସବୁ ଦୁଃଖଯାତନାର କର୍ତ୍ତା ।" କିପରି ଏକ ପକ୍ଷରେ ରଜା, ମହାଜନ ଏବଂ ଅନ୍ୟାନ୍ୟ ଧନିକଶ୍ରେଣୀ, ଅନ୍ୟ ପକ୍ଷରେ ବ୍ରିଟିଶ୍ ସାମ୍ରାଜ୍ୟବାଦ ଆମ୍ଭମାନଙ୍କୁ ଶୋଷଣ କରୁଛି ତାହା ସେ ବୁଝାଇଲେ । ସପ୍ତାହ ପରେ ସପ୍ତାହ ବିତିବାକୁ ଲାଗିଲା । ଆହୁରି ଅନେକ ଲୋକ ଭଜନ ମେଳାରେ ଉପସ୍ଥିତ ହେଲେ ଏବଂ ଯେତେ ସରଳଭାବରେ ହୋଇପାରେ ବୈଷ୍ଣବ ସେମାନଙ୍କୁ ବୁଝାଇଲେ । ଭଜନ ଘରେ ଆଖ ପାଖ ଗାଁର ଲୋକେ ଆସି ରୁଣ୍ଡ ହେଲେ । କ୍ରମଶଃ ଭଜନ ଦଳଟି ସାପ୍ତାହିକ ରାଜନୈତିକ ଗୋଷ୍ଠୀର ସଭାରେ ପରିଣତ ହେଲା । ବୈଷ୍ଣବଙ୍କୁ ଗାଁର ଲୋକେ ନିଜ ନିଜ ଗାଁକୁ ଆମନ୍ତ୍ରଣ କଲେ । ଯେମିତିକି ତିର୍ଲା ଲୋକେ ଏସବୁ ଆଲୋଚନା ଶୁଣିପାରିବେ । ଏହାପରେ ରାଜ୍ୟ ଭିତରେ ସଭା ସମିତି କରିବାର ପ୍ରଶ୍ନ ଉଠିଲା । ଗଡ଼ ଢେଙ୍କାନାଳ ଷ୍ଟେସନ୍ ଅଞ୍ଚଳଟି ରାଜ୍ୟ କର୍ତ୍ତୃତ୍ୱର ବାହାରେ । ଅଦମ୍ୟ ବୈଷ୍ଣବ ଢେଙ୍କାନାଳ ସହରର ଆଖପାଖ ଗାଁଗୁଡ଼ିକୁ ରାତିରେ ଯାଇ ଲୋକଙ୍କୁ ଧରି ଆଲୋଚନା ବୈଠକ ବସାନ୍ତି । ଲୋକେ ତାଙ୍କ କଥା ଶୁଣି ଏହା "କେତେ ସତ କଥା ଏବଂ ଆମେ କେତେ ଆଗୁଆଁର" ବୋଲି କହନ୍ତି । ତାଙ୍କ କଥା ଶୁଣି ଏକ ନୂଆ ସକାଳ ଆସିବ ବୋଲି ଲୋକେ ଅନୁଭବ କରନ୍ତି ।

ଓଡ଼ିଶାର ଦେଶୀୟ ରାଜ୍ୟ ସମ୍ମିଳନୀର ଅଗ୍ରଣୀ ନେତା ଶ୍ରୀଯୁକ୍ତ ସାରଙ୍ଗଧର ଦାସଙ୍କ ଅକ୍ଳାନ୍ତ ଉଦ୍ୟମ ଫଳରେ ଏତିକିବେଳେ ଓଡ଼ିଶା ରାଜ୍ୟଗୁଡ଼ିକ ପାଇଁ ତଦନ୍ତ କମିଟି ଗଠିତ ହୋଇଥିଲା । ଦେଶୀୟ ରାଜ୍ୟଗୁଡ଼ିକ ଭିତରେ ସାକ୍ଷ୍ୟନେବା ସମ୍ଭବପର ନହେବାରୁ ଏହି କମିଟି ବ୍ରିଟିଶ୍ ଓଡ଼ିଶାରେ ସାକ୍ଷ୍ୟ ଗ୍ରହଣ କରିଥିଲେ । ଗଡ଼ଜାତ ରାଜ୍ୟର ନିକଟବର୍ତ୍ତୀ ସ୍ଥାନକୁ କମିଟି ଯାଇ ସଂପୃକ୍ତ ରାଜ୍ୟର ଲୋକଙ୍କୁ ନିର୍ଦ୍ଦିଷ୍ଟ ଦିନରେ ସାକ୍ଷ୍ୟ ଦେବା ଲାଗି ଆହ୍ୱାନ କରୁଥିଲେ । ୧୯୩୮ ଜୁନ୍ ୨୭-୨୮ରେ ଅନୁଗୋଳଠାରେ ଢେଙ୍କାନାଳର ଲୋକେ ସାକ୍ଷ୍ୟ ଦେବା ସ୍ଥିର ହୋଇଥିଲା । ସେଦିନ ଢେଙ୍କାନାଳର ସୀମାନ୍ତ ଅଞ୍ଚଳକୁ କଡ଼ା ପୁଲିସ୍ ପହରାରେ ରଖାଯାଇଥିଲା । ରାଜ୍ୟର ଏକ ଦୂର କୋଣରେ ତଦନ୍ତ କମିଟି ବସୁଥିବାରୁ ଏବଂ ପୁଲିସର କଡ଼ା ପହରା ଥିବାରୁ ରାଜ୍ୟର ବିଭିନ୍ନ ଅଞ୍ଚଳରୁ ଲୋକେ ଆସିପାରିଲେ ନାହିଁ ସତ, ତଥାପି ୫୦୦ ଯାଏ ଲୋକ ପୁଲିସ୍ ପହରାକୁ ଏଡ଼ି ତଦନ୍ତ କମିଟି ଆଗରେଆପଣାର ଦୁଃଖ ଦୁର୍ଦ୍ଦଶାର କାହାଣୀ ବର୍ଣ୍ଣନା କରିଥିଲେ । କାଳ କାଳର ମନ ଭିତରର କଥା କହି ପକେଇବାରୁ ସନ୍ତୋଷ ଲାଭ କଲେ । ଏହି ତଦନ୍ତ କମିଟି କ'ଣ କରିବ ନକରିବ ତାହା ସେମାନେ ବିଚାର କରିନଥିଲେ । ଏଠାରେ ହିଁ ଅସ୍ଥାୟୀ ପ୍ରଜାମଣ୍ଡଳ ଗଠିତ ହେଲା ଏବଂ କର୍ମକର୍ତ୍ତାମାନେ ନିର୍ବାଚିତ ହେଲେ । ଲୋକେ ନୂତନ ଆଶା ଓ ସାହସ ଘେନି ରାଜ୍ୟକୁ ବାହୁଡ଼ି ଆସିଲେ । 'କୃଷକ' କାଗଜ ଦେଶୀୟ ରାଜ୍ୟଗୁଡ଼ିକର ସମସ୍ୟାକୁ ଆଲୋଚନା କରୁଥିଲା ଏବଂ ଗଡ଼ଜାତ ଆନ୍ଦୋଳନରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଉଥିଲା । ଉକ୍ତ କାଗଜରେ ପ୍ରଜା-ମଣ୍ଡଳର କର୍ମକର୍ତ୍ତାମାନଙ୍କ ନାମ ପ୍ରକାଶ ପାଇଥିଲା । ଏମାନଙ୍କ ବିରୁଦ୍ଧରେ କର୍ମାନୁଷ୍ଠାନ ହେବ ବୋଲି ଆଶଙ୍କା କରାଯାଇଥିଲା । ରାଜ ଦରବାର ସେମାନଙ୍କୁ ଡକାଇ ପ୍ରଜାମଣ୍ଡଳ କମିଟିରୁ ନାମ ପ୍ରତ୍ୟାହାର କରି ନେବାକୁ ଆଦେଶ ଦେଲା । ମାତ୍ର ସେମାନେ ନାସ୍ତି କରି ଦେଲେ । ରଜାଙ୍କ ହାକିମହୁକୁମା ଏଥିରେ ଆଚମ୍ବିତ ହୋଇଗଲେ ଏବଂ କ'ଣ କରିବେ ତାହା ଚିନ୍ତା କରିପାରିଲେ ନାହିଁ । ଏଠାରେ ଉଲ୍ଲେଖ କରିବା ବାଞ୍ଛନୀୟ ଯେ ଢେଙ୍କାନାଳର ୨୪ଟି ବିଶ୍ (ତାଲୁକ ଭଳି) ମଧ୍ୟରୁ ତଦନ୍ତ କମିଟି ପାଖରେ ସାକ୍ଷ୍ୟ ଦେବାକୁ ମାତ୍ର ଗୋଟିଏ ଦୁଇଟି ବିଶର ଲୋକେ ଆସିଥିଲେ । ବିଶେଷତଃ ପରଜଙ୍ଗ ବିଶ ନେତୃତ୍ୱ ନେଇଥିଲା । ଏହି ଅଞ୍ଚଳର ଲୋକେ ପାରମ୍ପରିକ ଭାବରେ ଖୁବ୍ ଲଢୁଆ । ୧୯୨୧-୨୨ରେ ରାଜସ୍ୱ ବୃଦ୍ଧି ବିରୁଦ୍ଧରେ ଏକ ଆନ୍ଦୋଳନ ହୋଇଥିଲା । ସେହି ଆନ୍ଦୋଳନରେ ପରଜଙ୍ଗ ବିଶ୍ ମଧ୍ୟ ଅଗ୍ରଣୀ ଥିଲା । ଏହି ଆନ୍ଦୋଳନର ନେତାମାନଙ୍କୁ ଦୀର୍ଘ କାରାବାସ ଦଣ୍ଡ ଭୋଗିବାକୁ ପଡ଼ିଥିଲା । ତଦନ୍ତ କମିଟିରୁ ଫେରିବା ପରେ ଏହି ଅଞ୍ଚଳର ଲୋକଙ୍କର ମନରେ ଦମ୍ଭ ଓ ଉତ୍ସାହ ବୃଦ୍ଧି ପାଇଲା । ଜନତା ଉପରେ ସେମାନେ ପ୍ରବଳ ପ୍ରଭାବ ବିସ୍ତାର କଲେ । ମାତ୍ର ସେମାନଙ୍କ ରାଜନୈତିକ ଦୃଷ୍ଟିକୋଣ ଆଧୁନିକ ନଥିଲା । ଏହି ସମୟରେ ଦୁଇଜଣ ତରୁଣ ହରମୋହନ ପଟ୍ଟନାୟକ ଓ ଲକ୍ଷ୍ମୀଧର ସାହୁ, ବୈଷ୍ଣବ ପଟ୍ଟନାୟକଙ୍କ ସହିତ ଯୋଗ ଦେଲେ । ହରମୋହନ ଜଣେ ଆଇନ୍ ଛାତ୍ର ଓ ଲକ୍ଷ୍ମୀଧର ସ୍ନାତକ ହେବା ପରେ କଟକର ମିଶନ ହାଇସ୍କୁଲରେ ଜଣେ ଶିକ୍ଷକ । ସେମାନେ



ଓ ବୈଷ୍ଣବ ନିଜ ନିଜ ଧନ୍ଦା ପରିତ୍ୟାଗ କଲେ ଏବଂ ମନପ୍ରାଣ ଢାଳି ଆନ୍ଦୋଳନରେ ଝାସ ଦେଲେ । ପରଜଙ୍ଗର ପୁରୁଣା ନେତାମାନଙ୍କ ସହିତ ଯୋଗ ସୂତ୍ର ସ୍ଥାପନ ସେମାନଙ୍କର ମୁଖ୍ୟ ଲକ୍ଷ୍ୟ ହୋଇଥିଲା ଓ ସଂଗ୍ରାମ ହିଁ ସେମାନଙ୍କୁ ଐକ୍ୟ ବନ୍ଧ କରିଥିଲା ।

ଏବେ ଖୋଲାଖୋଲି ସଭାସମିତି କରିବାର ସମୟ ଆସିଗଲା । କେବଳ ପରଜଙ୍ଗରେ ଏପରି ସଭାସମିତି ଆରମ୍ଭ କରିବାର ସୁଯୋଗ ଥିଲା । ବୈଷ୍ଣବ ପରଜଙ୍ଗ ଯାଇ ମହେଶ ଚନ୍ଦ୍ର ସୁବାହୁ ସିଂହଙ୍କ ପାଖରେ ପହଞ୍ଚିଥିଲେ । ସେ ଥିଲେ ଜଣେ ପୁରୁଖା ନେତା ଓ ଢେଙ୍କାନାଳ ବାସୀଙ୍କ ପାଇଁ ଆଦର୍ଶ ସ୍ଥାନୀୟ ବ୍ୟକ୍ତି । ଅନ୍ନପୂର୍ଣ୍ଣା ହାଟରେ ପ୍ରଥମେ ସଭା ଅନୁଷ୍ଠିତ ହେବା କଥା ଛିଣ୍ଡିଲା । ଜୁଲାଇ ୨ ତାରିଖରେ ସଭା ହେବ ବୋଲି ବୈଷ୍ଣବ ଓ ସୁବାହୁ ସିଂହ ନିର୍ଣ୍ଣୟ କଲେ । ଲୋକେ ସଭାରେ ଜମା ହେବା ମାତ୍ରେ ସେଠାରେ ଏସ୍‌ଡିଓ ଆସି ପହଞ୍ଚିଲେ ଏବଂ ହାଟ ନିକଟ ସ୍କୁଲ ଘରକୁ ଆସିବାକୁ ହୁକୁମ୍ ଦେଲେ । ଏପରି ସଭା କରିବାକୁ ଯାଇ ସେମାନେ ବିପଦକୁ ବରଣ କରି ଆଣୁଛନ୍ତି ବୋଲି ସତର୍କ କରାଇଦେଲେ । ସେ ହୁକୁମ୍ କଲେ ସଭାକୁ ବନ୍ଦ କରିବାକୁ ହେବ । ଏବଂ ଜଣ ଜଣ ହୋଇ ରାଜ୍ୟଶାସନ ପାଖରେ ଆପତ୍ତି ଅଭିଯୋଗ ଜଣାଇବାକୁ ହେବ । ସେମାନଙ୍କୁ ସବା ତଳୁ ଉପର ଯାଏଁ ସବୁ ହାକିମଙ୍କ ପାଖରେ ଆପତ୍ତି ଜଣାଇବାକୁ ପଡିବ । ସେମାନେ ନ ଶୁଣିଲେ ସେମାନଙ୍କ ଅଭିଯୋଗକୁ ରାଜା ସାହେବ ଶୁଣିବେ । ଏହାର ଉତ୍ତରରେ ଲୋକେ କହିଲେ ଆମ ତଳ କଚେରୀରେ ଆପତ୍ତି ଜଣାଇଲେ ତାହା ସେମାନଙ୍କ ଆପତ୍ତି ପ୍ରତି ଧ୍ୟାନ ନଦେଇ ୫୦ଟଙ୍କା ଜରିମାନା କରିବ ଏବଂ ଯେତେ ଯେତେ ଉପର ପାହିଆ କଚେରୀକୁ ଯିବେ ସେମାନଙ୍କ ଉପରେ ଏହି ଜୋରିମାନାର ପରିମାଣ ବଢ଼ିବଢ଼ି ଚାଲିଥିବ । ଏସ୍‌ଡିଓ ସେମାନଙ୍କୁ ପ୍ରବର୍ତ୍ତାଇ ନପାରି ବଳ ପ୍ରୟୋଗରେ ଆଶ୍ରୟ ନେଲେ । ଖୋଲାଖୋଲି ସଭା ହୋଇପାରିଲା ନାହିଁ । ଏବଂ ଲୋକ ଅନ୍ଧାରରେ ନିକଟସ୍ଥ ଜଙ୍ଗଲରେ ସଭା କଲେ । ଏହା ପରେ ପରେ ଉଭୟ ପରଜଙ୍ଗ ଓ ପଳାଶୁଣି ବିଶ ଗାଁ ମାନଙ୍କରେ ପ୍ରତିଦିନ ରାତିରେ ସଭା ବସିଲା । କର୍ତ୍ତୃପକ୍ଷଙ୍କୁ ଅବଜ୍ଞା କରି ଖୋଲାଖୋଲି ସଭା କରିବାକୁ ଲୋକେ ବାହାରିପଡିଲେ । ଦରବାର ସଭାରେ ସୁଅକୁ ବନ୍ଦ କରିବାକୁ ଅସମର୍ଥ ହୋଇ ଏପରି ସଭାସମିତି କେବଳ ଏହି ଦୁଇଟି ବିଶ୍ ମଧ୍ୟରେ ଯେପରି ସୀମାବଦ୍ଧ ରହିବ ସେଥିଲାଗି ଏହି ଅଞ୍ଚଳକୁ ଚାରିପଟେ ପୁଲିସ୍ ଘେରାଉରେ ରଖିଥିଲେ । ପରଜଙ୍ଗ ପଳାସୁଣିକୁ ବିଚ୍ଛିନ୍ନ କରି ରଖାଯିବାର ଆଶଙ୍କା ଦେଖାଗଲା । କିଛିଦିନ ଲାଗି ସେଠାରୁ କୌଣସି ସମ୍ବାଦ ମିଳିଲା ନାହିଁ । ମାତ୍ର ଆନ୍ଦୋଳନର ଅଭିବୃଦ୍ଧିକୁ ରୋକିବାରେ କାହାର ସାଧ ଅଛି ? ଚାରିଆଡେ ସଭାସମିତି ଚାଲିଲା ଏବଂ ଦରବାର ପୁଲିସ୍‌କୁ ପ୍ରତ୍ୟାହାର କରିନେଲା । ରାଜ୍ୟର ୧୫ ହଜାର ବର୍ଗମାଇଲ୍ ଅଞ୍ଚଳରେ ଲୋକେ ଜାଗ୍ରତ ହୋଇ ସେମାନଙ୍କ ନ୍ୟାୟସଙ୍ଗତ ଅଧିକାର ଦାବୀ କଲେ । 'କୃଷକ'ର ପ୍ରତ୍ୟେକଟି ସଂଖ୍ୟାରେ ଏପରି ସଭାଗୁଡ଼ିକର ବିବରଣୀ ପ୍ରକାଶିତ ହେଲା ଏବଂ ରାଜ୍ୟର ଅନ୍ଦିକନ୍ଦିରେ କୃଷକ କାଗଜଟି ପହଞ୍ଚିଲା । ଏହା ଜନତା ମଧ୍ୟରେ ଉଲ୍ଲାସ ଆଣିଲା ଏବଂ ଅନ୍ୟ ପକ୍ଷରେ ଆପଣାର କୁକର୍ମ ଗୁଡ଼ିକର ମୁଖା ଖୋଲିଯିବାରୁ ରାଜ୍ୟର ଦୁର୍ନୀତିଗ୍ରସ୍ତ କର୍ମଚାରୀଙ୍କ ମଧ୍ୟରେ ଆତଙ୍କ ଖେଳିଗଲା । କଟକରୁ ପ୍ରକାଶିତ "କୃଷକ" କେଉଁଦିନ ଆସି ପହଞ୍ଚିବ, ଲୋକେ ଉତ୍କଣ୍ଠିତ ହୋଇ ରହିଥାନ୍ତି । ପ୍ରତି ସପ୍ତାହରେ ଏହାର କାଟତି ସଂଖ୍ୟା ଢେଙ୍କାନାଳରେ ବୃଦ୍ଧି ପାଇଲା ।

## ସଂଗଠନ

ଅବାରିତ ଭାବରେ ସଭାସମିତି ଚାଲିଲା । ରାଜ୍ୟର କୋଣେ ଅଣ୍ଟୁକୋଣେ ଇନ୍‌କିଲାବ ଜିନ୍ଦାବାଦ୍ ଧ୍ୱନି ଧ୍ୱନିତ ହେଲା । ଦରବାରର ଲୋକେ ଏହାର ସମ୍ମୁଖୀନ ହୋଇପାରିଲେ ନାହିଁ । ଦରବାର ଜାଣିଶୁଣି ଏଥିପ୍ରତି କାନ ଦେଉନାହିଁ ବୋଲି ଘୋଷଣା କରାଗଲା । ଅଳ୍ପ ସମୟ ଭିତରେ ଉତ୍ସାହ ଉଦ୍ଦୀପନାର ଉତ୍ତାଳ ତରଙ୍ଗ ଉଭେଇଯିବ ବୋଲି ଦରବାର ବିଚାରୁଥିଲା ।

ଏହି ସମୟର ସୁଯୋଗରେ ପ୍ରଜାମଣ୍ଡଳକୁ କିଛି ଦେଖାଇବା ଭଳି କାର୍ଯ୍ୟ କରିବାକୁ ହେବ, ପ୍ରଜାମଣ୍ଡଳର ସଭ୍ୟ ସଂଗ୍ରହ କରିବାକୁ ପଡ଼ିବ ଏବଂ ପାଣ୍ଠି ସଂଗ୍ରହ କରିବାକୁ ହେବ । ଏହା ସଂଗେ ସଂଗେ ପ୍ରତ୍ୟେକ ଗାଁରେ ପ୍ରାଥମିକ ପ୍ରଜାମଣ୍ଡଳ ସଂଗଠନକୁ ଗଢ଼ିବାକୁ ହେବ । ଏହାପରେ ଯାଇଁ ସଚ୍ଚା ଲୋକ ପ୍ରତିନିଧିଙ୍କୁ ଘେନି ଢେଙ୍କାନାଳ ରାଜ୍ୟ ପ୍ରଜାମଣ୍ଡଳର ପୁନର୍ଗଠନ ହେବ । ମାତ୍ର ଏପରି ଏକ ଦୁରୁହ କାର୍ଯ୍ୟ କିଏ ସମ୍ପାଦନ କରିବ ? କେତେ ଶ୍ରମ ଏଥିଲାଗି ଦେବାକୁ ହେବ ? ଦରବାର କଣ ଏପରି କାମକୁ ବିନା ବାଧାରେ ଛାଡିଦେବ ? ଅଳ୍ପ ସଂଖ୍ୟକ ହୋଇଥିବାରୁ ଏହି ପ୍ରଶ୍ନଗୁଡ଼ିକ ପ୍ରଜାମଣ୍ଡଳ କର୍ମୀମାନଙ୍କୁ ଆକୁଳିତ କଲା । ଅବିଳମ୍ବେ କର୍ମୀ ସମସ୍ୟାର ସମାଧାନ ହୋଇଗଲା । ଆପଣାର ଘନିଷ୍ଠ ସାଙ୍ଗ ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କୁ ଏବଂ ଦଳେ କର୍ମୀଙ୍କୁ ଧରି ମହେଶଚନ୍ଦ୍ର ସୁବାହୁସିଂହ





ହାଜର ହୋଇଗଲେ । ପ୍ରଜାମଣ୍ଡଳକୁ ବେଆଇନ୍ ଘୋଷଣା କରାଗଲା ପରେ ପୂର୍ଣ୍ଣଚନ୍ଦ୍ର ମହାପାତ୍ର ହିଁ ପ୍ରଥମ ଡିକ୍‌ଟେଟର ହୋଇଥିଲେ । ତା ପରେ ଆସିଗଲେ କୃତ୍ତିବାସ ପ୍ରଧାନ, ଶ୍ରୀକାନ୍ତ ରାଉତ ବ୍ରଜକିଶୋର ଧଳ ଏବଂ ରାଜ୍ୟର ବିଭିନ୍ନ ଅଞ୍ଚଳରୁ ଆହୁରି ଅନେକ । ସମଗ୍ର ରାଜ୍ୟ ପ୍ରଜ୍ଜ୍ୱଳିତ ହୋଇଉଠିଲା ଏବଂ ପ୍ରତ୍ୟେକ ଗାଁରେ ପ୍ରଜାମଣ୍ଡଳ ଶାଖା ଗଢାଯାଇ ତାର ପ୍ରେସିଡେଣ୍ଟ ଓ ଅନ୍ୟାନ୍ୟ କର୍ମକର୍ତ୍ତା ବଛାଗଲେ । ପ୍ରତ୍ୟେକଟି ବିଶରେ ମଧ୍ୟ ପ୍ରଜାମଣ୍ଡଳ ଗଠିତ ହେଲା । କେନ୍ଦ୍ରରୁ ନିର୍ଦ୍ଦେଶ ବିଶ ପ୍ରଜାମଣ୍ଡଳଗୁଡ଼ିକୁ ଯାଉଥିଲା ଏବଂ ବିଶରୁ ପ୍ରତ୍ୟେକ ଗାଁର ପ୍ରଜାମଣ୍ଡଳ ପାଖରେ ତାହା ପହଞ୍ଚି ନିଖୁଣଭାବରେ କାର୍ଯ୍ୟକାରୀ ହେଉଥିଲା । ଯେମିତି ସବୁ କାମ ଏକ ଯନ୍ତ୍ରଭଳି ପ୍ରଖରଭାବରେ ଚାଲିଛି ସେମିତି ପ୍ରତିପନ୍ନ ହେଲା ।

ଦରବାର ଏସବୁର ନୀରବଦ୍ରଷ୍ଟା ହୋଇ ରହିଲା । ଏହା କ'ଣ ଦରବାରର ଏକ କର୍ମକୌଶଳ ? ନା ନୁହଁ, ଦରବାର ଏସବୁ ଦେଖି ପଛକୁ ହଟି ନୀରବରେ ବସି ରହିବା ଛଡା ଅନ୍ୟ କିଛି ବାଟ ପାଉ ନ ଥିଲା । ରାଜ୍ୟର ବର୍ବର, ଦୁର୍ନୀତିଗ୍ରସ୍ତ ଶାସନ ଏପରି ଅଦ୍ଭୁତ ଜାଗରଣ ଦେଖି ଚକିତ ହୋଇପଡିଲା । ରାଜ୍ୟ ଶାସନ ପକ୍ଷରୁ ଚାଲିଥିବା ଅଚିନ୍ତନୀୟ ଅତ୍ୟାଚାର ନିର୍ଯ୍ୟାତନାକୁ ଯେଉଁ ପ୍ରଜା ମୁଣ୍ଡପାତି ସହି ନେଉଥିଲେ, ସେମାନେ ଏତେ ଶୀଘ୍ର ରାଜନୈତିକଭାବରେ ସଚେତନ ଓ ବୈପ୍ଳବିକ ଶୃଙ୍ଖଳାସହ ଉଦ୍‌ବେଳିତ ହେବେ ଏବଂ 'ଦାୟିତ୍ୱ ମୂଳକ ଶାସନ ଆମର ଦାବୀ ଓ ନାଗରିକ ସ୍ୱାଧୀନତା ଆମର ଦାବୀ' ପରି ଧ୍ୱନି ପ୍ରତ୍ୟେକ କଣ୍ଠରୁ ଗର୍ଜି ଉଠିବ ଏହା ଦରବାରର କଳ୍ପନା ବାହାରେ ଥିଲା । ନିକଟ ପଡୋଶୀ କାନରେ ନିର୍ଯ୍ୟାତିତ ଲୋକଙ୍କ ଉପରେ ଚାଲିଥିବା ଅନ୍ଧାରୀ ଅତ୍ୟାଚାରର ଚିତ୍କାର ପହଞ୍ଚିପାରି ନଥିଲା । ସେସବୁ ଲୋମହର୍ଷଣକାରୀ କାହାଣୀ "କୃଷକ" ଓ ପ୍ରଜାମଣ୍ଡଳ ଦ୍ୱାରା ପ୍ରକାଶିତ ପ୍ରଚାରପତ୍ରଗୁଡ଼ିକରେ ପ୍ରକାଶ ପାଇ ଏବଂ ସଭାସମିତି ଗୁଡ଼ିକ ଅନୁଷ୍ଠିତ ହୋଇ ରାଜ୍ୟରେ ବିଦ୍ୟୁତ୍ ଖେଳିଗଲା । ଏଥିରେ ରାଜ୍ୟ ଶାସନ ଚକିତ ହୋଇପଡିଲା ଏବଂ ଦମନ ମୂଳକ ବ୍ୟବସ୍ଥା ନେବା ଲାଗି ତାହାର ଇଚ୍ଛା ସତ୍ତ୍ୱେ ଏହି ଗଣ ଅଭ୍ୟୁତ୍‌ଥାନ ଆଗରେ ପଙ୍ଗୁ ହୋଇଗଲା । ଅତ୍ୟାଚାର ନିର୍ଯ୍ୟାତନା ବିରୁଦ୍ଧରେ ଜନତାର ନ୍ୟାୟସଙ୍ଗତ ଓ ଆଇନଗତ ଦାବୀ ଘେନି ଆନ୍ଦୋଳନ ଫଳରେ ରାଜ୍ୟ ଶାସନର ମେରୁଦଣ୍ଡ ଦୋହଲିଗଲା ।

ପ୍ରଜାମଣ୍ଡଳପ୍ରତି ପ୍ରତ୍ୟେକଟି ଗ୍ରାମବାସୀ ଅନୁରକ୍ତି ପ୍ରକାଶ କଲେ । କୌଣସି ବ୍ୟକ୍ତି ଦରବାରର କର୍ମଚାରୀଙ୍କ ସହିତ କିଛି ସଂପର୍କ ରଖିଲେ ତାକୁ ଜନତାର ଶତ୍ରୁ ଓ ବିଶ୍ୱାସଘାତକ ବୋଲି ବିବେଚନା କରାଗଲା ଏବଂ ଗାଁର ପ୍ରାଥମିକ ପ୍ରଜା ମଣ୍ଡଳରୁ ବହିଷ୍କାର କରାଗଲା । ଏହାକୁ ସର୍ବୋଚ୍ଚ ଦଣ୍ଡ ବୋଲି ଧରି ନିଆଯାଇଥିଲା । ଖୋଲା ବୈଠକରେ ଦୋଷ ସ୍ୱୀକାର କଲେ ସାମାନ୍ୟ ଜରିମାନା ଦଣ୍ଡ ଦେଇ ତାଙ୍କୁ ପୁନଶ୍ଚ ସଭ୍ୟ କରି ନିଆଯାଉଥିଲା । ରଜା ତାଙ୍କୁ ନିଜ ମଟର ଗାଡିରେ ବସିବା ପାଇଁ ପ୍ରବର୍ତ୍ତାଇ ସଫଳ ହୋଇଥିବାରୁ ବନ୍ଧୁ ପୁରୁଖା ଓ ଲଢୁଆ ନେତା ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କୁ ମଧ୍ୟ ଏପରି ଦଣ୍ଡ ଭୋଗିବାକୁ ପଡିଥିଲା । ଗାଁର ଯୁବକମାନେ ସ୍ୱେଚ୍ଛାସେବକ ବାହିନୀ ଗଠନ କରୁଥିଲେ । ସ୍କାଉଟ୍ ଆନ୍ଦୋଳନର ରଜା ନେତା ହେବାକୁ ଚାହିଁଥିଲେ । ତେଣୁ ରାଜ୍ୟର ସବୁ ଯୁବକଙ୍କୁ ଆବଶ୍ୟକ ତାଲିମ ନେବାକୁ ପଡ଼ିଥିଲା । ପ୍ରଜାମଣ୍ଡଳ ଏହି ଶୃଙ୍ଖଳିତ ଓ ତାଲିମ୍‌ପ୍ରାପ୍ତ ଯୁବକମାନଙ୍କୁ ସ୍ୱେଚ୍ଛାସେବକ ରୂପେ ଲାଭ କଲା । ସେମାନେ ସଭାସମିତିର ସଂଗଠନ କଲେ ଏବଂ ସେଗୁଡ଼ିକୁ ପହରା ଦେଲେ । ସେମାନେ ଶଙ୍ଖଧ୍ୱନି କରି ଲୋକଙ୍କୁ ମିଳିତ ହେବାକୁ ଆହ୍ୱାନ ଦେଉଥିଲେ । ଗୋଟିଏ ଗାଁରେ ଶଙ୍ଖ ବାଜି ଉଠିବା ମାତ୍ରେ ଆର ଗାଁରେ ତାର ଜବାବ ମିଳୁଥିଲା । ଏହିପରି ଗାଁ ପରେ ଗାଁକୁ ଖବର ବ୍ୟାପୀ ଯାଉଥିଲା । ଅତି ଅଳ୍ପ ସମୟ ମଧ୍ୟରେ ଗୋଟିଏ ଜାଗାରେ ଲୋକେ ଠୁଳ ହୋଇଯାଉଥିଲେ । କେତେକ ଘଣ୍ଟା ମଧ୍ୟରେ ସାରା ରାଜ୍ୟରେ ସ୍ୱେଚ୍ଛାସେବକମାନେ ଏହିପରି ରିଲେ କରି ସମ୍ବାଦ ପହଞ୍ଚାଇ ଦେଉଥିଲେ । ୧୯୩୮ ସେପ୍ଟେମ୍ବର ୧୧ରେ ଶ୍ରୀମତୀ ମାଳତୀ ପଟ୍ଟନାୟକ, ଲକ୍ଷ୍ମୀଧର ସାହୁ ଓ ମହେଶଚନ୍ଦ୍ର ସୁବାହୁ ସିଂହଙ୍କୁ ସନ୍ଧ୍ୟା ୫ଟାରେ ଗିରଫ କରି ନିଆଗଲା । ୫୦ ମାଇଲ୍ ଦୂରରୁ ଆମକୁ ଏ ସମ୍ବାଦ କେତେ ଅଗମ୍ୟ ପାହାଡ ଜଙ୍ଗଲ ଡେଇ ରାତି ୧୧ଟାରେ କଟକରେ ପହଞ୍ଚିଗଲା । କେତୋଟି ସପ୍ତାହ ମଧ୍ୟରେ ସମଗ୍ର ରାଜ୍ୟଟି ଯେପରି ସଂଗଠିତ ହେଲା, ବିପ୍ଳବର ଇତିହାସରେ ସେପରି ଘଟଣା ଅତି ବିରଳ ।

ଦରବାର କୌଣସି ଦମନମୂଳକ ବ୍ୟବସ୍ଥା ନେଇନପାରି ପାଲଟା ସଭାସମିତିର ଆୟୋଜନ କଲା । "ସୁବର୍ଣ୍ଣ ସୁଯୋଗ" ଶିରୋନାମା ଥାଇ ପ୍ରଚାରପତ୍ରମାନ ରାଜ୍ୟରେ ନିର୍ଦ୍ଧାରିତ ଦିନ ପୂର୍ବରୁ ବଣ୍ଟାଗଲା । ଏହି ସଭାକୁ ପରଜଙ୍ଗର ମହେଶ ଚନ୍ଦ୍ର ସୁବାହୁ ସିଂହ, ପୂର୍ଣ୍ଣଚନ୍ଦ୍ର ମହାପାତ୍ର ଓ ଅନ୍ୟାନ୍ୟ ନେତାଙ୍କୁ ଉପସ୍ଥିତ ରହିବାକୁ ବିଶେଷ ନିମନ୍ତ୍ରଣ କରାଗଲା । ସୁବାହୁ ସିଂ ଆସିଲେ ଓ ତାଙ୍କ ସହିତ ଅନେକ ଲୋକ ମଧ୍ୟ ଆସି ପହଞ୍ଚିଲେ । ସଶସ୍ତ୍ର ବାହିନୀ ଘେରରେ ରଜା ମଧ୍ୟ ସେହି ସଭାରେ ଥାଆନ୍ତି । ଆପଣାର



ଦାବୀମାନ ଶୁଣିବାକୁ ରଜା ହୁକୁମ୍ ଦେଲେ । ବୈଷ୍ଣବ ମଧ ସେଠାରେ ଉପସ୍ଥିତ ଥିଲେ । ସେ ଛିଡା ହୋଇ କହିଲେ, ରଜା ବନ୍ଧୁକ ନଳୀ ଦେଖାଇ ପ୍ରଜାଙ୍କୁ ଆପଣାର ଦାବୀ ଜଣାଇବାକୁ କହୁଛନ୍ତି । ଏହା କ'ଣ ସମ୍ଭବପର ? ପ୍ରଜାମାନଙ୍କୁ ଆପଣାର ସଭାସମିତି କରି ଦାବୀଗୁଡ଼ିକ ନିର୍ଣ୍ଣୟ କରିବାକୁ ଏବଂ ପ୍ରଜାମଣ୍ଡଳ କରିଆରେ ଦରବାର ପାଖରେ ପହଞ୍ଚାଇବାକୁ ଅନୁମତି ଦେବା ଆବଶ୍ୟକ । ରଜା ତାଙ୍କ ଲୋକଙ୍କୁ ଧରି ଅନ୍ୟ ଏକ ସ୍ଥାନକୁ ଗଲେ ଏବଂ ଲୋକେ ମଧ ଆଉ ଏକ ଜାଗାକୁ ଯାଇ ସଭା କଲେ । ସେହି ଦିନଠାରୁ ଦରବାରର ସଭାକୁ କେହି ଗଲେ ନାହିଁ ।

ଅଗଷ୍ଟ ୮ ତାରିଖରେ ଗଡକୁ ଯିବା ଲାଗି ସୁବାହୁ ସିଂହଙ୍କୁ ରଜା ନିମନ୍ତ୍ରଣ କଲେ । ସୁବାହୁ ସିଂହ ତାଙ୍କ ଗାଡିରେ ନଯାଇ ଚାଲିକରି ଯିବେ ବୋଲି ଜଣେଇଲେ । ଅଗଷ୍ଟ ୧୭ ତାରିଖରେ ସୁବାହୁ ସିଂ ଗଡରେ ପହଞ୍ଚିବା ବେଳକୁ ତାଙ୍କ ସଙ୍ଗରେ ୪୦ ହଜାର ଲୋକ ଆସି ହାଜର । ରଜା ଲୋକଙ୍କୁ କହିବାକୁ ଚାହିଁଲେ । ସଭାଟିଏ ଅନୁଷ୍ଠିତ ହେଲା । ଏପରି ସଭା ସମିତି ନକରିବାକୁ ରଜା ଲୋକଙ୍କୁ ପରାମର୍ଶ ଦେଲେ । ଭାରତର ଯେ କୌଣସି ଅଞ୍ଚଳଠାରୁ ଢେଙ୍କାନାଳ ବାସୀ ଭଲରେ ଅଛନ୍ତି ବୋଲି ସେ ଶୁଣାଇଲେ । ରଜା କିଛି ସୁବିଧା ସୁଯୋଗ କରିଦେବେ ନାହିଁ ବୋଲି ତାଙ୍କ କଥାରୁ ଲୋକେ ଉପଲବ୍ଧି କଲେ । ସେମାନେ ବାହୁଡି ଗଲେ ଓ ସେମାନଙ୍କ ସଙ୍ଗଠନ ଦୃଢରୁ ଦୃଢତର ହେଲା ।

## ଜେନାପୁର କୃଷକ ସମାବେଶ

ସେପ୍ଟେମ୍ବର ପହିଲାଦିନ କଟକ ଜିଲ୍ଲାର ଜେନାପୁର ଠାରେ କୃଷକ ଦିବସ ପାଳିତ ହେଉଥିଲା । ସେଠାରେ ରାଜ୍ୟରୁ (ଢେଙ୍କାନାଳ) ୧୫ ହଜାର ଲୋକ ଯୋଗ ଦେଇଥିଲେ ଏବଂ ତାପରେ ସେମାନେ ନିଜସ୍ୱ ସମ୍ମିଳନୀ କରିଥିଲେ । ସେପ୍ଟେମ୍ବର ୨ ତାରିଖରେ ସେମାନଙ୍କର ସମ୍ମିଳନୀ ବସିଲା ଏବଂ ପ୍ରଜାମଣ୍ଡଳର ପୁନର୍ଗଠନ ହେଲା । ଏହିସମ୍ମିଳନୀରୁ ବାହୁଡିବା ପରେ ପ୍ରଜାମଣ୍ଡଳର କାର୍ଯ୍ୟକଳାପ ଜୋର୍‌ସୋରରେ ଚାଲିଲା ।

କିପରି ଦମନମୂଳକ ବ୍ୟବସ୍ଥା ନିଆଯିବା ଦରକାର ଏଥି ଭିତରେ ଚିନ୍ତା କରୁଥିଲା । ଯେଉଁ ଦିନକୁ ଆଲୋଚନା ଆରମ୍ଭ କରିବାକୁ ଦରବାର ଧାର୍ଯ୍ୟ କରିଥିଲା, ସେହିଦିନ ପ୍ରଜାମଣ୍ଡଳ ନେତାମାନଙ୍କୁ ଗିରଫ କରି ନିଆଗଲା । ସାମାନ୍ୟ କେତେ ଘଣ୍ଟା ଭିତରେ ସମଗ୍ର ଢେଙ୍କାନାଳ ରାଜ୍ୟରେ ଏପରି ବିଶ୍ୱାସଘାତକତାପୂର୍ଣ୍ଣ ଗିରଫଦାରୀର ସମ୍ବାଦ ଖେଳିଗଲା । ହଜାର ହଜାର ଲୋକ ଧାଇଁଲେ । ୧୨ ତାରିଖ ସକାଳକୁ ଢେଙ୍କାନାଳ ସହରରେ ୨୫ ହଜାର ଲୋକଙ୍କ ଜମାଏତ । ସେଦିନ ଲୋକଙ୍କୁ ଭୟଭୀତ କରାଇ ଛିନ୍ନଛତ୍ର କରି ଦେବାକୁ ଦରବାର ସମସ୍ତ ସମ୍ଭାବ୍ୟ ବ୍ୟବସ୍ଥା ନେଲା । ଲୋକଙ୍କ ଉପରେ ଲାଠି, ବନ୍ଧୁକ ଯୋଗେ ଓ ହାତୀ ଘୋଡା ମଡେଇ ଆକ୍ରମଣ କରାଗଲା ।

ସବାଶେଷରେ ଗୁଳି ଚାଲିଲା । ଶହ ଶହ ଲୋକ ଆହତ ହେଲେ । ମାତ୍ର ଲୋକଙ୍କ ସୁଅ ଛୁଟିଲା । ୧୩ ତାରିଖ ଦିନ ୬୦ ହଜାର ଲୋକ ଗଡରେ ଠୁଳ ହୋଇଗଲେ । ୧୨ ତାରିଖ ମଧ ରାତ୍ରିରେ ନେତାମାନଙ୍କୁ ଖଲାସ କରାଯାଇଥିଲା । ଦରବାରର ଲୋକେ, ସବୁ ଗୁଣ୍ଡା ବଦମାସ ଆପଣାର ନିରାପତ୍ତା ରକ୍ଷା ପାଇଁ ଲାଗି ପଡିଲେ । ଢେଲା ପଥର ସଂଗ୍ରହ କରାଯାଇ ରାଜପ୍ରସାଦ ଉପରେ କୁଢ କରି ରଖାଗଲା । ଲୋକଙ୍କ ପକ୍ଷରୁ ଆକ୍ରମଣ ହେଲେ, ରକ୍ଷା ପାଇବାର ଏହାହିଁ ଥିଲା ଏକମାତ୍ର ଉପାୟ । ମାତ୍ର ହିଂସା ଆଚରଣ କରିବା ଲୋକଙ୍କର ଅଭିଳାଷ ନଥିଲା । ଲୋକେ ନିଜ ନିଜ ଗାଁକୁ ଫେରିଯାଇ ସେମାନଙ୍କ ଗାଁକୁ ଅଭେଦ୍ୟ ଦୁର୍ଗରେ ପରିଣତ କରିବା ଲାଗି ନେତାମାନେ ପରାମର୍ଶ ଦେଲେ ।

ମାତ୍ର ଏହି ଦିନଟିର ଘଟଣା ଦରବାରକୁ ସୈନ୍ୟ ମଗାଇବାର ସୂତ୍ର ଦେଲା । ପଲିଟିକାଲ ଡିପାର୍ଟମେଣ୍ଟ ଦେଖିଲେ ଯେ ସତରେ ରଜା ଅସହାୟ । ତାହା ରଜାଙ୍କ ସାହାଯ୍ୟରେ ଆସିଲା । ଅନ୍ୟାନ୍ୟ ଗଡଜାତରୁ ଢେଙ୍କାନାଳକୁ ସଶସ୍ତ୍ର ବାହିନୀ ପଠାଗଲା । ଶେଷରେ ବ୍ରିଟିଶ୍ ସେନା କେ.ଓ.ଏସ୍.ବି. (କିଙ୍ଗସ୍ ଓନ୍ ସ୍କଟିଶ୍ ବର୍ଡର) ରେଜିମେଣ୍ଟ ଆସି ପହଞ୍ଚିଗଲା । ପ୍ରଜାମଣ୍ଡଳକୁବେଆଇନ୍ ଘୋଷଣା କରାଗଲା ଏବଂ ଦଣ୍ଡବିଧି ଆଇନକୁ ଲାଗୁ କରାଗଲା । ଗିରଫଦାରୀ ଚାଲିଲା । ଗାଁ ପରେ ଗାଁ ଉପରେ ଚଢଉ ହେଲା; ସମ୍ପତ୍ତିବାଡି ଲୁଟ୍ କରାଗଲା ଏବଂ କେତେକ ଘଟଣାରେ ଗୁଳି ଚଳାଯାଇ ୧୭ଜଣଙ୍କୁ ହତ୍ୟା କରାଗଲା ଓ ଶହ ଶହ ଲୋକଙ୍କୁ ଆହତ କରାଗଲା । ମହିଳାମାନଙ୍କ ଉପରେ ଧର୍ଷଣ ଚାଲିଲା । ବର୍ତ୍ତମାନ ସାମ୍ରାଜ୍ୟବାଦୀ ଅତ୍ୟାଚାରରେ ଢେଙ୍କାନାଳ ଜର୍ଜରିତ । ଲୋକଙ୍କୁ ଭୟଭୀତ କରାଯାଇ ସଂପୂର୍ଣ୍ଣ ରୂପେ ଦମନ କରାଯାଇଛି ସତ ମାତ୍ର ସ୍ୱାଧୀନତା ଲାଗି ଆମ ସଂଗ୍ରାମରେ ସେମାନେ ଆମ ସମୀପରେ ଏକ ନୂତନ ଅଧ୍ୟାୟ ଉନ୍ମୋଚନ କରି ଦେଇଛନ୍ତି ।





# ତୃତୀୟ ଅଂଶ

## ଭଗବତୀ ଜୟନ୍ତୀ ଶତବାର୍ଷିକୀରେ ଆମର ଶ୍ରଦ୍ଧାର୍ଘ୍ୟ



# ହେ କୁଆଁତାରା

- ବାଞ୍ଛାନିଧି ଦାସ

*(ଶତବାର୍ଷିକୀରେ ଭଗବତୀଙ୍କୁ ନିବେଦିତ)*

ଘର ଭିତରେ ନାଚି ଡେଇଁ ହେଉଛନ୍ତୁ ଷାଠିଏ ମାଙ୍କଡ
ଘର ବାହାରେ କାରଖାନା ବିଲମାଳେ
ବନ୍ଧା ପୁଣି ଗୋଟିଏ ମାଙ୍କଡ
ବଣରେ ଡାଳିମାଙ୍କୁଡି ଖେଳନ୍ତି ମାଙ୍କଡ
ହେ ମାନବାତାର !
ଏ ମାଙ୍କଡ଼ ମାନଙ୍କୁ କିଏ ଦେବ ସୂର୍ଯ୍ୟର ଠିକଣା ?

ସରଳ ତରଳ ପୋଷାକ
ହୃଦୟ ଖୋଲା ସଂଳାପ
ମଣିଷଙ୍କୁ କୋଳେଇ ନେବା ଭାବ - ଏଠି ନାହିଁ, ଏଠି ନାହିଁ,
ଭୋଟର ନାରାୟଣଙ୍କ ପଛରେ ଧାଇଁବା
ଦା' ହାତୁଡିକୁ କାର ଗ୍ୟାରେଜ୍‌ରେ ଲୁଚାଇବା
ନିଃସ୍ୱ ହେବା ବଦଳରେ କୋଟିପତି ହେବା
ଆମ କାମ, ଆମ କାମ୍ୟ !

ହେ ସତ୍ୟକାମ
କିଏ କାଟିବ ଏ ଅନ୍ଧାରୀ ରାତିର ଶେଷ ଯାମ ?
ଶ୍ରେଣୀ ସଂଘର୍ଷ କଥା ମନରୁ ପାଶୋରୀ
ଏଠି ଟଣା ହୁଏ ଶାସନର ଡୋରି
ଗାଁଏ ଗାଏଁ ଚେତନାର ଘରଗୋଟି ଗଲାଣି ଉଜୁଡି
କିଏ ବୁଲି ବୁଲି ଦେବ ଉଙ୍ଗାଡାଳ -
ଦାନ୍ତ ନିକୁଟା ଶେଣିକୁ ସଜାଡ଼ି
ହେ କୁଆଁତାରା !
ଚିନ୍ତା ଚକ୍ରବାଲୁ କିଏ ହଟାଇବ
ଅକାଳରେ ଏ ବ୍ୟାଧି - ଜରା ??

*୩- ଅଙ୍ଗାର ଗଡିଆ, ବାଲେଶ୍ୱର*





ଶେଷ ଶଯ୍ୟାରେ ଭଗବତୀ





# ସାହିତ୍ୟରେ ମାର୍କସବାଦୀ ଚେତନାର ଭଗୀରଥ ଭଗବତୀ ଚରଣ ପାଣିଗ୍ରାହୀ

- ପ୍ରଫେସର ଡକ୍ଟର ବିଜୟ ଶତପଥୀ

ଭଗବତୀ ପାଣିଗ୍ରାହୀ ଓଡ଼ିଶାରେ ଜନ୍ମଗ୍ରହଣ କରିଥିଲେ, ଶ୍ରେଣୀ ସଂଗ୍ରାମର ଏକ ନିର୍ଦ୍ଦିଷ୍ଟ ପର୍ଯ୍ୟାୟରେ । ସେତେବେଳକୁ ସାମ୍ରାଜ୍ୟବାଦର କବ୍‌ଜାରେ ଦେଶ ମୁମୂର୍ଷୁ ପ୍ରାୟ । ତା ସହ ସାମନ୍ତବାଦୀ ଶୋଷଣ ଓ କଷଣରେ ଜନସାଧାରଣ ପୀଡିତ ଓ ଲାଞ୍ଛିତ । ଇତିହାସର ଆବଶ୍ୟକତାକୁ ମେଣ୍ଟାଇବା ପାଇଁ ଯୁଗେ ଯୁଗେ ଏହିପରି ଚେତନାର ଭଗୀରଥମାନଙ୍କୁ, କ୍ରାନ୍ତି ପୁରୁଷମାନଙ୍କୁ ଆସିବାକୁ ପଡିଥାଏ । ଏମାନେ କିନ୍ତୁ କୌଣସି ଦୈବୀ ଶକ୍ତିର ଇଙ୍ଗିତରେ ପରିଚାଳିତ ହୋଇ ଆସନ୍ତି ନାହିଁ, ଏମାନେ ଆସନ୍ତି 'ଦୈବାଧୀନମ୍ ଜଗତ ସର୍ବମ୍'କୁ ଅସ୍ୱୀକାର କରିବା ପାଇଁ ଇତିହାସର ଆୟୁଧ ହୋଇ । ଭଗବତୀଙ୍କ ସହକର୍ମୀ କବି ଅନନ୍ତ ପଟ୍ଟନାୟକଙ୍କ ଭାଷାରେ କହିବାକୁ ଗଲେ-

"ମଧୁସୂଦନ, ଗୋପବନ୍ଧୁ, ଭଗବତୀ - ଓଡ଼ିଶାର ଆଧୁନିକ ଇତିହାସର ଯାତ୍ରାପଥରେ ତିନିହେଁ ତିନୋଟି ଆଲୋକର ଉତ୍ସ । ନୂତନ ଓଡ଼ିଶାର ପୁନର୍ନିର୍ମାଣ ସମ୍ପନ୍ନ ହେବା ପର୍ଯ୍ୟନ୍ତ ନୁହେଁ, କେବଳ ଇତିହାସରେ ବହୁଯୁଗ ଯାଏ ଏହି ତିନୋଟିରୁ ଉତ୍ସାରିତ ହୋଇ ବିଚ୍ଛୁରିତ ହେଉଥିବା ଜୀବନ ସଂଚାରୀ ଜ୍ଞାନ ଓ କର୍ମର ରଶ୍ମି ।"

ମଧୁସୂଦନ ଖଣ୍ଡ ବିଖଣ୍ଡିତ ଉତ୍କଳକୁ ଏକତ୍ରୀକରଣ କରିବାର ଶପଥ ନେଇ ଉତ୍କଳବାସୀଙ୍କ ହୃଦୟରେ ଜାତୀୟତାର ବୀଜ ବପନ କରିଥିଲେ ଓ ଓଡ଼ିଶା ପ୍ରାଣରେ ସ୍ୱାଭିମାନ ଆଣିଥିଲେ । ଜାତି ପ୍ରେମ ବହ୍ନି ପ୍ରଜ୍ୱଳିତ କରି ଓଡ଼ିଆର ହୃତ ଗୌରବକୁ ଫେରାଇ ଆଣିବା ପାଇଁ ଯତ୍ନ କରିଥିଲେ । ଗୋପବନ୍ଧୁ କିନ୍ତୁ ତାଙ୍କର ଦେଶପ୍ରେମକୁ ସଂପ୍ରସାରିତ କରିଥିଲେ ମହାଭାରତୀୟ ଚେତନା ଆଡକୁ । ପ୍ରଥମେ ସନ୍ତ୍ରାସବାଦୀ, ପରେ ଅହିଂସାବାଦୀ ହୋଇ ସେ ଦେଶର କୋଟି କୋଟି ଜନତାର ଦୁଃଖ ସୁଖରେ ଭାଗୀ ହୋଇଥିଲେ । ସେ ଥିଲେ ଜନସାଧାରଣଙ୍କର ନେତା, ଜାତିର ମୁକ୍ତି ଓ ଜାଗରଣର ଦିଶାରୀ; ମାନବତାବାଦର ସର୍ବଶ୍ରେଷ୍ଠ ପୂଜାରୀ ।

ଭଗବତୀଙ୍କ ବେଳକୁ ଇତିହାସର ଆବଶ୍ୟକତା କିନ୍ତୁ ଭିନ୍ନ ପ୍ରକାରର ଥିଲା । ତେଣୁ ଏକ ଐତିହାସିକ ବିବର୍ତ୍ତନର ଦ୍ୱାରଦେଶରେ ଠିଆ ହୋଇ ସେ ନୂତନତାର ଶୁଭଶଙ୍ଖ ବାଦନ କରିଥିଲେ । "ବୈଜ୍ଞାନିକ ସାମ୍ୟବାଦର ଆଦର୍ଶ ଓ କଳ୍ପନାକୁ ବିପ୍ଳବାତ୍ମକ ରୀତିରେ ବାସ୍ତବାୟିତ କରିବାରେ ପ୍ରଥମ ଅଗ୍ରଯାୟୀ, ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ଅନ୍ୟତମ ଆଦ୍ୟ ପ୍ରତିଷ୍ଠାତା ଭାବରେ ଓଡ଼ିଶାର ଇତିହାସକୁ ପ୍ରସାରିତ କରିଥିଲେ ସେ ବିଶ୍ୱ ଇତିହାସର ମହାନ୍ ପରିସରକୁ । ତାଙ୍କ ପୂର୍ବରୁ ଓଡ଼ିଶାରେ କୌଣସି ନେତା କି କର୍ମୀ ବୈଶ୍ୱିକ ଦୃଷ୍ଟି ସହ ମୁକ୍ତି ସଂଗ୍ରାମରେ ଦେଶ ଦେଶ ମଧ୍ୟରେ ସଂଯୋଗ ବିଧାନ ପ୍ରତି ଆଗ୍ରହୀ କି ଉଦ୍‌ଯୋଗୀ ଥିଲେ, ଏହା ନିର୍ବିବାଦରେ କୁହାଯାଇ ନପାରେ ।

୧୯୦୮ ଫେବୃଆରୀ ପହିଲା ଦିନ ପୁରୀ ଜିଲ୍ଲାର ବିଶ୍ୱନାଥ ପୁରରେ ଏକ ବୁଦ୍ଧିଜୀବୀ ପରିବାରରେ ଜନ୍ମଗ୍ରହଣ କରିଥିଲେ ଭଗବତୀ । ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କାଳରେ ସେ ପ୍ରାଣନାଥ ପଟ୍ଟନାୟକଙ୍କର ଘନିଷ୍ଠ ସଂପର୍କରେ ଆସନ୍ତି । ପରେ ସତ୍ୟବାଦୀ ବନବିଦ୍ୟାଳୟରେ ଅଧ୍ୟୟନ କରି ସେ ଜାତୀୟବାଦର ମୁକ୍ତିମନ୍ତ୍ରରେ ଦୀକ୍ଷିତ ହୁଅନ୍ତି । ସେ ଥିଲେ "ଏକାବେଳେକେ ଅନନ୍ୟ - ଛାତ୍ର ଭାବରେ ତୀକ୍ଷ୍ଣଧୀ କିନ୍ତୁ ପାଠ୍ୟ-କ୍ରମରେ ପ୍ରଶଂସା ହାସଲରେ ମଧ୍ୟମ ବର୍ଗୀୟ, ସାଧାରଣ ସେବା ମୂଳକ କାର୍ଯ୍ୟରେ, ବିଶେଷରେ ଜାତୀୟ ଆନ୍ଦୋଳନରେ ଉତ୍ସାହୀ, ଆବେଗ କମ୍ପିତ ଅଗ୍ନିଶିଖା ।

ପାଟନା କଲେଜରୁ ଏମ୍.ଏ. ପାଶ୍ କରି ପରେ ଭଗବତୀ ରେଭେନ୍ସା କଲେଜରେ ଯୋଗ ଦିଅନ୍ତି ଆଇନ୍ ଅଧ୍ୟୟନ ପାଇଁ । ଅର୍ଥନୀତିରେ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କଲାବେଳେ ସେ ପୁଞ୍ଜିବାଦୀ, ସାମ୍ରାଜ୍ୟବାଦୀ ଓ ନୈରାଜ୍ୟବାଦୀ ଚିନ୍ତାଧାରା ଗୁଡ଼ିକ ସମ୍ପର୍କରେ ଆସନ୍ତି । ସେତେବେଳେ 'ସୋସାଲିଷ୍ଟ' ଚିନ୍ତାଧାରାଗୁଡ଼ିକ ସହ ଖୁବ୍ ପରିଚିତ ପାଟନା କଲେଜର ଅଧ୍ୟାପକ ଜ୍ଞାନ ଚାନ୍ଦ ଭଗବତୀଙ୍କୁ ବିପୁଳ ଭାବରେ ପ୍ରଭାବିତ କରନ୍ତି । ବର୍ଣ୍ଣାଡ୍‌ଶ, ସିନ୍‌କ୍ଲେୟାର, ଏଚ୍.ଜି. ୱେଲ୍‌ସ୍ ପ୍ରଭୃତିଙ୍କର ସାହିତ୍ୟ କୃତି ପୁଣି ଲାସ୍କି, ରବର୍ଟସନ୍ ପ୍ରଭୃତିଙ୍କର ପ୍ରବନ୍ଧରେ ସୋସାଲିଜମ୍‌ର ବ୍ୟାଖ୍ୟା ପ୍ରଭୃତି ଅଧ୍ୟୟନ ସାଙ୍ଗକୁ ହିନ୍ଦୁସ୍ଥାନ ସୋସାଲିଷ୍ଟ ପାର୍ଟିର ଆହ୍ୱାନ ଭଗବତୀଙ୍କ ଚିନ୍ତା ଜଗତରେ ଉଦ୍‌ବେଳନ ସୃଷ୍ଟି କରୁଥାଏ ।



ଆଇନ୍ କ୍ଲାସରେ ପଢ଼ିଲା ବେଳେ ଭଗବତୀ ପ୍ରଥମେ ରହୁଥିଲେ ଭାଇନା କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଘରେ । ପରେ ଆସି ସେ ରହିଲେ ୱେଷ୍ଟ ହଷ୍ଟେଲରେ ଏକ କାଳରେ ତାଙ୍କ ପୂର୍ବ ପରିଚିତ ବନ୍ଧୁ ଅନନ୍ତଙ୍କ ସହ ବୈଦ୍ୟନାଥ ରଥ, ବିଶ୍ୱନାଥ ପଶାଏତ୍ ପ୍ରଭୃତିଙ୍କ ସଙ୍ଗରେ ବିଭିନ୍ନ ରାଜନୈତିକ ମତାଦର୍ଶ ଏବଂ ଭାରତବର୍ଷର ସ୍ୱାଧୀନତା ପ୍ରସଙ୍ଗରେ ବରାବର ଆଲୋଚନା ଚାଲୁଥାଏ । ସ୍ୱାଧୀନତା ପ୍ରାପ୍ତି ପାଇଁ ସନ୍ତ୍ରାସବାଦକୁ ଶ୍ରେଷ୍ଠ ପନ୍ଥା ରୂପେ ବିବେଚନା କରି ସେତେବେଳକୁ ବଙ୍ଗଳାରେ ବ୍ୟାପକ ଆନ୍ଦୋଳନ ଚାଲିଥାଏ । ପୁରୀର ଗୋକୁଳ ମୋହନ ରାୟଚୂଡ଼ାମଣି, ଗଙ୍ଗାଧର ମିଶ୍ର ପ୍ରମୁଖ କେତେଜଣ ଯୁବ କଂଗ୍ରେସ କର୍ମୀ ସ୍ୱାସ୍ଥ୍ୟଲାଭ ଦୃଷ୍ଟିରୁ ପୁରୀରେ ରଖାଯାଇଥିବା ବଙ୍ଗଳାର ଅନ୍ତରୀଣ ବଂଦୀ ସଚ୍ୟେନ୍ ଗୁହଙ୍କ ସହ ସମ୍ପର୍କ ରକ୍ଷା କରିଥାନ୍ତି । ଭଗବତୀ ଓ ଅନନ୍ତ ପଟ୍ଟନାୟକ ପ୍ରଭୃତି ଏମାନଙ୍କ ସହ ମିଶି ଏକ ସନ୍ତ୍ରାସବାଦୀ ଯୁବ ଗୋଷ୍ଠୀ ଗଠନ କରିଥିଲେ । ପିସ୍ତଲ ସଂଗ୍ରହ କରିବା ଏବଂ ଅତର୍କିତ ଆକ୍ରମଣ କରି ସରକାରୀ କଳକୁ ଅଚଳ କରିଦେବା ଥିଲା ସେତେବେଳେ ସେମାନଙ୍କ ଲକ୍ଷ୍ୟ । 'ଆଗେଚାଲ' ନାମକ ଏକ ଲିଥୋ କରା ପ୍ରଚାର ପତ୍ରିକା ଜନ ଜାଗରଣ ପାଇଁ ଏହି ସନ୍ତ୍ରାସବାଦୀ ଗୋଷ୍ଠୀ ତରଫରୁ ବଣ୍ଟା ଚାଲିଥାଏ । ଭଗବତୀ ଏହି ପତ୍ରିକାର ସମ୍ପାଦନା ଏବଂ ପ୍ରଚାର ଦାୟିତ୍ୱରେ ରହିଥିଲେ । ଅବଶ୍ୟ ପରେ ଏହି 'ଆଗେଚାଲ' ନାମରେ କମ୍ୟୁନିଷ୍ଟ ପାର୍ଟି ତରଫରୁ ଏକ ଲିଥୋ ପ୍ରଚାର ପତ୍ର ପ୍ରକାଶ ପାଇଥିଲା । ପୁରୀ ବଡ଼ଦାଣ୍ଡରେ ଏହି ସନ୍ତ୍ରାସବାଦୀ ଗୋଷ୍ଠୀ ଏକ ହୋଟେଲ୍ ଖୋଲି ପୋଲିସ୍ ଆଖିରେ ଧୂଳି ଦେଇ ସେମାନଙ୍କର ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଅବ୍ୟାହତି ରଖିଥିଲେ ।

ଏହି ସମସ୍ତ କାର୍ଯ୍ୟ କଳାପ ଭଗବତୀଙ୍କ ଚିନ୍ତା ଜଗତରେ ଏକ ସଂଘର୍ଷ ଚାଲିଥାଏ । ସେ ଯେପରି ଆପଣାର ଲକ୍ଷ୍ୟ ସାଧନ ପାଇଁ ଏକ ମାନସିକ ପ୍ରସ୍ତୁତି ମଧ୍ୟରେ ଥାଆନ୍ତି । ଗୋଟେ ପଟେ ସନ୍ତ୍ରାସବାଦ, ଅନ୍ୟ ପକ୍ଷରେ କଂଗ୍ରେସ ମଧ୍ୟରେ ବାମପନ୍ଥୀ ଓ ଉଦାର ପନ୍ଥୀ ଦୃଷ୍ଟିକୋଣ ମଧ୍ୟରୁ ସେ ବାମପନ୍ଥୀ ଚେତନା ଆଡକୁ କ୍ରମଶଃ ଆକର୍ଷିତ ହେବାକୁ ଲାଗିଲେ । ଓଡ଼ିଶାରେ କଂଗ୍ରେସକର୍ମୀମାନଙ୍କ ମଧ୍ୟରେ ଏହି ବାମପନ୍ଥୀ ଚିନ୍ତାଧାରାର ସମର୍ଥକ ଓ ଅଗ୍ରଗାମୀ ନାୟକ ଭାବରେ ସେତେବେଳେ ଖୁବ୍ ଜଣାଶୁଣା ଥିଲେ ନବକୃଷ୍ଣ ଚୌଧୁରୀ ଓ ତାଙ୍କର ପତ୍ନୀ ମାଳତୀ ଚୌଧୁରୀ । ଭଗବତୀଙ୍କ ସହ ନବକୃଷ୍ଣ ଚୌଧୁରୀ, ଅନନ୍ତ ପଟ୍ଟନାୟକ, ବିଶ୍ୱନାଥ ପଶାଏତ, ବୈଦ୍ୟନାଥ ରଥ ଏବଂ ଅନ୍ୟମାନେ ନବକୃଷ୍ଣ ଚୌଧୁରୀଙ୍କ ଘରେ ଓ ବିଭିନ୍ନ ସ୍ଥାନରେ ଆଲୋଚନା କରନ୍ତି ରାଜନୀତି, ଅର୍ଥନୀତି, ବିଜ୍ଞାନ ଓ ଦର୍ଶନ ସମ୍ପର୍କରେ । ଏହି ସବୁ ଆଲୋଚନା ଚକ୍ରରେ ପରେ ଆସି ଯୋଗ ଦିଅନ୍ତି କାଶୀ ବିଦ୍ୟାପୀଠରୁ ଫେରିଥିବା ପ୍ରାଣନାଥ ପଟ୍ଟନାୟକ ଓ ଗୁରୁଚରଣ ପଟ୍ଟନାୟକ । ଏମାନଙ୍କ ବ୍ୟତୀତ ରବିଘୋଷ, ନୃପେନ୍ ସେନ୍, ମାର୍କସ୍‌ବାଦୀ ବ୍ରଜେନ୍ଦ୍ର ପାଲଙ୍କ ଠାରୁ ଆରମ୍ଭ କରି କଟକର ବହୁ ବୁଦ୍ଧିଜୀବୀ ଓକିଲ, ଡାକ୍ତର ପ୍ରଭୃତି ଏହି ସବୁ ବୈଠକମାନଙ୍କରେ ଯୋଗ ଦେଉଥାନ୍ତି । ଏହା ସହିତ ରାମଚନ୍ଦ୍ର ଭବନର ସାମ୍ନା ପିଣ୍ଡାରେ ଗୋଟିଏ ରିଡିଙ୍ଗ୍ ରୁମ୍ ଖୋଲା ହୋଇ ପ୍ରତ୍ୟହ ଅପରାହ୍ନ ଚାରିଟାରେ ବିଭିନ୍ନ ପତ୍ର-ପତ୍ରିକାର ଅଧ୍ୟୟନ ସବୁ ଚାଲିଥାଏ କର୍ମୀମାନଙ୍କ ଉଦ୍ୟମରେ । ଏହି ସବୁ ପତ୍ର-ପତ୍ରିକା କର୍ମୀମାନେ ଆଣୁଥିଲେ 'ୟଙ୍ଗ୍ ଉତ୍କଳ' ଇଂରାଜୀ ସାପ୍ତାହିକ ପତ୍ରିକା ଅଫିସରୁ ଏବଂ କଂଗ୍ରେସର ବରିଷ୍ଠ ନେତା ଭୁବନାନନ୍ଦ ଦାସ ଏମ୍.ପି.ଙ୍କ ଘରୁ । ଏହି ସବୁ ପୁସ୍ତକ ଓ ପତ୍ର ପତ୍ରିକା ମାନଙ୍କ ମଧ୍ୟରେ ସେତେବେଳେ ଥିଲା ଇଂରାଜୀରେ ଅନୁଦିତ କମ୍ୟୁନିଷ୍ଟ ମାନିଫେଷ୍ଟୋ, ମସ୍କୋ ଡାଇଲଗ୍, ବୁଖାରିନ୍‌ଙ୍କର ଐତିହାସିକ ବସ୍ତୁବାଦ ଏବଂ ମିରଟ ଷଡଯନ୍ତ୍ର ମାମଲାର ବିବରଣୀ । ଏଗୁଡ଼ିକ ବ୍ୟତୀତ ଷ୍ଟାଲିନ୍‌ଙ୍କର ରଚନାବଳୀ, କେତେ ଖଣ୍ଡ ସୋଭିଏଟ୍ ଉପନ୍ୟାସ ମଧ୍ୟ ସେମାନଙ୍କ ହାତକୁ ଆସିଥିଲା ।

ଏସବୁର ଅଧ୍ୟୟନ ଏବଂ ଅନୁଶୀଳନ ଫଳରେ ଭଗବତୀଙ୍କ ମନରେ ମାର୍କସ୍‌ବାଦୀ ଦର୍ଶନ ଓ ଚିନ୍ତାଧାରା ସମ୍ପର୍କରେ ଏକ ଦୃଢ଼ ଓ ସ୍ପଷ୍ଟ ଧାରଣା ଆସିଲା । ଭଗବତୀ ଓ ତାଙ୍କର ସାଥୀମାନେ ଏ ସମ୍ପର୍କରେ ଅଧିକରୁ ଅଧିକ ଚର୍ଚ୍ଚା ଓ ବିଚାର କରିବାକୁ ଲାଗିଲେ । 'ନବଯୁଗ ମଣ୍ଡଳ' ନାମକ ଏକ ଅନୁଷ୍ଠାନ ଗଢା ହୋଇ ସମାଜବାଦୀ ସାହିତ୍ୟ ଓ ଆଦର୍ଶ ସମ୍ପର୍କରେ କଟକର ବିଭିନ୍ନ ସ୍ଥାନରେ ବୈଠକମାନ ବସିଲା । ଭଗବତୀଙ୍କ ସହ ନବକୃଷ୍ଣ ଚୌଧୁରୀଙ୍କ ବନ୍ଧୁତାକୁ ମଣି-କାଞ୍ଚନର ଏକ ସଂଯୋଗ ବୋଲି କହିବା ପାଇଁ ପଡିବ । ନବକୃଷ୍ଣଙ୍କ ସମ୍ପର୍କରେ ଆସିବା ଦ୍ୱାରା ପ୍ରଥମ ଅବସ୍ଥାରେ ଭଗବତୀଙ୍କର ସମାଜବାଦୀ ଦୃଷ୍ଟିଭଙ୍ଗୀ ଅଧିକ ଶାଣିତ ଓ ପ୍ରଖର ହୋଇଥିଲା । ତାଙ୍କ ସହ ଭଗବତୀଙ୍କର ପ୍ରଥମ ସାକ୍ଷାତକୁ ସ୍ମରଣ କରି ଶ୍ରୀଯୁକ୍ତ ଚୌଧୁରୀ କହନ୍ତି - "୧୯୩୨ରେ ପାଟନାରୁ ଦୁଇଜଣ ଯୁବକ ତାଙ୍କ ପାଖକୁ ଆସି କଂଗ୍ରେସର ସତ୍ୟାଗ୍ରହୀ





ହିସାବରେ ଯୋଗଦେବାକୁ ଆପଣାକୁ ସମର୍ପଣ କରିଥିଲେ । ତାଙ୍କ ଭିତରୁ ଜଣେ ଥିଲେ ଅର୍ଥନୀତିରେ ଏମ୍.ଏ.ପାଶ୍ କରିଥିବା ଭଗବତୀ, ଅନ୍ୟ ଜଣକ ଏମ୍.ବି.ବି.ଏସ୍. ଡାକ୍ତର ଫିରୋଜ ଅଲ୍ଲୀ । ନବକୃଷ୍ଣ ଚୌଧୁରୀଙ୍କ ବ୍ୟତୀତ ଆଉ ଜଣେ ସେତେବେଳେ କଂଗ୍ରେସର ବାମପନ୍ଥୀ ଆଭିମୁଖ୍ୟରେ ବିଶ୍ୱାସୀ ଥିଲେ, ସେ ହେଉଛନ୍ତି ବାଗ୍ମୀସୁଲେଖକ ମୋହନ ଦାସ । ଭଗବତୀ ଓ ନବକୃଷ୍ଣଙ୍କ ମିଳିତ ଉଦ୍ୟମରେ ପ୍ରକାଶିତ 'ସାରଥି' ପତ୍ରିକା ଓଡ଼ିଶାରେ ସମାଜବାଦୀ ଆନ୍ଦୋଳନକୁ କେବଳ ମଜବୁତ କରି ନଥିଲା, ୧୯୩୪ ବେଳକୁ ସେଥିରେ ପ୍ରକାଶିତ ଭଗବତୀ ଚରଣ ପାଣିଗ୍ରାହୀଙ୍କ ପ୍ରବନ୍ଧ ଓଡ଼ିଆ ସାହିତ୍ୟରେ ମାର୍କସ୍‌ବାଦୀ ଚେତନାର ଭିତ୍ତି ପ୍ରସ୍ତର ପକାଇବା ଦିଗରେ ସହାୟକ ହୋଇଥିଲା । 'ସାରଥି' ପ୍ରକାଶନ ପରେ ଗଠିତ ହୋଇଥିଲା 'କଂଗ୍ରେସ ସମାଜବାଦୀ ଦଳ' ଏବଂ ଏହାର ଜେନେରାଲ୍ ସେକ୍ରେଟାରୀ ହୋଇଥିଲେ ଭଗବତୀ ଚରଣ ପାଣିଗ୍ରାହୀ । ଭଗବତୀଙ୍କର ଅଗ୍ରଜ କାଳିନ୍ଦୀ ଚରଣ ପାଣିଗ୍ରାହୀ, ନବକୃଷ୍ଣ ଚୌଧୁରୀ ଓ ଭଗବତୀଙ୍କର ଏହି ବନ୍ଧୁତା ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ କହନ୍ତି - "ବିଶେଷତଃ ସବୁଜ ଯୁଗର ଅନ୍ୟତମ ଶ୍ରେଷ୍ଠ ପ୍ରେରଣାଦାତା ଆମ୍ଭମାନଙ୍କର ବର୍ତ୍ତମାନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ତାଙ୍କ ସହଧର୍ମିଣୀ ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ନିକଟତର ସମ୍ପର୍କରେ ସେ ଆସିଥିଲେ । ନିଜ ଜୀବନରେ ଲେଖନୀକୁ ପ୍ରଧାନ ଅବଲମ୍ବନ ରୂପେ ଗ୍ରହଣ କରିଥିଲେ ମଧ ଏକଦା 'ସାରଥୀ' ସମ୍ପାଦକ ଶ୍ରୀଯୁକ୍ତ ଚୌଧୁରୀଙ୍କର ପ୍ରଗତିଶୀଳ ଦାର୍ଶନିକ ଚିନ୍ତା, ବ୍ୟକ୍ତିତ୍ୱର ନୈଷ୍ଠିକତା ଓ ଆନ୍ତରିକତା ଏବଂ ସର୍ବୋତ୍‌କୃଷ୍ଟ ସାହିତ୍ୟିକ ବିଚାରଧାରା ସବୁଜ ଯୁଗର ବନ୍ଧୁମାନଙ୍କ ପକ୍ଷରେ ଯେପରି ଏକ ଉତ୍ସାହର ଉତ୍ସ ହୋଇପାରିଥିଲା, ତଦ୍‌ପେକ୍ଷା ବରଂ ଅଧିକ ହୋଇଥିଲା ନବଯୁଗୀୟ ଯୁବମଣ୍ଡଳୀର । ଭଗବତୀଙ୍କ ସମେତ ତାଙ୍କ ସହକର୍ମୀ ବନ୍ଧୁମାନଙ୍କର ଅବଶ୍ୟ ସାହିତ୍ୟ ହିଁ ଏକମାତ୍ର ଲକ୍ଷ୍ୟ ନଥିଲା, ପ୍ରଧାନ ଲକ୍ଷ୍ୟଥିଲା ରାଜନୀତି । ସାହିତ୍ୟ ବା ରାଷ୍ଟ୍ରଗଠନରେ ପରିପୂରକ ସହଯୋଗୀ ବୋଲି ସେ ବିଚାର କରୁଥିଲେ ।

ଭଗବତୀ ମଧ ନବକୃଷ୍ଣ ଚୌଧୁରୀଙ୍କଠାରୁ ଲେଖା ଆଦାୟ କରି 'ଆଧୁନିକ'ରେ ଛାପିଥିଲେ । ସମ୍ପାଦକଙ୍କ ଅନୁରୋଧରେ ଉତ୍ତର ଦେଇ ଶ୍ରୀଯୁକ୍ତ ଚୌଧୁରୀ ଯେଉଁ ଦୀର୍ଘ ପତ୍ରଟି ଦେଇଥିଲେ, ତାହା 'ଆଧୁନିକ'ର ଦ୍ୱିତୀୟ ସଂଖ୍ୟାରେ ପ୍ରକାଶ ପାଇଥିଲା । ସେ ଲେଖିଥିଲେ ! "କମ୍ରେଡ ସମ୍ପାଦକ, 'ଆଧୁନିକ' ସକାଶେ ଲେଖା ଦେବା ପାଇଁ ତମର ତାଗଦା ଉପରେ ତାଗଦା । ମାସିକ ପତ୍ରରେ ମୋ ଲେଖା ବାହାରିବ ଏ ଗୌରବର ଲୋଭ ମଧ ଭିତରୁ ମତେ ଠେଲା ଦେଉଛି । କିନ୍ତୁ ତମର ଓ ମୋର ନସୀବ୍ ଖରାପ । ଲେଖି ବସିଲାକ୍ଷଣି ମୋ ଭିତରେ ଯେଉଁ ଖର ଦୃଷ୍ଟି ସମାଲୋଚକ ପୁରୁଷଟି ଅଛନ୍ତି ସେ ବିଘ୍ନ ପହଞ୍ଚାଉଛନ୍ତି । ମୋ ଲେଖା ତମର ଓ ଅନ୍ୟ ପାଠକମାନଙ୍କ ମନକୁ ପାଇବ କି ନାହିଁ, ତା ଜାଣିବା ପୂର୍ବରୁ ମୋରିଠାରୁ କାଟ ଖାଇ ଅଳିଆ ଟୋକେଇକୁ ଯାଉଛି । ଏପରି ଅବସ୍ଥାରେ ଉପାୟ କ'ଣ ? ବହୁତ ଭାବିଚିନ୍ତି ତମକୁ ଖଣ୍ଡେ ଲମ୍ବା ଚିଠି ଲେଖି ସନ୍ତୁଷ୍ଟ କରିବାକୁ ଠିକ୍ କରିଛି" । ଉକ୍ତ ଦୀର୍ଘ ଚିଠିରେ ନବକୃଷ୍ଣ ଚୌଧୁରୀ 'ଆଧୁନିକ'ରେ ପ୍ରକାଶ ପାଇଥିବା 'ବିବାହ ସମସ୍ୟା' ନାମକ ପ୍ରବନ୍ଧର ଆଲୋଚନା କରିଛନ୍ତି । ଚିଠିର ଶେଷ ଆଡକୁସେ କହିଛନ୍ତି - "କମ୍ରେଡ୍ ସମ୍ପାଦକ ! କ୍ଷମା କରିବ । ଆହୁରି କେତେକ ବିଷୟ ଏ ଚିଠିରେ ଲେଖିବାର ଇଚ୍ଛା ଥିଲେ ମଧ ଲେଖିବାର ସମୟ ନାହିଁ । ସାହିତ୍ୟ କ୍ଷେତ୍ରରେ 'ଆଧୁନିକ' ବିପ୍ଳବ ଆଣିବାକୁ ବସିଛି । ତା'ଠାରୁ ଏକ ସଙ୍ଗୀନ୍ ବିପ୍ଳବ ରାଜନୀତି ଓ ଅର୍ଥନୀତି କ୍ଷେତ୍ରରେ ସମାସନ୍ନ । ବର୍ତ୍ତମାନ ସେ ଆଡକୁ ମନ ଦେବାକୁ ହେବ ।

ଚିଠିର ଜବାବରେ ଭଗବତୀ ଚରଣ ପାଣିଗ୍ରାହୀ ପୁଣି ଥରେ ନବବାବୁଙ୍କୁ ଲେଖାଟିଏ ପାଇଁ ତାଗିଦ୍ କରିଛନ୍ତି । ତାଙ୍କର ବଦ୍ଧମୂଳ ଧାରଣ ହୋଇଛି - 'ଶ୍ରୀ ଚୌଧୁରୀଙ୍କ ପରି ପ୍ରଗତିବାଦୀ ମୂଲ୍ୟବୋଧର ବ୍ୟକ୍ତିଙ୍କ ଲେଖନୀରୁ ବୈପ୍ଳବିକ ଚେତନା ସମ୍ବଳିତ ଲେଖା ଯେ ଆତ୍ମପ୍ରକାଶ କରିବ, ଏଥିରେ ସନ୍ଦେହ ନାହିଁ ।' ସେ ଲେଖିଛନ୍ତି-

ନବବାବୁ,

ଆମେ 'ଆଧୁନିକ' ର 'ନିଜକଥା'ରେ ଘୋଷଣା କରି ଦେଇଛୁ ଯେ 'ଆଧୁନିକ କେବଳ ସାହିତ୍ୟ ପାଇଁ ସାହିତ୍ୟ ଚର୍ଚ୍ଚା କରିବାକୁ ଯାଉନାହିଁ; ଯେଉଁ ଲେଖା ମାନବର କର୍ମକ୍ଷେତ୍ରକୁ ପ୍ରଭାବିତ କରିବ, ତାକୁ କର୍ମ ପ୍ରବଣ କରିବ, ସେହିପରି ଲେଖା 'ଆଧୁନିକ'ରେ ପ୍ରକାଶିତ ହେବ । ଏ ଧରଣର ଲେଖା ଆପଣଙ୍କର କଲମରୁ ବାହାରି ପାରେ - ଆମର ଭରସା । ଆମେ ଶୁଣୁ, କେତେକଙ୍କର କଲମ କଲମ ନୁହେଁ, ତାହା ତରବାରୀ କିମ୍ବା



ବନ୍ଧୁକ । କିନ୍ତୁ ଆମେ ଏଠାରେ ତ କଲମ କଲମ ନୁହେଁ, ତାହା ତରବାରୀ କିମ୍ବା ବନ୍ଧୁକ । ଏ ଦେଶ ଲୋକଙ୍କ ପକ୍ଷରେ ସେ ସବୁକୁ ଜିନିଷ ଯାଦୁଘରର ସାମଗ୍ରୀ ହୋଇପଡ଼ିଛି । ଏପରି ଅବସ୍ଥାରେ ଆପଣଙ୍କ କଲମଟା ଯେ ଗୋଟାଏ ତରବାରୀ ବା ବନ୍ଧୁକ ହୋଇଥିବ- ସେ ଦୁରାଶା ଆମର ନାହିଁ । ତେବେ ଆପଣଙ୍କ କଲମ ଆଉ କିଛି ନ ହେଲେ ନିହାତି ଗୋଟାଏ ହାତୁଡ଼ି ବା ଦା ହେବ, ନିଶ୍ଚୟ କରି ଆପଣଙ୍କର ଦ୍ୱାରସ୍ଥ ।

ଭାଗବତୀଙ୍କର କର୍ମମୟ ଜୀବନ ମୋଟେ ବାର ତେରଟି ବର୍ଷ, ଅର୍ଥାତ୍ ୧୯୩୦ ଠାରୁ ୧୯୪୩ ମସିହା । ଏକ ଶିକ୍ଷିତ ଓ ଅର୍ଦ୍ଧ ସାମନ୍ତବାଦୀ ବଂଶରେ ଜନ୍ମଗ୍ରହଣ କରି ପରେ ଜାତୀୟବାଦୀ ଓ ସନ୍ତ୍ରାସବାଦୀ ଭଗବତୀ ମାର୍କସ୍‌ବାଦକୁ ରାଜନୀତି ଓ ସାହିତ୍ୟର ସର୍ବଶ୍ରେଷ୍ଠ ପନ୍ଥା ରୂପେ ବାଛି ନେଇଥିଲେ । ତାଙ୍କ ପରିବାରର ଅଗ୍ରଜ ଦୁଇ ଭାଇଙ୍କଠାରୁ ସେ ଗ୍ରହଣ କରିଥିବା ଉଦାର ନୈତିକ ମାନବତାବାଦ ପରେ ରୂପାନ୍ତରିତ ହୋଇଥିଲା ବୈଜ୍ଞାନିକ ସାମ୍ୟବାଦରେ । ଏଥିପାଇଁ ସେ ଆଗରୁ ନିଜର ମାନସିକ ପ୍ରସ୍ତୁତି କରି ସାରିଥିଲେ ବୋଲି ଜଣାପଡେ । ଛାତ୍ରବସ୍ଥାରେ ଯାଚକ ଲେନ୍‌ରେ ଥିବା ଗୋଟିଏ ଭଡା ଘରେ ସେ ତାଙ୍କ ବଡ଼ଭାଇ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଘରେ ରହୁଥାନ୍ତି । ସେତେବେଳେ ସେଲମା ଲାଗରଲାଫ୍‌ଙ୍କର 'ଆଉଷ୍ଟ କାଷ୍ଟ' ତାଙ୍କ ଦ୍ୱାରା ଅନୂଦିତ ହୋଇ ଧାରାବାହିକ ଭାବରେ 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ପାଉଥାଏ । "ଦିନେ ଉତ୍କଳ ସାହିତ୍ୟର ସୁଯୋଗ୍ୟ ସମ୍ପାଦକ ବିଶ୍ୱନାଥ କରଙ୍କ ସମ୍ବନ୍ଧରେ ବୈକୁଣ୍ଠନାଥ ଓ ଭଗବତୀଙ୍କ ମଧ୍ୟରେ ଯୁକ୍ତିତର୍କ ଚାଲିଲା । ଭଗବତୀ ବିଶ୍ୱନାଥ ବାବୁଙ୍କର ପ୍ରତିକ୍ରିୟାଶୀଳ ମନୋଭାବ ବିଷୟରେ ଯୁକ୍ତି ବାଢୁଥାନ୍ତି । କିନ୍ତୁ ସେ କଥା ପ୍ରତିବାଦ କରୁଥାନ୍ତି ବୈକୁଣ୍ଠନାଥ । ସେତେବେଳେ କଂଗ୍ରେସ ହିଁ ରାଜନୀତି କ୍ଷେତ୍ରରେ ଭଗବତୀଙ୍କର ଆଦର୍ଶ ଅଥଚ ବିଶ୍ୱନାଥ ବାବୁ ଥିଲେ କଂଗ୍ରେସର ବିରୋଧୀ । ଏହି ରୂପେ ରାଜନୀତି ଓ ସାହିତ୍ୟ ସମ୍ମିଶ୍ରଣରେ ତର୍କର ଉତ୍ତାପ ବଢି ଚାଲିଲା । ଶେଷରେ ବୈକୁଣ୍ଠବାବୁ 'ଉତ୍କଳ ସାହିତ୍ୟ'ରେ ଭଗବତୀଙ୍କ ସେଲମାଗରଲାଫ୍‌ଙ୍କର ଅନୁବାଦ ପ୍ରକାଶ ପାଉଥିବା କଥା ଉତ୍‌ଥାପନ କରିଥିଲେ । ସଙ୍ଗେ ସଙ୍ଗେ ଭଗବତୀ ତାଙ୍କ ଅନୁବାଦର ବାକି ପାଣ୍ଡୁଲିପିଟକ ଫେରାଇ ଆଣିବାକୁ ବାହାରିଲେ ଏବଂ ବିଶ୍ୱନାଥ ବାବୁଙ୍କ ସହିତ ତାଙ୍କର ମତାନୈକ୍ୟ ଥିବାରୁ ସେ ପାଣ୍ଡୁଲିପିର ଅବଶିଷ୍ଟାଂଶ ପ୍ରକାଶ କରିବାକୁ ଚାହାନ୍ତି ନାହିଁ କହି ତାହା ତାଙ୍କଠାରୁ ଘେନି ଆସିଥିଲେ ।

ବୋଧହୁଏ ଭଗବତୀ ୧୯୨୯/୩୦ ବେଳକୁ ମାନସିକ ସ୍ତରରେ ପ୍ରସ୍ତୁତି ଆରମ୍ଭ କରି ଦେଇଥିଲେ ପ୍ରତିକ୍ରିୟାଶୀଳ ଶକ୍ତିର ଦୃଢ଼ ମୁକାବିଲା ପାଇଁ । ୧୯୨୯ ମସିହାରେ ଉତ୍କଳ 'ସାହିତ୍ୟ'ରେ ପ୍ରକାଶ ପାଇଥିଲା ତାଙ୍କର 'ଜଙ୍ଗଲି' ଗଳ୍ପ । ଏହି ୧୯୨୯ ଠାରୁ ୧୯୩୩ ମସିହାର ଶେଷ ପର୍ଯ୍ୟାୟ ଯାଏଁ ହେଉଛି ଭଗବତୀଙ୍କ କର୍ମମୟ ଜୀବନର ପ୍ରାଥମିକ ସ୍ତର । ସେଠି ସେ ଆଦର୍ଶ ପାଇଁ ଆତ୍ମୋତ୍ସର୍ଗ ଲାଗି ପ୍ରସ୍ତୁତ ହେଉଥିବା ଜଣେ ଯୁବକ; ଜାତୀୟତାବାଦର ଅଗ୍ନିସ୍ଫୁଲିଙ୍ଗ । ଏ ସମୟରେ ତାଙ୍କର 'ସହକାର', 'ଭଞ୍ଜପ୍ରଦୀପ', 'ନବ ଭାରତ' 'ଉତ୍କଳ ସାହିତ୍ୟ' ପ୍ରଭୃତି ପତ୍ରିକାରେ ପ୍ରକାଶିତ ଲେଖା ଗୁଡ଼ିକରେ ଏହି ସବୁ ଚିନ୍ତାଧାରାର ସ୍ପଷ୍ଟ ଛବି ଆମେ ଦେଖୁ । ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ବେଳେ କଲେଜରେ ପାଠ ପଢୁଥିବା ଭଗବତୀ ସତ୍ୟାଗ୍ରହୀମାନଙ୍କ ଉପରେ ନିର୍ଯ୍ୟାତନା ଓ ପୋଲିସର ଦମନଲୀଳା ବିରୁଦ୍ଧରେ ଛାତ୍ରମାନଙ୍କୁ ସଙ୍ଗଠିତ କରୁଥିଲେ । ୧୯୩୩ ମସିହା ଯାଏ ଜଣାପଡି ନଥିଲା ଯେ କଂଗ୍ରେସର ଆଭିମୁଖ୍ୟରେ ବିଶ୍ୱାସୀ ଭଗବତୀ ପରେ କମ୍ୟୁନିଷ୍ଟ ହେବେ । ତାଙ୍କର ଜଣେ ସହପାଠୀ ଶ୍ରୀ ଶ୍ୟାମସୁନ୍ଦର ମିଶ୍ରଙ୍କ ବକ୍ତବ୍ୟକୁ ଏଠାରେ ଉଦ୍ଧାର କରାଯାଇପାରେ । ସେ କହନ୍ତି - "୧୯୩୧ ଠାରୁ ୧୯୩୩ ଯାଏ ଭଗବତୀ ଚରଣଙ୍କ ସହିତ ଏକା ସାଙ୍ଗରେ ଏମ.ଏ. ପଢିବାର ସୌଭାଗ୍ୟ ମୋର ଘଟିଥିଲା । ମୁଁ ଲକ୍ଷ୍ୟ କରିଛି, ଭଗବତୀ ଚରଣ ଯେ ଭବିଷ୍ୟତରେ ଜଣେ କମ୍ୟୁନିଷ୍ଟ ନେତା ହୋଇ ଠିଆ ହେବେ, ଏହାର କୌଣସି ଆଭାସ ମୁଁ ପାଇ ନଥିଲି । ସେ ସାଧାରଣତଃ ଚରମପନ୍ଥୀ ରାଜନୀତିକୁ ପସନ୍ଦ କରୁଥିଲେ ଓ ଏ ସଂପର୍କରେ ପଣ୍ଡିତ ଜବାହାରଲାଲ ନେହେରୁ ତଥା ନେତାଜୀ ସୁଭାଷ ଚନ୍ଦ୍ରଙ୍କ କାର୍ଯ୍ୟାବଳୀର ତାରିଫ୍ କରୁଥିଲେ । କିନ୍ତ ଏହାଛଡା ତାଙ୍କର କଥାଭାଷା ତଥା ଲେଖା ଲେଖିରେ ମୁଁ ମାର୍କସ୍‌ବାଦ ବା ଲେନିନ୍ ବାଦ ପ୍ରତି ତାଙ୍କର କୌଣସି ଆନୁଗତ୍ୟର ନିଦର୍ଶନ ଦେଖି ନଥିଲି ।"

୧୯୩୪ଠାରୁ ୧୯୩୬ ପର୍ଯ୍ୟନ୍ତ ଭଗବତୀଙ୍କ କର୍ମମୟ ଜୀବନର ଯେଉଁ ସ୍ତର ଆମେ ଦେଖୁ, ତା ହେଉଛି ପ୍ରକୃତରେ ସଂଗ୍ରାମର ଓ ପ୍ରତିଷ୍ଠାର । ଏ କାଳରେ ସେ 'ସାରଥି'ରେ ଧାରାବାହିକ ପ୍ରବନ୍ଧ ଲେଖିଛନ୍ତି, ସୋସାଲିଷ୍ଟ ପାର୍ଟିର ସେକ୍ରେଟାରୀ

* ସାହିତ୍ୟରେ ନବଯୁଗ ଓ ଆଧୁନିକ - କାଳିନ୍ଦୀଚରଣ ପାଣିଗ୍ରାହୀ





ହୋଇଛନ୍ତି, 'ନବଯୁଗ ସାହିତ୍ୟ ସଂସଦ'ର କର୍ଣ୍ଣଧାର ହୋଇ 'ଆଧୁନିକ' ପତ୍ରିକା ସମ୍ପାଦନା କରିଛନ୍ତି । 'ଆଧୁନିକ'ର ସଂପାଦକୀୟ ଗୁଡ଼ିକ ହିଁ ଏହି ସାଲିସ୍‌ହୀନ ସଂଗ୍ରାମର ଉଜ୍ଜ୍ୱଳ ସ୍ୱାକ୍ଷର ବହନ କରିଛି । ଏ କାଳରେ ରଚିତ ତାଙ୍କର ଗଳ୍ପ ଗୁଡ଼ିକରେ ପରିଚ୍ଛନ୍ନ ମାର୍କ୍‌ସବାଦୀ ଦୃଷ୍ଟିଭଙ୍ଗୀର ସ୍ୱାକ୍ଷର ଦେଖିବାକୁ ମିଳେ । 'କମ୍ୟୁନିଷ୍ଟ ମାନିଫେଷ୍ଟୋ'ର ଅନୁବାଦ ସାଙ୍ଗକୁ 'ଶିକାର', 'ହାତୁଡ଼ି ଓ ଦା' ପ୍ରଭୃତି ଗଳ୍ପ ଏହି ସମୟର ରଚନା ।

"ଶୋଷଣ ସତ୍ୟ, ଏ ଶୋଷଣର କାରଣ ହେଉଛି ଦେଶର ଧନିକ ଓ ପୁରୋହିତ ଶ୍ରେଣୀ । ଧନିକ ଓ ପୁରୋହିତର ବିଲୟରେ ଶୋଷଣର ବିନାଶ ତଥା ବ୍ୟକ୍ତି ସ୍ୱାତନ୍ତ୍ର୍ୟର ପ୍ରତିଷ୍ଠା - ଏ ମତବାଦ ଭିତରୁ ପ୍ରଥମଟି ଅର୍ଥାତ୍ ଶୋଷଣର ସତ୍ୟତା କେବଳ ୧୯୩୬ ସାଲ୍ ପୂର୍ବ ଓଡ଼ିଆ ସାହିତ୍ୟରେ ଦେଖାଦେଇଥିଲା । କିନ୍ତୁ ଦ୍ୱିତୀୟଟି ଅର୍ଥାତ୍ ଶୋଷଣର କାରଣ ଯେ ଦେଶର ଧନିକ ଓ ପୁରୋହିତ ଶ୍ରେଣୀ, ତାହା ସ୍ପଷ୍ଟତଃ କେଉଁଠି ଘୋଷିତ ହୋଇନଥିଲା । ତୃତୀୟ ଅର୍ଥାତ୍ ଶୋଷଣର ଅବସାନ ତଥା ବ୍ୟକ୍ତି ସ୍ୱାତନ୍ତ୍ର୍ୟର ପ୍ରତିଷ୍ଠା ଏ ସାହିତ୍ୟରେ ଥିଲା ସମ୍ପୂର୍ଣ୍ଣ ସ୍ୱପ୍ନ । ଘିନୁଆ ଜୀବନ ସଂବଳିତ 'ଶିକାର' ଗଳ୍ପରେ ଉପରୋକ୍ତ ତିନୋଟି ସତ୍ୟର ଚିତ୍ର ସ୍ପଷ୍ଟତଃ ଅଙ୍କିତ । ଘିନୁଆର ବିଚାର ଧାରା ଏଇ ରାଜନୈତିକ ନୂତନ ମତବାଦର ମୂର୍ତ୍ତ ସଂକେତ ମାତ୍ର । ଏ ବିଚାର ଧାରାରେ ଜୀବନର ଏକ ନୂତନ ମୂଲ୍ୟବୋଧ ସ୍ୱତଃ ପ୍ରକଟିତ ଓ ପ୍ରତିଷ୍ଠିତ । ୧୯୩୬ ସାଲ୍ ପର ଓଡ଼ିଆ ସାହିତ୍ୟ ଏଇ ନୂତନ ମୂଲ୍ୟବୋଧରେ ହୋଇଛି ପବିତ୍ର ଅନୁରଂଜିତ ଓ ପରିପୁଷ୍ଟ ।

ସବୁଜ ଯୁଗୀୟ ରୋମାଣ୍ଟିକ୍ ଭାବଧାରା ଓ କଳ୍ପନା ପ୍ରବଣତା ମଧ୍ୟରେ ଓଡ଼ିଆ ସାହିତ୍ୟକୁ ମୁକ୍ତି ଦେଇ ଭଗବତୀ 'ଆଧୁନିକ' ଓ ନବଯୁଗ ସାହିତ୍ୟ ସଂସଦ' ମାଧ୍ୟମରେ ସମାଜବାଦୀ ବାସ୍ତବତାର ଧାରା ଆଣିଛନ୍ତି । ୧୯୩୭ ଠାରୁ ୧୯୩୯ ମଧ୍ୟରେ ଭଗବତୀଙ୍କ ଚେତନା ସ୍ତରରେ ଆଉ ଏକ ବିକାଶକୁ ଆମେ ଲକ୍ଷ୍ୟ କରିଥାଉ । ଏ କାଳରେ ସେ ତାଙ୍କ ସାଥୀମାନଙ୍କ ସହ ସାମନ୍ତବାଦ ବିରୁଦ୍ଧରେ କଠୋର ସଂଗ୍ରାମ କରନ୍ତି । ୧୯୩୮ ମସିହାରେ ଭଗବତୀଙ୍କ ସମ୍ପାଦନାରେ ପ୍ରକାଶ ପାଇଥିଲା 'କୃଷକ' । ଏହାର ସମ୍ପାଦକୀୟ ସ୍ତମ୍ଭ ଗୁଡ଼ିକରେ ଚାଷୀ ମୂଲିଆ ମାନଙ୍କର ସମସ୍ୟା ଗୁଡ଼ିକ ସମ୍ପର୍କରେ ଆଲୋକପାତ କରାଯାଉଥିଲା । 'କୃଷକ'ର ପ୍ରଥମ ବର୍ଷ ପ୍ରଥମ ସଂଖ୍ୟାର ସଂପଦକୀୟରେ ସେଥିପାଇଁ ଭଗବତୀ ଚରଣ ପାଣିଗ୍ରାହୀ ଘୋଷଣା କରିଥିଲେ - "କଂଗ୍ରେସର ସ୍ୱାଧୀନତା ସଂଗ୍ରାମକୁ ବଳଶାଳୀ ତଥା ଗଣତନ୍ତ୍ର ମୂଳକ କରିବା ନିମନ୍ତେ 'କୃଷକ' ବରାବର ଜାଗ୍ରତ ରହିବ । ଶୋଷିତ ଶ୍ରେଣୀର ଏହି ନ୍ୟାର୍ଯ୍ୟ ଦାବୀ ନିର୍ଭୟରେ ସମର୍ଥନ କରିବା ଯୋଗୁଁ ଯଦି ସମାଜର ବର୍ତ୍ତମାନ କ୍ଷମତାଶାଳୀ ବା ଧନିକ ଶ୍ରେଣୀର ବିରାଗ ଭାଜନ ହେବାକୁ ପଡ଼େ, ସେଥିପାଇଁ କୃଷକ ଭୃକ୍ଷେପ କରିବ ନାହିଁ ।" ଭାରତବର୍ଷର ସ୍ୱରାଜ କହିଲେ ଚାଷୀ ମୂଲିଆକୁ ସ୍ୱରାଜକୁ ବୁଝାଏ ବୋଲି 'କୃଷକ'ର ଗୋଟିଏ ସଂଖ୍ୟାରେ ଅଭିମତ ପ୍ରକାଶ ପାଇଥିଲା । ଯଦି କୃଷକ-ମାନେ ଶୋଷଣମୁକ୍ତ ନ ହୁଅନ୍ତି, ତା ହେଲେ ସ୍ୱାଧୀନତାର ମୂଲ୍ୟ କିଛି ନାହିଁ । ସେଥିରେ ଭଗବତୀବାବୁ ଦୃଢ଼ ଭାବରେ କହିଥିଲେ "ଝାଳବୁହା କାମ କରି ମଧ୍ୟ ଯେଉଁ ଦେଶରେ ଲୋକଙ୍କୁ ଦି'ବେଳା ଦି'ବକତ ଖାଇବାକୁ ମିଳେ ନାହିଁ, ସ୍ୱରାଜ ବୋଇଲେ ସେମାନେ ବୁଝନ୍ତି ପେଟକୁ ଦାନା, ପିଠିକି କନା, ଆଉ ମୁଣ୍ଡ ଗୁଞ୍ଜିବାକୁ ଖଣ୍ଡେ ସ୍ୱାସ୍ଥ୍ୟକର ଘର; ଯେଉଁ ଦେଶରେ ଲୋକେ ରାଜା, ଜମିଦାର, ଶେଠ, ସାହୁକାର ଓ ସରକାରର ଅତ୍ୟାଚାର ଏବଂ ଜୁଲମ୍‌ରେ ପେଡ଼ି-ପେଷି ହୋଇଯାଉଛନ୍ତି, ସେ ଦେଶ ଲୋକେ ସ୍ୱାଧୀନତା ବୋଇଲେ ବୁଝନ୍ତି ଏସବୁ ଜୁଲମ୍ ଅତ୍ୟାଚାରକୁ ନିକାଶ କରିଦେବା, ଶେଷ କରିଦେବା । ଏ ଦୁଇଟି କଥା ଭାରତବାସୀର ସ୍ୱରାଜ୍ୟ । ଭାରତବାସୀ ଚାହେ ଆପଣା ମେହନତ୍‌ର ଫଳ ଭୋଗିବାକୁ, ପରର ଜୁଲମ୍ ନିକାଶ କରିବାକୁ, ମଣିଷ ଭଳି ବଞ୍ଚିବାକୁ । ଆଇନ୍ ବଳରେ ଏବେ ଯେଉଁ ଲୁଟ୍‌ତରାଜ୍ ଚାଲିଛି, ତାହା ବନ୍ଦ ହେଲେ ଯାଇ ଏ ଦେଶରେ ଶୋଷିତ ଜନସାଧାରଣ ଏ ଦେଶର ଚାଷୀ ମୂଲିଆ ନିଜ ମିହନ୍ତର ଫଳ ନିଜେ ଭୋଗି ପାରିବେ ।" ଚାଷୀ ଆନ୍ଦୋଳନର ମୁଖପତ୍ର ଥିଲେ ମଧ୍ୟ 'କୃଷକ'ରେ ମାର୍କ୍‌ସବାଦୀ ଚିନ୍ତାଧାରାର ବହୁ ଉଚ୍ଚକୋଟୀର ଲେଖା ପ୍ରକାଶ ପାଇଥିଲା । ଏଗୁଡ଼ିକ ମଧ୍ୟରେ ସାରଙ୍ଗଧର ଦାସ, ମାଳତୀ ଚୌଧୁରୀ, ଗୋକୁଳ ମୋହନ ରାୟଚୂଡ଼ାମଣିଙ୍କ ପ୍ରବନ୍ଧଗୁଡ଼ିକ ଉଲ୍ଲେଖଯୋଗ୍ୟ । ସାରଙ୍ଗଧର ଦାସ ସେତେବେଳେ ଗଡ଼ଜାତ ପ୍ରଜା ଆନ୍ଦୋଳନ ଓ ଗଡ଼ଜାତର ସମସ୍ୟା ଉପରେ ପ୍ରବନ୍ଧମାନ ରଚନା କରୁଥିଲେ । ସଚ୍ଚି ରାଉତରାୟଙ୍କର କେତେକ କବିତା ମଧ୍ୟ ଏହି 'କୃଷକ'ରେ ପ୍ରକାଶ ପାଇଥିଲା ।

୧୯୪୦ ରେ ଭଗବତୀ ଓ ତାଙ୍କର ସହକର୍ମୀଗଣ କମ୍ୟୁନିଷ୍ଟ ଷଡଯନ୍ତ୍ର ମାମଲାରେ ଗିରଫ ହୁଅନ୍ତି । ଜନଆନ୍ଦୋଳନ ଓ ସମସ୍ୟାଠାରୁ ସେମାନଙ୍କୁ ଦୂରେଇ ରଖିବା ପାଇଁ ଏହି ଗିରଫଦାରୀ

* ଶିକାର - ନଟବର ସାମନ୍ତରାୟ, ଝଙ୍କାର ୧୦ମ ବର୍ଷ ୧୦ମ ସଂଖ୍ୟା



ପ୍ରକୃତରେ ଥିଲା ଏକ ସାମ୍ରାଜ୍ୟବାଦୀ ଷଡଯନ୍ତ୍ର । ୧୯୪୦ ଠାରୁ ୧୯୪୨ ଫେବୃୟାରୀ ଯାଏ ତାଙ୍କର କାରାବାସ ସମୟରେ ଭଗବତୀ ରଚନା କରନ୍ତି 'ପୃଥିବୀ ଇତିହାସ' । ଏହା ଥିଲା ଯଥାର୍ଥରେ ମାର୍କସବାଦୀ ଦୃଷ୍ଟିଭଙ୍ଗୀରୁ ବିଶ୍ୱ ଇତିହାସର ସମୀକ୍ଷା ଓ ପର୍ଯ୍ୟାଲୋଚନା । ମାତ୍ର ପରିତାପର ବିଷୟ, ପରେ ଏହାର ପାଣ୍ଡୁଲିପି ନଷ୍ଟ ହୋଇଯାଇଥିଲା ।

ଜେଲ୍‌ରୁ ଖଲାସ ହେବାପରେ ଭଗବତୀ ଲକ୍ଷ୍ୟ କରନ୍ତି ଦେଶରେ ବିଶ୍ୱଯୁଦ୍ଧର ହୁଙ୍କାର ସାଙ୍ଗକୁ ଜନଆନ୍ଦୋଳନ ହେତୁ ବ୍ରିଟିଶ୍ ସାମ୍ରାଜ୍ୟବାଦର ମରଣ ଘଣ୍ଟି ବାଜିବାକୁ ଆରମ୍ଭ କଲାଗି । ଅନ୍ୟ ଦିଗରେ ୟୁରୋପରେ ହିଟ୍‌ଲରୀ ଶାସନର ଆତଙ୍କରାଜ । ନାଜିବାଦ ପଦାନତ ହୋଇ ସମଗ୍ର ୟୁରୋପ ଯେପରି ଥରହର । ୧୯୪୨ବେଳକୁ ସମଗ୍ର ଓଡ଼ିଶାରେ ମଧ୍ୟ ଏହି ଭୟ ଓ ଆତଙ୍କର କଳାଛାଇ ଘୋଟିଯାଇଥିଲା । ଜାପାନର ଏକ ଯୁଦ୍ଧ ଜାହାଜ ଇଂଲଣ୍ଡର ମାଲବାହୀ ଜାହାଜକୁ ପାରାଦ୍ୱୀପ ନିକଟରେ ସମୁଦ୍ରରେ ବୁଡ଼ାଇଦେବା ଯୋଗୁଁ ତାର ଧ୍ୱଂସାବଶେଷ ଆସି ଓଡ଼ିଶାର ଉପକୂଳରେ ଲାଗିଥିଲା । ଆକ୍ରମଣର ଆଶଙ୍କାରେ କଟକଠାରୁ ସମ୍ବଲପୁରକୁ ରାଜଧାନୀ ସ୍ଥାନାନ୍ତରିତ କରି ନିଆଯାଇଥିଲା । ଭାରତବର୍ଷର ଉପକୂଳ ଏବଂ ଆକାଶମାର୍ଗରେ ଜାପାନର ରଣତରୀ ଏବଂ ବିମାନର ରଣ ସଜ୍ଜା କୋକୁଆ ଭୟ ସୃଷ୍ଟି କରୁଥାଏ । ଭଗବତୀ ଏହିପରି ଏକ ପରିସ୍ଥିତିରେ ଜେଲ୍‌ରୁ ଖଲାସ ହୋଇ ପୂର୍ବରୁ ପ୍ରକାଶିତ ହେଉଥିବା ସାଇକ୍ଲୋଷ୍ଟାଇଲ୍, 'ଆଗେ ଚାଲ୍'ର ପ୍ରକାଶନ ପୁଣି ଆରମ୍ଭ କଲେ । ବ୍ରିଟିଶ ସରକାର ଏ ସମୟରେ କମ୍ୟୁନିଷ୍ଟ ପାର୍ଟିକୁ ଆଇନ୍ ସଂଗତ ବୋଲି ଘୋଷଣା କଲେ । ତେବେ ଏହା ଥିଲା ଏକ କୌଶଳ । "ଏହାଦ୍ୱାରା ସଂଗ୍ରାମମୁଖୀ କଂଗ୍ରେସ ନେତୃତ୍ୱ ଓ କର୍ମୀ ମହଲ ଭିତରେ କମ୍ୟୁନିଷ୍ଟ ପାର୍ଟି ପ୍ରତି ବିଦ୍ୱେଷ ସୃଷ୍ଟି କରିବା ଓ ଦ୍ୱିତୀୟରେ ଆଇନ୍ ସଙ୍ଗତ ହେଲାପରେ ପାର୍ଟି ମେମ୍ବରଙ୍କର ନାମ ଧାମ ଖୋଲାଖୋଲି ହୋଇଗଲେ ସେମାନଙ୍କର ଦମନ ଓ ଗିରଫଦାରୀକୁ ସହଜସାଧ୍ୟ କରିବା । ପୁଣି ମୁସଲମାନ ଲିଗ୍‌ର ଭାରତ ବିଭାଗ ପ୍ରସ୍ତାବକୁ ଯେଉଁ ବ୍ରିଟିଶ୍ ସରକାର ପ୍ରତ୍ୟାଖ୍ୟାନ କରୁଥିଲେ ସେହି ସରକାର ଲିଗ୍‌ର ପ୍ରସ୍ତାବକୁ ଆଳ କରି ଭାରତର କଂଗ୍ରେସ ନେତୃତ୍ୱକୁ ଯୁଦ୍ଧ ପରେ ଭାରତର ସ୍ୱାଧୀନତାର ପ୍ରତିଶ୍ରୁତି ଓ ନଗଦାନଗଦି ଭାରତର ପ୍ରତିରକ୍ଷା ଉପରେ ତାର କର୍ତ୍ତୃତ୍ୱକୁ ଅସ୍ୱୀକାର କରିଥିଲେ। ତେଣୁ ୧୯୪୨ ଅଗଷ୍ଟ, ବମ୍ବେ, ପ୍ରସ୍ତାବରେ କଂଗ୍ରେସ ନେତୃତ୍ୱ ଭାରତର ପ୍ରତ୍ୟେକ ପ୍ରଦେଶକୁ (ଏବେ ଯାହା ରାଜ୍ୟ ନାମରେ ନାମିତ) ଆତ୍ମ ନିୟନ୍ତ୍ରଣ ଅଧିକାର ଓ ସବୁତକ ବଳକା କ୍ଷମତା ଦେବା ପାଇଁ ସ୍ୱୀକାର ହୋଇଥିଲେ ମଧ୍ୟ 'ଭାରତ ଛାଡ' ରଣଧ୍ୱନିର ପାଲଟା ଭାବରେ ମୁସଲମାନ ଲିଗ୍‌ର ସଭାପତି ଜିନ୍ନା ଓଲଟା ରଣଧ୍ୱନି ଦେଲେ - 'ଭାରତକୁ ବାଣ୍ଟିଦିଅ, ବାହାରିଯାଅ । Divide and Quit ।'

ଭଗବତୀ ଦେଶର ଏହି ବିଷମ ଅବସ୍ଥାରେ 'ମୁକ୍ତିଯୁଦ୍ଧ' ସାପ୍ତାହିକ ପତ୍ରିକାରେ ପ୍ରଥମ ସଂଖ୍ୟାର ସମ୍ପାଦକୀୟରେ ଇଂରେଜ୍ ସରକାରଙ୍କ ବିରୁଦ୍ଧରେ ଦୃଢ ସ୍ୱର ଉତ୍ତୋଳନ କରିଥିଲେ । ଫଳରେ ଏହି ପତ୍ରିକାର ପ୍ରଥମ ସଂଖ୍ୟା ସରକାରଙ୍କ ଦ୍ୱାରା ବାଜ୍ୟାପ୍ତ ହୋଇଥିଲା । ବିଶ୍ୱଯୁଦ୍ଧ ଚାଲିଥିଲାବେଳେ 'ମୁକ୍ତିଯୁଦ୍ଧ'ରେ 'ଯୁଦ୍ଧ ସମାଚାର' ଶିରୋନାମାରେ ରୁଷିଆର ଲାଲସେନାର ଅଗ୍ରଗତି ଓ ହିଟଲର ପରାଜୟ ସମ୍ବାଦମାନ ପ୍ରକାଶ ପାଉଥିଲା । ଏହି 'ଯୁଦ୍ଧ ସମାଚାର' ଲେଖୁଥିଲେ ଅନନ୍ତ ପଟ୍ଟନାୟକ ଓ ଭଗବତୀ ଚରଣ ପାଣିଗ୍ରାହୀ । ଫାସିଷ୍ଟ ଶକ୍ତିର ପରାଜୟକୁ ଲକ୍ଷ୍ୟ କରି ଭଗବତୀ 'ମୁକ୍ତିଯୁଦ୍ଧ'ର ଗୋଟିଏ ସଂଖ୍ୟାରେ ଲେଖିଥିଲେ "... ଆଜି ଯୁଦ୍ଧର ଗତି କେଉଁଆଡେ ? ସବୁଠାରେ ଅକ୍ଷଶକ୍ତି ଆତ୍ମରକ୍ଷା କରୁଛି, ସେତିକି ନୁହେଁ, ଫାସିଷ୍ଟ ଶାଗୁଣାର ଗୋଟିଏ ଡେଣା ଛିଡି ପଡିଲାଣି । ଇଟାଲୀରୁ ଫାସିଷ୍ଟ ଭୂତ ଛାଡି ପଳାଇଲାଣି । ଡକେଇତ ସର୍ଦ୍ଦାର ହିଟଲର ଆଜି ପ୍ରମାଦ ଗଣୁଛି । ଏପଟେ ଜାପାନ ? ବିରିମାଡ ଦେଖି କୋଳଥ ଚୋପା ।' ଅବଶ୍ୟ ତା ଉପରେ ଏପର୍ଯ୍ୟନ୍ତ ମାଡ ବସିନାହିଁ । ତାର ବଳ ବହପ ପୁରା ରହିଛି । କେବଳ ପଶ୍ଚିମରେ ନିଜର ସଲ୍ହା ସାଥୀଙ୍କର ଦଶା ଦେଖି ଭାରତ ଉପରେ ଆକ୍ରମଣ କରିବାକୁ ତାର ସାହସ ଖଟିନାହିଁ । କିନ୍ତୁ ସେ ଦେଖୁଛି, ଭାରତ ଅଧିକାର ନ ହେଲେ ତା'ର ମଧ୍ୟ ଗୋଟାଏ ସାମ୍ରାଜ୍ୟବାଦୀ ଶକ୍ତି ଭାବରେ ତିଷ୍ଠିବା ସମ୍ଭବ ନୁହେଁ । ସେଥିଲାଗି ସେ ବରାବର ସଲବାଦ ହେବାରେ ଲାଗିଛି ।"

୧୯୪୨ ଅଗଷ୍ଟ ମାସ ଠାରୁ ୧୯୪୩ ଅକ୍ଟୋବର ଯାଏ ଓଡ଼ିଶାର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଯାଏଁ ଭଗବତୀ ଅକ୍ଳାନ୍ତ ପରିଶ୍ରମ କରି ଗସ୍ତ କରିଥିଲେ । ଇଂରେଜ ରାଜ ବିରୁଦ୍ଧରେ ଜନମତକୁ ସଂଗଠିତ କରିବା ପାଇଁ କଂଗ୍ରେସ ନେତୃବର୍ଗଙ୍କର କାରାମୁକ୍ତି ପାଇଁ ଓ ଦୁର୍ଭିକ୍ଷ ଅନାହାରରେ ସଢୁଥିବା ମଣିଷମାନଙ୍କର ସେବା ଶୁଶ୍ରୁଷା ପାଇଁ । ୧୯୪୩ ଅକ୍ଟୋବର ମାସରେ ଗଞ୍ଜାମର





ଅନାହାର ଗ୍ରସ୍ତ ଲୋକଙ୍କୁ ରିଲିଫ୍ ବାଣ୍ଟିବାକୁ ଯାଇ ସେ ବାସିଲାରୀ ଡିସେଣ୍ଟ୍ରି ରୋଗ ନେଇ ଫେରିଲେ । ସେହି ଅବସ୍ଥାରେ କଟକ ବଡ଼ ଡାକ୍ତରଖାନାରେ ଭର୍ତ୍ତି ହୋଇ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ଓଡ଼ିଶାରେ ଦାସୋତ୍ତର (ପଣ୍ଡିତ ଗୋପବନ୍ଧୁ ଦାସ) ଯୁଗର ଏକ ମହାନ୍ ଦୀପଶିଖା ଅକାଳରେ ଲିଭିଗଲା ।

ଗୋପବନ୍ଧୁ ଓ ଭଗବତୀ, ଇତିହାସର ଦୁଇଟି ଭିନ୍ନ ପର୍ଯ୍ୟାୟରେ ଏ ଦୁଇ ଯୁଗପୁରୁଷଙ୍କର ଆବିର୍ଭାବ ଘଟିଥିଲା । ଗୋପବନ୍ଧୁ ପ୍ରାଣ ଉତ୍ସର୍ଗ କରି ଯାଇଥିଲେ ଦଳିତ ପୀଡିତଙ୍କ ପାଇଁ । ଆଖିରୁ ସେମାନଙ୍କ ପାଇଁ ଲୁହ ବୁହାଇଥିଲେ । ଭଗବତୀ ଦଳିତ ମାନବର ସେବା ସଙ୍ଗେ ଶୋଷଣର ଅବସାନ ପାଇଁ ସଂଗଠନ ମାନ କରି ବେସାଲିସ୍ ବିଦ୍ରୋହର ଡାକରା ଦେଇଥିଲେ । ଜାତୀୟବାଦ ଥିଲା ଗୋପବନ୍ଧୁଙ୍କର ଆଦର୍ଶ । ଭଗବତୀ ସର୍ବହରାର ଆନ୍ତର୍ଜାତୀୟତାବାଦ ପ୍ରତିଷ୍ଠା ପାଇଁ ସଂଗ୍ରାମ କରିଥିଲେ । ଗୋପବନ୍ଧୁଙ୍କ ସାଧନା ଥିଲା ମାନବବତାବାଦର ପ୍ରତିଷ୍ଠା ପାଇଁ, ଭଗବତୀ ସାଧନା କରିଥିଲେ ବୈଜ୍ଞାନିକ ସାମ୍ୟବାଦର ପ୍ରବର୍ତ୍ତନ ଲାଗି । ଦୁହିଁଙ୍କ ମଧ୍ୟରେ ଏ ଯେଉଁ ଫରକ ଥିଲା, ତାହା ହେଉଛି ଦୁଇ ଯୁଗ ପୁରୁଷଙ୍କ ମଧ୍ୟରେ ଥିବା ପନ୍ଥା ଓ ଆଦର୍ଶର ପାର୍ଥକ୍ୟ । ସଂସ୍କୃତି କ୍ଷେତ୍ରରେ ଗୋପବନ୍ଧୁ ଓ ଭଗବତୀ ଦୁହେଁ ଦୁଇଟି ଯୁଗର ପ୍ରତିନିଧିତ୍ୱ କରନ୍ତି - ଜଣେ ସତ୍ୟବାଦୀ ଯୁଗର ଆଉ ଜଣେ ପ୍ରଗତିବାଦୀ ଯୁଗର । ଭଗବତୀଙ୍କ ବନ୍ଧୁ କବି ଅନନ୍ତ ପଟ୍ଟନାୟକ କହନ୍ତି - "ଯେ କୌଣସି ଐତିହାସିକ ଅନୁବର୍ତ୍ତନର ଉନ୍ମେଷ ମୁହୂର୍ତ୍ତରେ ଯେଉଁମାନେ ନୂତନ କର୍ମଧାରାର ଆବାହକ ହୁଅନ୍ତି, ସେମାନଙ୍କୁ ଏକାଧାରରେ ସାମ୍ବାଦିକ, ସାହିତ୍ୟିକ, ବକ୍ତା ଅହିଂସା ବା ସହିଂସ ସୈନିକ ହେବାକୁ ପଡେ । ସେମାନେ ପ୍ରଚାରକ, ସଂଗଠକ; ପୁଣି ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସଂସ୍କାରକ ଓ ବୈପ୍ଳବିକ ପରିବର୍ତ୍ତନକାରୀ ହୁଅନ୍ତି ।

ନିଜର ସ୍ୱଳ୍ପ ଆୟୁକାଳ ମଧ୍ୟରେ ରାଜନୀତି ଓ ସଂଗଠନର କଠୋର ସଂଗ୍ରାମ ଭୂମିରେ ଅବତୀର୍ଣ୍ଣ ହୋଇଥିବା ଯୋଗୁଁ ଭଗବତୀ ସାଧନା ପାଇଁ ଯଥେଷ୍ଟ ସମୟ ଦେଇପାରି ନଥିଲେ । ତେବେ ସେଇ ସ୍ୱଳ୍ପ ସମୟ ସୀମା ମଧ୍ୟରେ ମାର୍କସବାଦକୁ ଏକ ପ୍ରାୟୋଗିକ ଦୃଷ୍ଟିରୁ ବିଚାର କରି ଦୁର୍ବାର ଗତିରେ ସେ ତାଙ୍କର ସହକର୍ମୀମାନଙ୍କ ସହ ଅଭିଯାନ ଆରମ୍ଭ କରି ଦେଇଥିଲେ । ସେ ଖାଲି ମାର୍କସବାଦର ବୌଦ୍ଧିକ ବାର୍ତ୍ତାବହ ନଥିଲେ, ଥିଲେ ପ୍ରୟୋଗ କର୍ତ୍ତା - ଯଥାର୍ଥରେ ଓଡ଼ିଶାରେ ମାର୍କ୍ସବାଦୀ ଚେତନାର ଭଗୀରଥ ।

'ଡଗର' ପତ୍ରିକାରେ (୧୯୫୫ ମସିହା - ଡଗର ଊନବିଂଶ ବର୍ଷ, ତୃତୀୟ ସଂଖ୍ୟା) ଆଲୋଚକ ଡକ୍ଟର ନଟବର ସାମନ୍ତରାୟ 'ଓଡ଼ିଆ ପ୍ରଗତିଶୀଳ ସାହିତ୍ୟର ଇତିହାସ' (ପ୍ରଥମ ପର୍ଯ୍ୟାୟ) ସଂପର୍କରେ ଏକ ପ୍ରବନ୍ଧ ଲେଖିଥିଲେ । ଉକ୍ତ ପ୍ରବନ୍ଧରେ ଶ୍ରୀ ଭଗବତୀ ଚରଣ ପାଣିଗ୍ରାହୀଙ୍କୁ ଓଡ଼ିଆ ପ୍ରଗତିଶୀଳ ସାହିତ୍ୟର ପ୍ରତିଷ୍ଠାତା ଭାବରେ ସେ ଗ୍ରହଣ କରିଥିଲେ । ସେ ଯେଉଁ ସବୁ ଯୁକ୍ତିମାନ ଦର୍ଶାଇଥିଲେ, ତାହା ହେଲା -

୧. ୧୯୩୮ରେ କବିତା ସଂକଳନ 'ଅଭିଯାନ' ପ୍ରକାଶିତ ହେବା ପରେ କବି ରାଉତରାୟ ଜନସାଧାରଣଙ୍କ ନିକଟକୁ ଆସିବାର ସୁବିଧା ପାଇଥିଲେ । ଏଥିରେ ଥିବା ବୈପ୍ଳବିକ ଚେତନାର କବିତାଗୁଡ଼ିକ ୧୯୩୭ ବା ତା ପରର ଲେଖା ।

୨. ୧୯୨୧ ଠାରୁ ୧୯୩୦ ମଧ୍ୟରେ ସବୁଜ କବିମାନେ ଯେଉଁ ସାହିତ୍ୟାଦର୍ଶ ପ୍ରତିଷ୍ଠା କରି ଯାଇଥିଲେ, ଶ୍ରୀ ରାଉତରାୟ ଥିଲେ ସେହି ଆଦର୍ଶର ଅନୁଗାମୀ କବି । ତାଙ୍କର ପ୍ରାଥମିକ ରଚନା 'ପୂର୍ଣ୍ଣିମା' ଓ 'ପାଥେୟ'ରେ ଏହା ସ୍ପଷ୍ଟ ।

୩. ପ୍ରାକ୍ 'ଚିତ୍ରଗ୍ରୀବ' କାଳୀନ ତାଙ୍କର 'ଶ୍ରମିକ କବି'କୁ ଛାଡି ଦେଲେ ଆଉ କୌଣସି ରଚନାରେ ବୈପ୍ଳବିକ ଆଭିମୁଖ୍ୟ ପରିଲକ୍ଷିତ ହୁଏ ନାହିଁ ।

୪. ଶ୍ରୀ ରାଉତରାୟଙ୍କ ପୂର୍ବରୁ ଅନନ୍ତ ପଟ୍ଟନାୟକ, କ୍ଷିତୀଶ୍ ଚନ୍ଦ୍ର ଦେ, ମୋହନ ଦାସ, ବୀର କିଶୋର ଦାସ ପ୍ରଭୃତି ଏଥିରେ ହାତ ଦେଇଥିଲେ ।

ଯେଉଁ ପରିସ୍ଥିତିରେ ୧୯୩୬ ପରବର୍ତ୍ତୀ କାଳରେ ସଚ୍ଚିରାଉତରାୟ ଓ ଅନ୍ୟମାନେ ପ୍ରଗତିଶୀଳ ସାହିତ୍ୟ ରଚନା ଦିଗରେ ବ୍ରତୀ ହେଲେ, ତାର ସମ୍ୟକ ପରିଚୟ ଦେଇଛନ୍ତି ସାମନ୍ତରାୟ । ଏଥିପାଇଁ ସେ 'ନବଯୁଗ ସାହିତ୍ୟ ସଂସଦ' ଓ 'ଆଧୁନିକ'ର ଭୂମିକା ସମ୍ପର୍କରେ ବିଶଦ ଆଲୋଚନା କରିଛନ୍ତି । ଶ୍ରୀ ସାମନ୍ତରାୟଙ୍କର ଏହି ଆଲୋଚନାର ପ୍ରତିବାଦ କରି ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ ଆସନ୍ତା କାଲିରେ (୧୯୬୦ ଜାନୁୟାରୀ ଓ ମେ ମାସ ସଂଖ୍ୟା) ଓଡ଼ିଆ ସାହିତ୍ୟରେ ପ୍ରଗତିବାଦର ଆଦ୍ୟ ପ୍ରବର୍ତ୍ତକ କିଏ ନାମକ ପ୍ରବନ୍ଧ ଲେଖନ୍ତି । ଏଥିରେ ସେ ସଚ୍ଚିରାଉରାୟଙ୍କୁ ଓଡ଼ିଆ ପ୍ରଗତି ସାହିତ୍ୟର ସ୍ରଷ୍ଟା ଭାବରେ ପ୍ରତିପାଦନ କରି ୧୯୩୦ ରୁ ୧୯୩୭ ଯାଏ ସେ ଧାରାବାହିକ ଭାବରେ ପତ୍ର -ପତ୍ରିକା



ଜରିଆରେ ବୈପ୍ଳବିକ ଚେତନାର କବିତା ଓ ଗଳ୍ପ ରଚନା କରି ଆସିଛନ୍ତି ବୋଲି ଯୁକ୍ତି ବାଢିଛନ୍ତି ।

ଶ୍ରୀ ରାଉତରାୟ ମଧ୍ୟ ନିଜେ ଯୁକ୍ତି ଦର୍ଶାଇ କହନ୍ତି ଯେ 'ଆଧୁନିକ' ପୂର୍ବରୁ ଉପନ୍ୟାସ 'ଚିତ୍ରଗ୍ରୀବ' ଓ କଲିକତାର ଦୀପକ ସଂଘ ଆନୁକୂଲ୍ୟରେ ପ୍ରବନ୍ଧ 'ପ୍ରେମ୍ ଓ ପଣ୍ୟ' ପ୍ରକାଶ ପାଇଥିଲା । ଏ ଦୁଇଟି ତାଙ୍କର ମାର୍କସବାଦୀ ଚିନ୍ତାଧାରାର ପୁସ୍ତକ । 'ଆଧୁନିକ'ର ପ୍ରକାଶ ବେଳକୁ ସେ କଲିକତାରେ ଥିଲେ । ତେଣୁ 'ଆଧୁନିକ' ଓ 'ନବଯୁଗ ସାହିତ୍ୟ ସଂସଦ' ଦ୍ୱାରା ପ୍ରଭାବିତ ହେବାର କୌଣସି ସମ୍ଭାବନା ତାଙ୍କର ନଥିଲା । ସେ ବଙ୍ଗଳାର ପ୍ରଗତିବାଦୀ ଲେଖକମାନଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ଶ୍ରୀ ରାଉତରାୟଙ୍କର ଗ୍ରନ୍ଥାବଳୀ ଦ୍ୱିତୀୟ ଖଣ୍ଡରେ ମଧ୍ୟ ଏହି ସବୁ ଯୁକ୍ତି ଗୁଡ଼ିକର ଅବତାରଣା କରାଯାଇଛି ।

ଶ୍ରୀଯୁକ୍ତ ସାମନ୍ତରାୟ ୧୯୭୫ ମସିହାରେ ଏକ ପ୍ରବନ୍ଧରେ ନିଜର ପୂର୍ବ ଆଲୋଚନାକୁ (୧୯୫୫ ଡଗରରେ ପ୍ରକଶିତ) ସାବ୍ୟସ୍ତ କରିବା ସଂଗେ ସଂଗେ ଗୋବିନ୍ଦ ତ୍ରିପାଠୀଙ୍କର ମତକୁ ଖଣ୍ଡନ କରିବାକୁ ଯାଇ କହିଛନ୍ତି - "ତଥାପି ସଚ୍ଚିବାବୁ ଓଡ଼ିଆ ପ୍ରଗତିଶୀଳ ସାହିତ୍ୟର ଆଦ୍ୟ ପ୍ରବର୍ତ୍ତକ ବୋଲି ଗୋବିନ୍ଦ ତ୍ରିପାଠୀ ପ୍ରଥମେ ଯେଉଁ ଉଦ୍ୟମ କରିଥିଲେ ତା କାହିଁକି ମୋ ମନରେ ଘୋର ସନ୍ଦେହ ସୃଷ୍ଟି କରିଥିଲା । ଏ ଗୋବିନ୍ଦ ବାବୁ ଓଡ଼ିଆ ସମାଲୋଚନା ସାହିତ୍ୟରେ ଏପରି କାହିଁକି ଆକସ୍ମିକ ଭାବେ ଆବିର୍ଭୂତ ହେଉଥିଲେ; ସଚ୍ଚିବାବୁ କେଉଁ ଲେଖା କେବେ ଲେଖିଛନ୍ତି, ସେ ତାର ଏକ ଲମ୍ବା ତାଲିକା ଦେବାରେ ଯେତିକି ଆଗ୍ରହୀ ହୋଇଛନ୍ତି, ସଚ୍ଚିବାବୁଙ୍କ ପୂର୍ବରୁ ଅନ୍ୟ କେଉଁମାନେ ଓ ତାଙ୍କର ସମସାମୟିକ ଅନ୍ୟ ଲେଖକମାନେ ଯାହା ଲେଖିଛନ୍ତି ତାର ପରିଚୟ ଦେବାରେ ସେ ସେତିକି ନିସ୍ପୃହ ହୋଇ ଓଡ଼ିଆ ସମାଲୋଚନା ରଙ୍ଗମଞ୍ଚରୁ ଚିରଦିନ ପାଇଁ ଅନ୍ତର୍ହିତ ହୋଇ ଯାଇଛନ୍ତି ।

ପୁଣି ଏଥିରେ ବିତର୍କର ସୂତ୍ରପାତ ଘଟେ ୧୯୮୭ ମସିହାରେ ସଚ୍ଚି ରାଉତରାୟ ଜ୍ଞାନପୀଠ ପୁରସ୍କାର ପାଇଲା ପରେ ବିଭିନ୍ନ ସେମିନାର, ସଭାସମିତି ଓ ପତ୍ରପତ୍ରିକାରେ ପ୍ରଗତିବାଦୀ ସାହିତ୍ୟର ସ୍ରଷ୍ଟା ସଚ୍ଚିବାବୁ ବା ଭଗବତୀ ପାଣିଗ୍ରାହୀ, ଏହା ଘେନି ବିତର୍କ ହୁଏ । ଓଡ଼ିଶା ବାହାରର ଦୁଇଟି ଦୈନିକ ସମ୍ବାଦପତ୍ରରେ ଏ ସମ୍ପର୍କରେ ଆଲୋଚନାମାନ ମଧ୍ୟ ପ୍ରକାଶିତ ହୁଏ । ଶ୍ରୀ ରାଉତରାୟ ତାଙ୍କର 'କବିତା ୧୯୮୭'ର ପୂର୍ବାପର ଅଧ୍ୟାୟରେ ପୁଣି ଥରେ ନିଜ ସପକ୍ଷରେ ଗୋବିନ୍ଦ ତ୍ରିପାଠୀଙ୍କର ଯୁକ୍ତିସବୁ ଦୋହରାଇ ଓ ଆଉ କେତେକ ସମାଲୋଚକଙ୍କ ମତାମତମାନ ଉଦ୍ଧାର କରିଛନ୍ତି । ସେ କହିଛନ୍ତି - "ତାଛଡା ଜଣେ କିଏ କାଁ ଭାଁ ଦଶ ବାର ବର୍ଷ ଭିତରେ ଗୋଟାଏ ଗଳ୍ପ ବା କବିତା ଲେଖିଦେଲେ ସାହିତ୍ୟରେ ଗୋଟାଏ ନୂଆଯୁଗ ଓ ନୂଆ ଚିନ୍ତାଧାରା ପ୍ରବର୍ତ୍ତିତ ହୁଏ ନାହିଁ । ସେହି ଦଶନ୍ଧିରେ ଶ୍ରୀ ପାଣିଗ୍ରାହୀଙ୍କର କେବଳ ଦୁଇଟି ଗଳ୍ପ 'ଝଡ଼' ଓ 'ଶିକାର' ଆଖିରେ ପଡେ । ସେଥିରୁ ପ୍ରଥମଟି ରୋମଣ୍ଟିକ ଗଳ୍ପ ଏବଂ ଦ୍ୱିତୀୟଟି ମାନବତାଧର୍ମୀ ଗଳ୍ପ ବୋଲି ଓଡ଼ିଶାର ବିଶିଷ୍ଟ ସମାଲୋଚକମାନଙ୍କର ସୁଚିନ୍ତିତ ମତ । ସାହିତ୍ୟରେ ଗୋଟାଏ ନୂତନ ଯୁଗ ବା ଚିନ୍ତାଧାରା ପ୍ରତିଷ୍ଠା କରିବା ପାଇ ଲୋଡା ବର୍ଷ ବର୍ଷ ଧରି ସାଧନା ଓ ସଂଗ୍ରାମ । ଶ୍ରୀ ସଚ୍ଚି ରାଉତରାୟ ୧୯୩୦ରୁ ୧୯୩୭ ସାଲ ପର୍ଯ୍ୟନ୍ତ ମାର୍କସବାଦୀ କବିତା ଓ ଅନ୍ୟାନ୍ୟ ରଚନାରେ ଓଡ଼ିଆ ସାହିତ୍ୟକୁ ବନ୍ୟାପ୍ଳୁତ କରି ଦେଉଥିବାବେଳେ ପାଣିଗ୍ରାହୀଙ୍କର ସେଇ ଦଶନ୍ଧିରେ ଏକକ ରଚନା 'ଶିକାର' ଗଳ୍ପଟି କିପରି ଓଡ଼ିଆ ସାହିତ୍ୟରେ ମାର୍କସବାଦୀ ଚେତନା ପ୍ରବର୍ତ୍ତନ କଲା ବୋଲି କୁହାଯିବ । ଏ ଯୁକ୍ତିକୁ ଖଣ୍ଡନ କରି ଏତିକି କୁହାଯାଇପାରେ ଯେ ଭଗବତୀଙ୍କ 'ଶିକାର' ଗଳ୍ପଟି କେବଳ ମାର୍କସବାଦୀ ଚେତନା ପ୍ରବର୍ତ୍ତନ କରିନାହିଁ, ଏଥିପାଇଁ ଭଗବତୀଙ୍କ ରଚିତ ଅନ୍ୟାନ୍ୟ ଗଳ୍ପ, ପ୍ରବନ୍ଧ, ସାହିତ୍ୟ ସଂଗଠନ, ପତ୍ରିକା ସମ୍ପାଦନର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଓଡ଼ିଆ ସାହିତ୍ୟରେ ମାର୍କସବାଦୀ ଚେତନାର ସଂସ୍ଥାପକ ଭାବରେ ଭଗବତୀ ପାଣିଗ୍ରାହୀଙ୍କ ଅବଦାନକୁ ଅସ୍ୱୀକାର କରିବା ଅର୍ଥ ଏକ ଐତିହାସିକ ପ୍ରମାଦ କରି ବସିବା ।

ଓଡ଼ିଶାରେ ବାମପନ୍ଥୀ ଚିନ୍ତାଧାରାର ପ୍ରସାର, କମ୍ୟୁନିଷ୍ଟ ପାର୍ଟି ଗଠନ ଏବଂ ବିଭିନ୍ନ କୃଷକ, ଛାତ୍ର ଓ ଗଡଜାତ ପ୍ରଜା ଆନ୍ଦୋଳନ ମାନଙ୍କରେ କମ୍ରେଡ ଭଗବତୀଙ୍କ ଭୂମିକାକୁ ଆମ୍ଭେ ଆଲୋଚନା କରିବା ସଂଗେ ସଂଗେ ୧୯୩୪ ମସିହଠାରୁ ୧୯୪୩ ମସିହା ମଧ୍ୟରେ ଲିଖିତ ତାଙ୍କ ଗଳ୍ପ-ପ୍ରବନ୍ଧ ଓ ତାଙ୍କଦ୍ୱାରା ଅନୂଦିତ କମ୍ୟୁନିଷ୍ଟ ମାନିଫେଷ୍ଟୋ, ସଂପାଦିତ 'ଆଧୁନିକ', 'କୃଷକ', 'ମୁକ୍ତିଯୁଦ୍ଧ', 'ଆଗେଚାଲ' ଏବଂ ସାହିତ୍ୟ ସଂଗଠନ 'ନବଯୁଗ ସାହିତ୍ୟ ସଂସଦ' ଓଡ଼ିଆ ସାହିତ୍ୟରେ ମାର୍କସବାଦୀ ଚେତନାର ଭିତ୍ତିପ୍ରସ୍ତର ସ୍ଥାପନ କରିବା ସଂଗେ ସଂଗେ କିପରି ଏହାକୁ ଏକ ସାହତ୍ୟ-ଆନ୍ଦୋଳନ ବା ସାଂସ୍କୃତିକ କ୍ରାନ୍ତିର ରୂପରେଖ ଦେବାକୁ ସକ୍ଷମ ହୋଇଥିଲା,





ତାର ବିସ୍ତୃତ ବିବରଣୀ ପ୍ରଦାନ କରିଛୁ । ସାହିତ୍ୟ ଜଗତରେ ଏକ ନୂତନ ଧାରା ବା ପ୍ରବୃତ୍ତିକୁ ପ୍ରତିଷ୍ଠା କରିବା ପାଇଁ ଯେଉଁ ଐତିହାସିକ ଭୂମିକାଗୁଡ଼ିକର ଆବଶ୍ୟକତା ରହିଛି, ଭଗବତୀ ଥିଲେ ସେ ସବୁଗୁଡ଼ିକର କର୍ଣ୍ଣଧାର ।

୧୯୩୦ପରେ ସମଗ୍ର ଭାରତବର୍ଷର ଚିନ୍ତା ଜଗତରେ ଯେଉଁ ସଂକଟ ଉପୁଜିଥିଲା, ଓଡ଼ିଶା ସେଥିରୁ ବାଦ ପଡିନଥିଲା । ଏ ସଂକଟ ଆସିଥିଲା ପରାଧୀନତାର ଗ୍ଲାନିରୁ, ଜାତୀୟ ଆନ୍ଦୋଳନର କ୍ରମାଗତ ଅସଫଳତା ମଧ୍ୟରୁ । ଏହା ସଙ୍ଗକୁ ଓଡ଼ିଶାରେ ସାମନ୍ତବାଦୀ ଶୋଷଣ ଅତ୍ୟାଚାରିତ ଜନତା ଓ କୃଷକମାନଙ୍କୁ ସେମାନଙ୍କର ଦାବୀ ସମ୍ପର୍କରେ ସଚେତନ କରି ଦେଇଥିଲା । ଏହିପରି ଏକ ପରିବେଶ ମଧ୍ୟରେ ଓଡ଼ିଶାର ରାଜନୀତି କ୍ଷେତ୍ରରେ ଓ ପରେ ସାଂସ୍କୃତିକ କ୍ଷେତ୍ରରେ ମାର୍କସ୍‌ବାଦର ଅଭ୍ୟୁଦୟ ଘଟିଥିଲା । ଏହା ହଠାତ୍ ଆଉ କେଉଁଠୁ ଧାର୍ ସୂତ୍ରରେ କିମ୍ବା ପୋଷ୍ୟପୁତ୍ର ଗ୍ରହଣ ଭଳି ବା ଆମଦାନୀ ସୂତ୍ରରେ ଆସିନାହିଁ । ଏହା ଆମ ସାମାଜିକ – ସାଂସ୍କୃତିକ ବାତାବରଣ ମଧ୍ୟରୁ ଜନ୍ମ ଲଭିଛି, ପରିପୁଷ୍ଟ ହୋଇଛି ବିଭିନ୍ନ ଆନ୍ଦୋଳନ ମାଧ୍ୟମରେ । ଭଗବତୀ ଏହିସବୁ ଆନ୍ଦୋଳନଗୁଡ଼ିକ ସହ (ରାଜନୈତିକ ଓ ସାଂସ୍କୃତିକ ଉଭୟ) ପ୍ରତ୍ୟକ୍ଷ ଭାବରେ ଜଡ଼ିତ । ସେ ହିଁ ପ୍ରକୃତରେ ଓଡ଼ିଶାରେ ମାର୍କସବାଦୀ ସାହିତ୍ୟ ଓ ଦର୍ଶନର ପ୍ରକୃତ ଭଗୀରଥ । ଡକ୍ଟର ମାୟାଧର ମାନସିଂ ତେଣୁ ଲେଖିଛନ୍ତି – "ସେ ଥିଲେ ବାହାରକୁ ନିରୀହ, ନିରହଂକାର, ଆସ୍ଫାଳନହୀନ ଏକ ତରୁଣ, ଯାହାଙ୍କର ଅନ୍ତର ଥିଲା ସଂସ୍କୃତିର ନିର୍ଯ୍ୟାସରେ ଭରା । ତାଙ୍କ ବାଣୀରେ ନଥିଲା କୌଣସି ପ୍ରକାର ଅସ୍ୱଚ୍ଛତା, କି ନଥିଲା ତାଙ୍କଠି କୌଣସି ପ୍ରକାର ଛଦ୍ମତା ବା କୌଣସି ଅଯଥାର୍ଥ ଦାବୀର ପ୍ରୟାସ । ଗଳ୍ପ, ପ୍ରବନ୍ଧ ଓ ବାସ୍ତବ ଜନସେବା ଦେଇ ଉତ୍କଳ ଦେଶରେ ବାମପନ୍ଥୀ ଚିନ୍ତାଧାରାର ମୂଳପତ୍ତନ ପକାଇ ଯାଇଛନ୍ତି ।

ଭଗବତୀ ଥିଲେ ଇତିହାସର ଆହ୍ୱାନ । ତାଙ୍କର ସଂଗ୍ରାମଶୀଳ ଜୀବନର ପ୍ରତିଟି ଭଗ୍ନାଂଶ ଥିଲା ଜାତି ପାଇଁ ଉତ୍ସର୍ଗୀକୃତ । ସର୍ବହରାର ବିଶ୍ୱ ଦୃଷ୍ଟିକୋଣ ଓ ବୈଜ୍ଞାନିକ ସମାଜବାଦକୁ ଆପଣାର ଜୀବନ ଦର୍ଶନ ଭାବେ ଗ୍ରହଣ କରି ସେ ସାହିତ୍ୟରେ ଓ ରାଜନୀତିରେ ସମାଜବାଦୀ ବିପ୍ଳବର ଦିଶାରୀ ହୋଇଥିଲେ ।





# ମାନବବାଦର ଇସ୍ତାହାର ଓ ଭଗବତୀ

– ଦ୍ୟୁତୀକୃଷ୍ଣ ପଣ୍ଡା

ଓଡିଶାର ଆଦ୍ୟ ସମାଜବାଦୀ ଆନ୍ଦୋଳନର ପ୍ରାଣ ପ୍ରତିଷ୍ଠାତା ଭଗବତୀ ପାଣିଗ୍ରାହୀ ଥିଲେ କୃଷକ, ଛାତ୍ର, ଶ୍ରମିକ ଆନ୍ଦୋଳନର ଅଗ୍ରଣୀ ଯୋଦ୍ଧା । ସାଂସ୍କୃତିକ ନବଜାଗରଣ କରିବା ସହ ବ୍ରିଟିଶ ବିରୋଧରେ ତାଙ୍କର ମହାନ ସଂଗ୍ରାମ ଏବଂ ସଂଗ୍ରାମ ଜରିଆରେ ସ୍ୱାଧୀନତାର ସ୍ୱପ୍ନ ହାସଲ କରିବା ପାଇଁ ସେ ସ୍ଥାପନ କରିଥିବା ଭିତ୍ତି ପ୍ରସ୍ତର ଚିର ଅମଳିନ, ଓ ଆଦର୍ଶର ଲେଲିହାନ ଶିଖା ହୋଇ ରହିଛି କମ୍ୟୁନିଷ୍ଟ ପାର୍ଟି ।

ବିଶ୍ୱ ବାଣିଜ୍ୟ ସଂଗଠନର ନିର୍ଦ୍ଦେଶକୁ ମାନି ସରକାର ଜଗତୀକରଣ ଅର୍ଥନୀତି କାର୍ଯ୍ୟକାରୀ କରିବା ପରେ ଦେଶର ମେରୁଦଣ୍ଡ କୃଷକ ସମାଜ ଉପରେ ଯେଉଁ କଳା ବାଦଲ ଛାଇ ହୋଇ ରହିଛି ସେଥିପାଇଁ ମୁକ୍ତିର ସୂର୍ଯ୍ୟ ଅବଲୋକନ କରିବା ପାଇଁ ଆଜି ଭଗବତୀଙ୍କ ପ୍ରଦର୍ଶିତ ସଂଗ୍ରାମର ମାର୍ଗ ଅନୁସରଣ କରିବାର ଆବଶ୍ୟକତା ଦେଖାଦେଇଛି ।

ପାଟେଣ୍ଟ ଆଇନକୁ ସଂଶୋଧନ କରିବା, ଭାରତର ସାର୍ବଭୌମତ୍ୱ କୃଷି ନୀତିକୁ ବିପର୍ଯ୍ୟସ୍ତ କରିବା, ବିଦେଶୀ ଫାର୍ମଗୁଡ଼ିକ ଦ୍ୱାରା ଉତ୍ପାଦିତ ସାମଗ୍ରୀକୁ ଭାରତ ବଜାରକୁ ଛାଡିବା ପାଇଁ ଚୁକ୍ତି କରିବା, ବହୁରାଷ୍ଟ୍ରୀୟ ଶସ୍ୟ କମ୍ପାନିଗୁଡ଼ିକ ଜେନେଟିକ ମଡ଼ିଫାଏଡ ଶସ୍ୟର ବ୍ୟବସାୟ ସୃଷ୍ଟି କରି ଚାଷୀମାନଙ୍କ ଜୀବନ ଜୀବିକାକୁ ବିପର୍ଯ୍ୟସ୍ତ କରିବା ଇତ୍ୟାଦି ପ୍ରକ୍ରିୟା ଯୋଗୁଁ ଭାରତୀୟ କୃଷକ ସମାଜ ଯେଉଁ ଅଧୋଗତିର ସମ୍ମୁଖୀନ ହୋଇଛି ତାହାର ମୁକାବିଲା କରିବା ପାଇଁ ନୂତନ ସଂଗ୍ରାମର ପଥକୁ ପ୍ରଦର୍ଶିତ କରିଥିଲେ ସାଥୀ ଭଗବତୀ ।

ବିଶ୍ୱରେ ସମାଜବାଦୀ ଚିନ୍ତାଧାରାକୁ ଅବାରିତ ସଂପ୍ରସାରଣ କରିବା ପ୍ରକ୍ରିୟାକୁ ହୃଦ୍‌ବୋଧ କରି ଲଣ୍ଡନ ଠାରେ ମହାନ୍ ଦାର୍ଶନିକ କାର୍ଲମାର୍କସ ବିଶ୍ୱର ଶ୍ରମିକ ଶ୍ରେଣୀ ଏକ ହୁଅ ବୋଲି ଡାକରା ଦେଇଥିଲେ । ମାର୍କସ ବିଶ୍ୱର ଜଣେ ସର୍ବଶ୍ରେଷ୍ଠ ଦାର୍ଶନିକ, ଅର୍ଥନୀତି ବିଶାରଦ,ମାନବବାଦୀ ରୂପେ ସାର୍ବଜନୀନ ମତ ଲଣ୍ଡନରେ ପ୍ରକାଶ ପାଇଛି । ସେହି ଚିନ୍ତା ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ସାଥୀ ଭଗବତୀ କମ୍ୟୁନିଷ୍ଟ ପାର୍ଟି ଗଠନ କରିଥିଲେ । ମାର୍କସଙ୍କ କମ୍ୟୁନିଷ୍ଟ ଇସ୍ତାହାରକୁ ବ୍ୟାଖ୍ୟାକରି ଭଗବତୀ ଅନ୍ୟମାନଙ୍କୁ ଶିକ୍ଷା ପ୍ରଦାନ କରିଥିଲେ ।

ଭଗବତୀ ପଥେ ପଥିକ ହୁଅ । ଭଗବତୀ ଲେଖିଛି, କହୁଛି, ଡାକୁଛି ମାର୍କ୍ସବାଦକୁ ଫେରିଆସ । ସାଥୀ ଭଗବତୀ ସର୍ବପ୍ରଥମେ କମ୍ୟୁନିଷ୍ଟ ମେନିଫେଷ୍ଟୋକୁ ଓଡିଆରେ ଅନୁବାଦ କରିଥିଲେ । ତାକୁ ହଜମ କରି, ବିଶ୍ଳେଷଣ କରି ବାସ୍ତବ ପରିସ୍ଥିତିରେ ଜନଗଣଙ୍କୁ ସଙ୍ଗଠିତ କରିବା ପାଇଁ ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ତ୍ୟାଗପୂତ ସଂଗ୍ରାମ ଓ ସାଧନା ବଳରେ ସାମ୍ରାଜ୍ୟବାଦ ଓ ନାଜୀବାଦ ବିରୁଦ୍ଧରେ ଅଗ୍ରସର ହୋଇଥିଲେ ।

ଆଜି ଆମେରିକା ସାମ୍ରାଜ୍ୟବାଦ ପୃଥିବୀର ଅଧିକାଂଶ ରାଷ୍ଟ୍ରକୁ ଅର୍ଥନୈତିକ, ସାଂସ୍କୃତିକ ଓ ସାମରିକ ଭାବେ କବଳିତ କରି ବିଶ୍ୱରେ ନିଜର ସାମ୍ରାଜ୍ୟ ପ୍ରତିଷ୍ଠା କରିବା ପାଇଁ ପ୍ରତ୍ୟେକ ଦେଶରେ ସାର୍ବଭୌମତ୍ୱ ଉପରେ ଆକ୍ରମଣ କରିଚାଲିଛି । ଇରାକ୍‌କୁ ବୋମା ମାଡରେ ଦଖଲ କରି ଆକ୍ରମଣ କରି ତାକୁ ନିଜର ଉପନିବେଶରେ ପରିଣତ କରିଛି । ଏହା ଏକ ଜ୍ୱଳନ୍ତ ଉଦାହରଣ । ବିକାଶଶୀଳ ରାଜ୍ୟ ଗୁଡିକରେ ଦାରିଦ୍ର୍ୟକୁ ବ୍ୟାପକନ କରିଚାଲିଛି । ସମରବାଦ ଓ ଆତଙ୍କବାଦକୁ ଆଜି ଜଗତୀକରଣ କରିଛି । ଭାରତ ପରି ବିକାଶଶୀଳ ରାଷ୍ଟ୍ରମାନେ ଆର୍ଥିକ ଜଗତୀକରଣର ଶିକାର ହେବା ଫଳରେ ଅସମାନତା, ଦାରିଦ୍ର୍ୟ, ବେକାରୀ ବଢ଼ିଚାଲିଛି । ଏପରି ଏକ ଘଡିସନ୍ଧି ମୁହୂର୍ତ୍ତରେ ଓଡିଶାର ସମାଜବାଦୀ ଆନ୍ଦୋଳନରେ ପଥ ପ୍ରଦର୍ଶକ ଭାବେ ଉଭା ହୋଇଛନ୍ତି ଭଗବତୀ । ଆତଙ୍କବାଦର ସ୍ରଷ୍ଟା ହୋଇ ବୁଶ୍ ସରକାର ବିଶ୍ୱରେ ଆତଙ୍କବାଦ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ଏକ ପ୍ରତାରଣା ଛଡା ଅନ୍ୟକିଛି ନୁହେଁ । ଓଡିଶା ଆଜି ଏହି ପ୍ରକ୍ରିୟାରେ ବହୁରାଷ୍ଟ୍ରୀୟ ପୁଞ୍ଜିପତିମାନଙ୍କୁ ନିମନ୍ତ୍ରଣ କରି ତାଙ୍କ ହାତରେ ଜମି, ଜଙ୍ଗଲ ଓ ଜଳ ଶାଗମାଛ ଦରରେ ବିକ୍ରି କରିଚାଲିଛି । ସେଇ ବହୁଜାତିକ କମ୍ପାନୀମାନଙ୍କ ସହିତ ୪୭ଟି ଚୁକ୍ତିପତ୍ର ସ୍ୱାକ୍ଷରିତ ହୋଇଛି । ଫଳରେ ୨ ଲକ୍ଷ ହେକ୍ଟର ଚାଷ ଉପଯୋଗୀ ଜମି ପୁଞ୍ଜିପତିମାନଙ୍କୁ ହାତକୁ ଯିବାର ବିପଦ ରହିଛି । ଫଳରେ କୃଷି ଓ କୃଷକ ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ ହେବ । ଚାଷୀମାନେ ନିଜ ଜମିରୁ ଉଚ୍ଛେଦ ହେବା ଫଳରେ ସେମାନେ ହୀନ, ଦାରିଦ୍ର୍ୟର ସମ୍ମୁଖୀନ ହେବେ । ଖାଦ୍ୟ ନିରାପତ୍ତା ବିପନ୍ନ ହେବ । ଏଇ ପରିସ୍ଥିତିରେ ଆଜି ସାଥୀ ଭଗବତୀଙ୍କ ଆଦର୍ଶ ଓ ସଂଗ୍ରାମ ଆମମାନଙ୍କ ପାଇଁ ପ୍ରେରଣାର ଉତ୍ସ ।





ସାଥୀ ଭଗବତୀ ସମାଜବାଦର ବାର୍ତ୍ତାକୁ ପ୍ରସାରିତ କରିବା ପାଇଁ କମ୍ୟୁନିଷ୍ଟ ଇସ୍ତାହାରାକୁ ସାଥୀମାନଙ୍କୁ ପଢାଉଥିଲେ ଏବଂ ଆନ୍ତର୍ଜାତିକ ଗତିବିଧି ଉପରେ ତୀବ୍ର ନଜର ରଖି ଓଡିଶାରେ ଆନ୍ଦୋଳନକୁ ଅଗ୍ରସର କରିପାରୁଥିଲେ । ସାଥୀ ଭଗବତୀ ଥିଲେ ମାର୍କ୍ସବାଦର ଭଗୀରଥ ।

ଅଜ୍ଞାତବାସରେ ଥାଇ କୃଷକ ଆନ୍ଦୋଳନ ଚଳାଇବାର ମହାନ ଅଭିଜ୍ଞତା ସେ ହାସଲ କରିଥିଲେ । ଗଞ୍ଜାମର କୃଷକ କୋର୍ଟ କଚେରୀ ବାଟ ତ୍ୟାଗ କରି ବୈପ୍ଳବିକ ଆନ୍ଦୋଳନ ସଂଗଠିତ କରିବା ପାଇଁ ସାଥୀ ଭଗବତୀ ସଠିକ୍ ନେତୃତ୍ୱ ନେଇଥିଲେ ।

ଭଗବତୀ ବାବୁ ଥିଲେ ଜଣେ ସୁସାହିତ୍ୟକ । ପ୍ରଗତିଶୀଳ ଯୁବ ଲେଖକମାନଙ୍କୁ ଏକାଠି କରିବା ପାଇଁ ସେ ପ୍ରତିଷ୍ଠା କରିଥିବା ନବଯୁଗ ସାହିତ୍ୟ ସଂସଦ ଜରିଆରେ ସାହିତ୍ୟ ସାଂସ୍କୃତିକ ଆନ୍ଦୋଳନ ସଂଗଠିତ ହୋଇଥିଲା । ବିଭିନ୍ନ ଗ୍ରାମରେ ନାଟକ, ଓ ଡ୍ରାମା ଜରିଆରେ ସେ ସଚେତନତା ସୃଷ୍ଟି କରାଉଥିଲେ ।

ସାମ୍ରାଜ୍ୟବାଦୀ ବ୍ୟବସ୍ଥା ମଧ୍ୟରେ ସାଂସ୍କୃତିକ ଉପନିବେଶ ପ୍ରତିଷ୍ଠା କରିବା ପାଇଁ ପୁଞ୍ଜିବାଦୀ ଦେଶଗୁଡିକର ଆକ୍ରମଣକୁ ଭଗବତୀ ସଠିକ୍ ଉପଲବ୍ଧି କରିଥିଲେ ଏବଂ ଏଥିପାଇଁ ସେ ଅନେକ କବିତା, ଗଳ୍ପ ଓ ପ୍ରବନ୍ଧ ମଧ୍ୟ ଲେଖିଥିଲେ ।

ନବ୍ୟଅର୍ଥନୈତିକ ଶୋଷଣ, ସାର୍ବଭୌମତ୍ୱ ଉପରେ ସାମ୍ରାଜ୍ୟବାଦୀ ଆକ୍ରମଣ, ସାଇସ୍କୃତିକ ପରାଧୀନତା, ସମରବାଦ ବିରୋଧରେ ବିଶ୍ୱର ପ୍ରଗତିଶୀଳ ଶକ୍ତି ଐକ୍ୟବଦ୍ଧ ହେବା ପାଇଁ କ୍ୟୁବା ରାଷ୍ଟ୍ରପତି ଫିଡେଲ କାଷ୍ଟ୍ରୋ ଆହ୍ୱାନ ଦେଇଛନ୍ତି । ଠିକ୍ ସେହିପରି ଆହ୍ୱାନ ଦେଇଥିଲେ ଓଡିଶାରେ ସାଥୀ ଭଗବତୀ । ଏହି ଆହ୍ୱାନରେ ଥିଲା ନୂତନ ଉଦ୍ଦାମତା, ଶୌର୍ଯ୍ୟ ଓ ଅଙ୍ଗୀକାର । ସାଥୀ ଭଗବତୀ ସ୍ୱାଧୀନତା ସଂଗ୍ରାମକୁ ତ୍ୱରାନ୍ୱିତ କରିବା ସହ ସମାଜବାଦର ସ୍ୱପ୍ନକୁ ସାକାର କରିବା ପାଇଁ ପ୍ରଗତିଶୀଳ ସାହିତ୍ୟ ସୃଷ୍ଟି କରିଥିଲେ ।

ସମାଜରେ କ୍ଷମତା ପ୍ରତିଷ୍ଠା କରିବା ଏବଂ ମଣିଷ ଜୀବନରେ ପୂର୍ଣ୍ଣତା ଆଣିବା ସାହିତ୍ୟର ମୂଳ ଆଦର୍ଶ ବୋଲି ମହାନ କବି ପି.ବି.ଶେଲୀ ଯାହା କହିଥିଲେ, ତାହାକୁ ସେ ଭଲଭାବରେ ଉପଲବ୍ଧି କରିଥିଲେ ।

ଆମେରିକାରେ ବିଶିଷ୍ଟ ଦାର୍ଶନିକ ଫ୍ରାନ୍ସିସ୍ ଫୁକୁୟାମା କିଛିବର୍ଷ ତଳେ ଦର୍ଶାଇଥିଲେ ଯେ ବିଶ୍ୱର ଇତିହାସର ଅନ୍ତଘଟିଛି ଏବଂ ଏହି ଇତିହାସ ବର୍ତ୍ତମାନ ଯାହାରହିଛି ତାହା ହିଁ ମଣିଷ ସଭ୍ୟତାର ଶେଷ ଇତିହାସ ବୋଲି ଧରିବାକୁ ହେବ । ତେବେ ଏହାକୁ ଅନ୍ୟତମ ଦାର୍ଶନିକ ଡାରିଡା ତୀବ୍ର ସମାଲୋଚନା କରି ଇତିହାସର ଆରମ୍ଭ ହେଲା ବୋଲି ଦର୍ଶାଇଛନ୍ତି । ଏହି ପରୀକ୍ଷାରେ ସେ ଉପନୀତ ହୋଇଛନ୍ତି ଯେ ବିଶ୍ୱରେ ସମରବାଦ, ସାଂସ୍କୃତିକ ସାମ୍ରାଜ୍ୟବାଦ, ପୁଞ୍ଜିବାଦର ଅବସାନ ଘଟିବାକୁ ଯାଉଛି ଏବଂ ଏକ ନୂଆ ଇତିହାସ ଆରମ୍ଭ ହେବାକୁ ଯାଉଛି ।

ବିକାଶଶୀଳ ଓ ଦରିଦ୍ର ରାଷ୍ଟ୍ରଗୁଡିକର ପ୍ରାକୃତିକ ସଂପଦକୁ ଲୁଣ୍ଠନ କରି ସେହି ଦେଶଗୁଡିକର ଅର୍ଥନୈତିକ ସ୍ୱାଧୀନତାକୁ ଅପହରଣ କରିବା ଏବଂ ସେହି ଦେଶଗୁଡିକରେ ମାର୍କିନ ସାମ୍ରାଜ୍ୟ ପ୍ରତିଷ୍ଠା କରିବା ପାଇଁ ଆମେରିକାର ହୀନ ଚକ୍ରାନ୍ତକୁ ପଦାକୁ ଆଣିଛନ୍ତି ବିଶିଷ୍ଟ ମାର୍କିନ ଅର୍ଥନୀତିଜ୍ଞ ଯୋଶେଫ ଷ୍ଟିଗଲିଜ୍ । ବାସ୍ତବରେ ଷ୍ଟିଗଲିଜ ଆମେରିକାର ଅର୍ଥନୈତିକ ଶୋଷଣ ଜଗତିକରଣର ଅସଲ ରୂପର ମୁଖା ଖୋଲିଛନ୍ତି । ସେ ଦୃଢ ଘୋଷଣା କରିଛନ୍ତି ଯେ ଏହାଦ୍ୱାରା ଗରୀବମାନେ ଆଦୌ ଉପକୃତ ହେବେ ନାହିଁ ।

୨୦୦୧ ରେ ଅର୍ଥନୀତି ପାଇଁ ନୋବେଲ ପୁରସ୍କାର ପାଇଥିବା ଷ୍ଟିଗଲିଜ ନିଜ ପୁସ୍ତକ "ଗ୍ଲୋବାଲାଇଜେସନ ଆଣ୍ଡ ଇଟ୍ସ ଡିସକଣ୍ଟେଣ୍ଟ" ପୁସ୍ତକରେ ଜଗତୀକରଣ ଅର୍ଥନୀତି ଦ୍ୱାରା ବିଶ୍ୱର ଦରିଦ୍ର ଜନସାଧାରଣ ଓ ତୃତୀୟ ବିଶ୍ୱ କିପରି ଭୟଙ୍କର ସଙ୍କଟର ସମ୍ମୁଖୀନ, ସେ ସମ୍ପର୍କରେ ସତର୍କବାଣୀ ଶୁଣାଇଛନ୍ତି । ଷ୍ଟିଗଲଜଙ୍କ ପରି ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ଉଚ୍ଚପଦସ୍ଥ ଅର୍ଥନୀତିଜ୍ଞ ଡାଭିସନ ବୁଧୁ ମଧ୍ୟ ଏହା ସ୍ୱୀକାର କରି ୧୯୯୦ ରେ ଆଇଏମ୍ଏଫ୍ ପଦବୀରୁ ଇସ୍ତଫା ଦେଇ ଜଗତୀକରଣର ରକ୍ତମୁଖା ରୂପ ସମ୍ପର୍କରେ ଏକ ପୁସ୍ତକ ରଚନା କରିଥିଲେ ।

ସମ୍ପ୍ରତି 'ଇକୋନୋମିକ ହିଟ୍ମ୍ୟାନ୍' ନାମକ ପୁସ୍ତକରେ ଅର୍ଥନୀତି ବିଶାରଦ ଜନ ପର୍କିନସ ମଧ୍ୟ ଜଗତୀକରଣ ଅର୍ଥନୀତିର ମାନବବିରୋଧୀ ପ୍ରକୃତିର ମୁଖା ଖୋଲି ଦେବା ସହ ଆନ୍ତର୍ଜାତିକ ଲୁଣ୍ଠନ, ପରିବେଶ ଧ୍ୱଂସ, ଆତଙ୍କବାଦ ସୃଷ୍ଟି କ୍ଷେତ୍ରରେ ଆମେରିକାରେ ଯୁଦ୍ଧଖୋର ନଗ୍ନ ଭୂମିକାକୁ ଲୋକଲୋଚନକୁ ଆଣିଛନ୍ତି । ପ୍ରତ୍ୟେକ ଦେଶକୁ ଦଖଲ କରିବା ପାଇଁ ପ୍ରତ୍ୟେକ



ଦେଶର ସାର୍ବଭୌମତ୍ୱକୁ ଧ୍ୱଂସ କରିବା ପାଇଁ ଆତଙ୍କବାଦ ସୃଷ୍ଟି କରିଚାଲିଛନ୍ତି । ତେଣୁ ମାର୍କିନ ସନ୍ତ୍ରାସବାଦ ବିରୋଧରେ ଗଣଚେତନା ଅଧିକ ଶାଣିତ ହେଉଛି । ଲାଟିନ ଆମେରିକା ଦେଶଗୁଡିକରେ ବାମପନ୍ଥୀ ସରକାର ଗଢିଉଠୁଛି ।

ସାମ୍ରାଜ୍ୟବାଦୀ ଜଗତୀକରଣ ବିରୋଧୀ ସଂଗ୍ରାମ ସହ ଯୁଦ୍ଧବିରୋଧୀ ସଂଗ୍ରାମର ସମନ୍ୱୟ ଦ୍ୱାରା ହିଁ ଏକ ଯୁଦ୍ଧମୁକ୍ତ ଓ କ୍ଷୁଧାମୁକ୍ତ ଦୁନିଆ ଗଠନ ସମ୍ଭବ ହେବ । ସନ୍ତ୍ରାସବାଦ ଓ ପୁଞ୍ଜିର ଜଗତୀକରଣ ବିରୋଧରେ ଗଣସଂଗ୍ରାମର ଜଗତୀକରଣ ହିଁ ନୂଆ ବିଶ୍ୱ ଗଠନ ପାଇଁ ଏକମାତ୍ର ପନ୍ଥା । ସାଥୀ ଭଗବତୀ ଯେଉଁ ମାର୍କ୍ସବାଦୀ ଚିନ୍ତାଧାରା ନେଇ ଓଡିଶାରେ ବାମପନ୍ଥୀ ଓ ପ୍ରଗତିଶୀଳ ସଂଗ୍ରାମ ଚଳାଇଥିଲେ, ଆଜିର ପରିସ୍ଥିତିର ମାର୍କସବାଦର ପ୍ରାସଙ୍ଗିକତା, ଦିଗଦର୍ଶନ ଏବଂ ବିଶ୍ୱବ୍ୟାପୀ ସଂଗ୍ରାମ ଲାଗି ଆହ୍ୱାନକୁ ହୃଦୟଙ୍ଗମ କରିବାକୁ ହେବ । ସେ ଯେଉଁ ରକ୍ତରଞ୍ଜିତ ପତାକା ଧରି ଶତ ସେନାପତି ଗଢିଥିଲେ ସେହି ପବିତ୍ର ପତାକାକୁ ବହନ କରି ସଂଗ୍ରାମରେ ଆଗେଇଚାଲ, କୃଷକ, ଶ୍ରମିକ, ଛାତ୍ରଙ୍କୁ ମାର୍କ୍ସବାଦୀ ଚେତନାରେ ଶାଣିତକରି ସଂଗ୍ରାମକୁ ବିରାଟ ସ୍ରୋତରେ ପରିଣତ କର । ଯୁଦ୍ଧ ହଟୁ, ଶାନ୍ତି ପ୍ରତିଷ୍ଠା ହେଉ ।

ବିଶ୍ୱରେ ସମାଜବାଦୀ ଆନ୍ଦୋଳନ ଜୋରଦାର ହୋଇଥିବା ବେଳେ ଭାରତରେ ମଧ୍ୟ ବାମପନ୍ଥୀମାନଙ୍କ ଶକ୍ତି ଯଥେଷ୍ଟ ବୃଦ୍ଧି ପାଇଛି । ଇତିହାସରେ ଅଗ୍ନିଗର୍ଭରୁ ଜନ୍ମ ନେଇଥିବା ପ୍ରଗତିଶୀଳ ଯୁବଛାତ୍ର ଗୋଷ୍ଠୀ ସଂପ୍ରତି ମାର୍କସବାଦକୁ ଆଧାରକରି ଏକ ନୂତନ ବିଶ୍ୱର ସ୍ୱପ୍ନ ଦେଖୁଥିବା ବେଳେ ଓଡିଶାର ଅର୍ଥନୀତିକୁ ବିଦେଶୀ ଜାଲରୁ ମୁକ୍ତ କରିବା ପାଇଁ ଶୋଣିତ ସଂଗ୍ରାମ ଆରମ୍ଭ ହୋଇଛି । ଓଡିଶାର ବାମପନ୍ଥୀ ଶକ୍ତି ସଂପ୍ରତି ଐକବଦ୍ଧ ହୋଇ ଦାରିଦ୍ର୍ୟ,ଅନାହାର,ବହୁରାଷ୍ଟ୍ରୀୟ ପୁଞ୍ଜିପତିଙ୍କ ଦ୍ୱାରା ଅର୍ଥନୈତିକ ଲୁଣ୍ଠନ ବିରୋଧରେ ଏବଂ ଖଣି, ଖାଦାନ,ଜଙ୍ଗଲ,ଜମି,ପାଣି ଉପରେ ଆମର ଅଧିକାର ରକ୍ଷା କରିବା ପାଇଁ ଐକବଦ୍ଧ ଆନ୍ଦୋଳନ କରିବାକୁ ହେବ । କମ୍ୟୁନିଷ୍ଟ ପାର୍ଟି ମାର୍କ୍ସବାଦୀ ଦର୍ଶନ ଓ ତତ୍ତ୍ୱକୁ ଆଧାର କରି ଦୁର୍ବାର ଜନ ଆନ୍ଦୋଳନ ଗଢିତୋଳିବା ପାଇଁ ଶପଥ ନେବା ହିଁ ଥିଲା ବିପ୍ଳବୀ ଭଗବତୀଙ୍କ ବଜ୍ର ଆହ୍ୱାନ । ଏହାହିଁ ହେବ ତାଙ୍କ ପବିତ୍ର ଜନ୍ମଦିବସରେ ବିପ୍ଳବୀ ଭଗବତୀଙ୍କ ପ୍ରତି ଲୋହିତ ଶ୍ରଦ୍ଧାଞ୍ଜଳି ।

ସେହି ମୋ ଭଗବତୀ- ଜନଗଣଙ୍କ ଭଗବତୀ<br>
ଦର୍ଶନର ଝରଣା- ସାହିତ୍ୟର କ୍ରାନ୍ତିକାରୀ ଉଗ୍ରତାରା<br>
ସଂଗ୍ରାମର ଶ୍ରାବଣଧାରା- ସଂଗଠନର ସେନାପତିର ସ୍ରଷ୍ଟା





ପାର୍ଟିର ପ୍ରଥମ ପ୍ଲେନମ୍‌ରେ ଭଗବତୀ : ୧୯୪୩





# ସାଥି ଭଗବତୀ ସ୍ମରଣେ

- ସୋମନାଥ ପାତ୍ର

ସ୍ୱର୍ଗୀୟ ଭଗବତୀ ଚରଣ ପାଣିଗ୍ରାହୀ ଚିରସ୍ମରଣୀୟ । ସେ ବଞ୍ଚିଥିଲେ ଏକଶତବର୍ଷ ଭୋଗକରି ସାରିଥାନ୍ତେ । ତାଙ୍କ ସ୍ମରଣେ ଆଜି ଓଡ଼ିଶାରେ ତାଙ୍କ ପାଇଁ ଜନ୍ମଶତବାର୍ଷିକୀ ପାଳନ ହେବାକୁ ଯାଉଛି । ତାଙ୍କର ଜନ୍ମ ୧୯୦୮ ମସିହା ଫେବୃୟାରୀ ପହିଲା । ମାତ୍ର ପଞ୍ଚତ୍ରିଂଶ ବର୍ଷ ବୟସରେ ସେ ଓଡ଼ିଶାର ରାଜନୀତି, ସମାଜସେବୀ, ସାହିତ୍ୟ କ୍ଷେତ୍ରରେ ଅଗ୍ରଭାଗକୁ ଆସି ସବୁ ଶ୍ରେଣୀର ସ୍ନେହ, ଶ୍ରଦ୍ଧା ଓ ସମ୍ମାନ ଲାଭ କରିଥିଲେ ।

ଭାରତର ଜାତୀୟ ମୁକ୍ତି ଆନ୍ଦୋଳନ ସହିତ ସମ୍ପୃକ୍ତ ରହି ସେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ସଂପାଦକ ଓ ପରବର୍ତ୍ତୀ ଅବସ୍ଥାରେ ପ୍ରାଣନାଥ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ ଓ ଭଗବତୀ ଚରଣ ପାଣିଗ୍ରାହୀଙ୍କୁ ନେଇ ଗଠିତ ଭାରତୀୟ କମ୍ୟୁନିଷ୍ଟପାର୍ଟିର ଉତ୍କଳ ରାଜ୍ୟ ଶାଖାର ସଂପାଦକ ରହିଥିଲେ । ସେ ଏକାଧାରରେ ଜଣେ ସ୍ୱାଧୀନତା ସଂଗ୍ରାମୀ, ସାମ୍ୟବାଦୀ ଆନ୍ଦୋଳନର ପଥପ୍ରଦର୍ଶକ, ସମାଜସେବୀ, ସୁଲେଖକ, ପ୍ରଗତିଶୀଳ ସାହିତ୍ୟିକ ।

କାର୍ଲମାକ୍ସ ଓଏଙ୍ଗେଲେସ୍‌ଙ୍କ ଦ୍ୱାରା ପ୍ରଣିତ କମ୍ୟୁନିଷ୍ଟ ମାନିଫେଷ୍ଟକୁ ସେ ଓଡ଼ିଆ ଭାଷାରେ ଅନୁବାଦ କରି ସାମ୍ୟବାଦର ମୂଳଧାରଣାକୁ ବୁଦ୍ଧିଜୀବୀ ମହଲରେ ଆଲୋଚନାକୁ ଦେଇଥିଲେ । ସାହତ୍ୟ କ୍ଷେତ୍ରରେ ଏକ ବୈପ୍ଲବିକ ପରିବର୍ତ୍ତନ ଆଣି ତାହାକୁ ନୂତନ ରୂପ ଦେବାପାଇଁ ସେ ଓଡ଼ିଶାରେ ନବଯୁଗ ସାହିତ୍ୟ ସଂସଦ' ଗଠନ କରିଥିଲେ । 'ଆଧୁନିକ' ନାମକ ଏକ ପତ୍ରିକା ଜରିଆରେ ନିଜର ଲେଖା ପ୍ରକାଶ କରି ସାହିତ୍ୟ କ୍ଷେତ୍ରରେ ନୂତନ ମୋଡ ଦେଇଥିଲେ, ତାଙ୍କର ପ୍ରକାଶିତ 'ଶୀକାର' ଗଳ୍ପଟି ସାହିତ୍ୟ କ୍ଷେତ୍ରରେ କେବଳ ଯେ ନୂତନ ମୋଡ ନେଲା ତା ନୁହେଁ ସମାଜ ପରିବର୍ତ୍ତନରେ ଏକ ବୈପ୍ଲବିକ ଚିନ୍ତାକୁ ଜନ୍ମଦେଲା ।

ସେ ବ୍ରିଟିଶ୍ ସରକାରଙ୍କର କୋପ ଦୃଷ୍ଟିରେ ପଡ଼ି କମ୍ୟୁନିଷ୍ଟ ଷଡଯନ୍ତ୍ର ମାମଲାରେ ଗୁନ୍ଥା ହୋଇ ଅଢେଇବର୍ଷ କାଳ କାରାଗାର ଦଣ୍ଡ ଭୋଗିଲେ । ଢେଙ୍କାନାଳ ଗଡଜାତରେ ରଜାର ଅତ୍ୟାଚାର ବିରୁଦ୍ଧରେ ପ୍ରଜାମଣ୍ଡଳ ପ୍ରଜାମାନଙ୍କୁ ସାହାଯ୍ୟ କରିବାକୁ ଯାଇ ରାଜା ଦ୍ୱାରା ବନ୍ଦୀ ହୋଇ ଦଣ୍ଡ ଭୋଗ କଲେ ।

ଛାତ୍ରଜୀବନରୁ ଗୋପବନ୍ଧୁଙ୍କ ସମାଜ ସେବାରେ ଉଦ୍‌ବୁଦ୍ଧ ହୋଇ ଜନସେବାକୁ ପରମଧର୍ମ ଭାବେ ଗ୍ରହଣ କରି ନେଇଥିଲେ । ଗତ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଓଡ଼ିଶାର ଚାରିଆଡେ ଦୁର୍ଭିକ୍ଷ ଦେଖାଦେଲା । ଲୋକେ ଅଖାଦ୍ୟ ଖାଇ, ଅନାହାରରେ ରହି ମୃତ୍ୟୁ ବରଣ କଲେ । ଏପରି ଦୁର୍ଦ୍ଦିନରେ ସେ କିଛି ରିଲିଫ୍ ସାମଗ୍ରୀ ସଂଗ୍ରହ କରି ପ୍ରଥମେ ବାଲେଶ୍ୱର ଜିଲ୍ଲାକୁ ଗଲେ ସେଠାରୁ ଫେରି ଗଞ୍ଜାମ ଜିଲ୍ଲାକୁ ଗଲେ । ସେଠାରେ ନାନାଦି ଭେଜାଲ୍ ଖାଦ୍ୟ ଖାଇ ନାଳରକ୍ତ ଝାଡାରେ ପୀଡିତ ହେଲେ । ଚିକିତ୍ସା ପାଇଁ କଟକ ଅଣାଗଲା । କିନ୍ତୁ ଉପଯୁକ୍ତ ଚିକିତ୍ସାର ଅଭାବରୁ ଅକାଳରେ ୧୯୪୩ ଅକ୍ଟୋବର ୨୩ ତାରିଖରେ ତାଙ୍କର ମୃତ୍ୟ ହେଲା ।

ତାଙ୍କର ମୃତ୍ୟୁ ଓଡ଼ିଶାର ସକଳ ମହଲରେ ଦୁଃଖର ଛାୟା ଖେଳାଇ ଦେଇଥିଲା । ତାଙ୍କ ମୃତ୍ୟୁରେ ରାଜ୍ୟ କମ୍ୟୁନିଷ୍ଟ ପାର୍ଟି ତାଙ୍କ ସଂକ୍ରାନ୍ତରେ ନିଷ୍ପତ୍ତି ଗତ ତା ୨୭।୧୧।୧୯୪୩ ମସିହା 'ମୁକ୍ତିଯୁଦ୍ଧ'ର ୧ମ ବର୍ଷ ୩୮ ସଂଖ୍ୟାରେ ଯାହା ପ୍ରକାଶ ପାଇଥିଲା ତାହା ହେଉଛି -

କମ୍ରେଡ୍ ପାଣିଗ୍ରାହୀ ଆମଠାରୁ ଚିରଦିନ ଲାଗି ଅତି ଅସମୟରେ ଆକସ୍ମିକ ଭାବରେ ବିଦାୟ ନେଇଛନ୍ତି । ଓଡ଼ିଶାର ସର୍ବହରା ଅନୁଷ୍ଠାନ ଆମ କମ୍ୟୁନିଷ୍ଟ ପାର୍ଟିର ସେ ନେତା ଓ ଚାଳକଥିଲେ । ଦୁଃଖ, ଦୈନ୍ୟ, ଅତ୍ୟାଚାର ଓ ନିର୍ଯ୍ୟାତନା ଭିତରେ ସେ ଅଦ୍ଭୁତ ଉଦ୍ୟମ ଓ ସଂଗ୍ରାମ ବଳରେ ସାମାନ୍ୟ କେତେଜଣ ସାଥିଙ୍କର ଗୋଟିଏ ଛୋଟ ଦଳକୁ ଜନପାର୍ଟିର ରୂପ ଦେଇଆସୁଥିଲେ । ତାଙ୍କ ବୁଦ୍ଧିର ବିଚକ୍ଷଣତା, ଚିନ୍ତାର ଗଭୀରତା, ପ୍ରକାଶ ଭଙ୍ଗୀର ସୁଚତୁର ତୀବ୍ରତା ଓ ଆଦର୍ଶର ବାସ୍ତବ ପ୍ରୟୋଗ ଫଳରେ ପାର୍ଟି ଆଜି ଜନପ୍ରିୟ ହୋଇଛି, ସର୍ବହରା ଶ୍ରେଣୀର ଶ୍ରେଷ୍ଠ ସନ୍ତାନ ମାନଙ୍କୁ, ମୁକ୍ତସଂଗ୍ରାମରେ ନିର୍ଭୀକ ବୀର ସୈନିକଙ୍କୁ ସାଙ୍ଗକୁ ଆଣିପାରିଛି । ତାଙ୍କ ପାର୍ଟିର ସଭ୍ୟ ହୋଇ ଆମେ ଆଜି ଗର୍ବ ଓ ଗୌରବ ଅନୁଭବ କରୁଛୁ । ସେ ଆମକୁ ଛାଡି ଯାଇଛନ୍ତି ସତ, ମାତ୍ର ଆମ ଉପରେ ବିରାଟ ଦାୟିତ୍ୱ ରଖିଯାଇଛନ୍ତି । ତାଙ୍କର ପ୍ରିୟତମ ପାର୍ଟିରେ ସଭ୍ୟପଦର ଟେକ ବଜାୟ ରଖିବା ଆଜି ଆମର ପ୍ରଥମ ଓ ପ୍ରଧାନ ପବିତ୍ର କର୍ତ୍ତବ୍ୟ ।"



"ତୁମରି ରକ୍ତରେ ରଞ୍ଜିତ ତୁମର ପ୍ରିୟତମ ଲାଲପତାକା ଛୁଇଁ ଶପଥ କରୁଛୁ ତୁମର ପାର୍ଟିକୁ ଦୃଢ଼, ବ୍ୟାପକ ଓ ଶକ୍ତିଶାଳୀ କରିବୁ । ଦୁନିଆରେ ଦଳିତ ସମାଜର ମୁକ୍ତି ସଂଗ୍ରାମରେ ଆପଣାକୁ ଅକାତରରେ ବଳିଦାନ ଦେବୁ ।"

ମୃତ୍ୟୁର ପଞ୍ଚାବନ ବର୍ଷରେ ଓ ଜନ୍ମଶତବାର୍ଷିକୀ ପାଳନ ସମୟରେ ଉପରୋକ୍ତ ପ୍ରସ୍ତାବକୁ ଆଉଥରେ ସ୍ମରଣ କରିବା ପ୍ରତ୍ୟେକ କମ୍ୟୁନିଷ୍ଟଙ୍କ ପକ୍ଷରେ ଗୁରୁତ୍ୱ ଅଟେ ।

ତାଙ୍କ ମୃତ୍ୟୁରେ ବ୍ୟଥିତ ହୋଇ ଯିଏ ଯାହା ପ୍ରକାଶ କରିଥିଲେ ତହିଁରେ ଭଗବତୀଙ୍କ ମହତ୍ୱର ପରିଚୟ ଦିଏ । ବିଶିଷ୍ଟ ସମାଜ ସେବୀ ଲକ୍ଷ୍ମୀନାରାୟଣ ସାହୁ ଲେଖିଥିଲେ - ପାହାନ୍ତି ତାରାଟି ସାକ୍ଷୀ । ଭଗବତୀ ଜ୍ୟୋସ୍ନା । ଆଜି ଭଗବତୀ ଚାଲିଯାଇଛି । ସେଥିଲା ଯେତେବେଳେ ବାଳକ ସେତେବେଳେ ମୁଁ ତାଙ୍କୁ ପୁରୀରେ ଦେଖିଥିଲି । ତା'ର ପତଳା ସ୍ୱାସ୍ଥ୍ୟ ମୋର ପସନ୍ଦ ନଥିଲା । ଯାହାହେଉ ସେଥିରେ ଭଗବତୀ ବଢ଼ିଲା, ପଢ଼ିଲା ଏମ୍.ଏ. ପାଶ୍ କଲା । ଆଉ ସବୁ ଛାଡ଼ିଦେଇ ଏକା ବେଳକେ ଗୋଟିଏ ଆଦର୍ଶ ଘେନି ଦେଶର କାର୍ଯ୍ୟରେ ବାହାରି ପଡ଼ିଲା । ଆଉ ସେ ସବୁ ଖୁବ୍ ନିର୍ଯ୍ୟାତନା ଭୋଗ କଲା । ଜେଲ୍‌ରେ ଅନେକ କଷ୍ଟ ସହିଲା ।

ଭଗବତୀ ଆଜି ଆଦର୍ଶ ଦେଖାଇ ଯାଇଛି । ପାହାନ୍ତିଆ ତାରା ନିତି ସେ ସାକ୍ଷ୍ୟ ଦେବ, ମୁଁ ଭଗବତୀକୁ ନମସ୍କାର କରେ । ସେ ମୋର କନିଷ୍ଠ ଥିଲା, ମାତ୍ର ତ୍ୟାଗରେ, ଆଦର୍ଶରେ କର୍ମପ୍ରାଣତାରେ ସେ ମୋର ଗୁରୁ ଥିଲା । ରିଲିଫ୍ କାମରେ ଭଲେଣ୍ଟିଆର ବେଶି ପଇସା ଖର୍ଚ୍ଚ କରିବ ନାହିଁ ଏଥିପାଇଁ ତାର ଭାବନା, ଆଜି ଭଗବତୀ ନାହିଁ, ମୁଁ ଏହା ଭାବିପାରୁନାହିଁ ଯେମିତି ।

ଓଡ଼ିଶାର ବିଶିଷ୍ଟ ଆଇନ୍‌ଜୀବୀ ବିଶ୍ୱନାଥ ପଶାଏତ୍ ଲେଖିଥିଲେ - "ଫାସିଷ୍ଟ ଶତ୍ରୁ ଆକ୍ରମଣ କରବାକୁ ଧମକ ଦେଉଥିବା ବେଳେ ଶତ୍ରୁ ବିରୁଦ୍ଧରେ ଦମ୍ଭଧରି ଠିଆ ହେବାକୁ ଓ ଜନସାଧାରଣଙ୍କୁ ଏକଜୁଟ କରାଇ ଶତ୍ରୁକୁ ନିପାତ କରିବାକୁ ବନ୍ଧୁ ଭଗବତୀ ଆଉ ଇହଜଗତରେ ନାହାନ୍ତି । ବନ୍ଧୁ କ'ଣ ସତରେ ମରିଛନ୍ତି, ବିଶ୍ୱାସ ହେଉନାହିଁ । ବନ୍ଧୁ ଯେଉଁ ଆଦର୍ଶ ପାଇଁ ସର୍ବସ୍ୱ ତ୍ୟାଗ କରିଛନ୍ତି, ଯେଉଁ ଜନସାଧାରଣଙ୍କ ଆଗରେ ବିରାଟ କଳ୍ପନାକୁ ବାସ୍ତବ ଆକାରରେ ପ୍ରକାଶ କରିବାକୁ ପ୍ରାଣପାତ କରିଛନ୍ତି ସେଥି ସକାଶେ ତାଙ୍କ ସାଙ୍ଗସାଥୀ, ପ୍ରିୟାପ୍ରୀତି, ସର୍ବୋପରି ଉତ୍କଳରେ ବୁଭୁକ୍ଷୁ, ନିଷ୍ପେଷିତ ଜନସାଧାରଣ ତାଙ୍କୁ ଭୁଲିପାରିବେ ନାହିଁ । ତେଣୁ ସେ ଅମର । ନିଷ୍ପାପର, ନୀରବ, ନିଃସ୍ୱାର୍ଥ କର୍ମୀ ହିସାବରେ ନିରଳସ ନିରାଡମ୍ବର ଜୀବନ ଯାପନ କରି ଯେଉଁ ଆଦର୍ଶ ଦେଖାଇଛନ୍ତି ସେଥି ସକାଶେ ଆଜି ସେ ଦେଶ ପ୍ରେମୀଙ୍କ ନିକଟରେ ପୂଜ୍ୟ, ନମସ୍ୟ ଓ ଆରାଧ୍ୟ ।"

ବିଶିଷ୍ଟ ଆଇନ୍‌ଜୀବୀ ଦୀନବନ୍ଧୁ ସାହୁ ଲେଖିଥିଲେ - "ଆଜି ଭଗବତୀଙ୍କ ବିଷୟରେ ଲେଖିବାକୁ ଲେଖନୀ ଧରିବା ବେଳକୁ ହାତରୁ ଲେଖନୀ ଖସିପଡ଼ିଛି । ମୁଁ ୧୯୨୭ ମସିହାରୁ ଭଗବତୀଙ୍କ ସହପାଠୀ ଓ ସଙ୍ଗୀହୋଇ ଚଳିଆସିଛି । ସେ ତାଙ୍କର ପ୍ରଥମ ଜୀବନ ସାହିତ୍ୟ ସେବାରେ କଟାଇଥିଲେ ଓ ତାଙ୍କର ଛାତ୍ରଜୀବନର ପ୍ରଥମାବସ୍ଥାରେ ପୃଥିବୀର ଖ୍ୟାତନାମା ଗଦ୍ୟ ସାହିତ୍ୟିକ ମାନଙ୍କର ଲେଖା ପଢ଼ିବା ଓ ଆଲୋଚନା କରିବାରେ ବଡ଼ ଆନନ୍ଦ ଉପଭୋଗ କରୁଥିଲେ । ନିଜେ ମଧ୍ୟ ସେଗୁଡ଼ିକ ମଧ୍ୟରୁ କେତେକ ଲେଖା ତାଙ୍କର ସୁଲଳିତ ଭାଷାରେ ଅନୁବାଦ କରିଥିଲେ । ଛୋଟ ଛୋଟ ଗଳ୍ପ ଲେଖି ପର ସମୟରେ ମାସିକ ପତ୍ରିକା ମାନଙ୍କରେ ପ୍ରକାଶ କରୁଥିଲେ ଓ ଗଳ୍ପ ସାହିତ୍ୟରେ ତାଙ୍କର ନାମ ପ୍ରତିଷ୍ଠିତ ହୋଇଥିଲା ।

*****

ସେ ଦିନକୁ ଦିନ ରାଜନୀତି ଆଡକୁ ଟାଣି ହୋଇଗଲେ । ଅର୍ଥନୀତିରେ ଏମ୍.ଏ. ପାଶ୍ କରିସାରି ଆମ୍ଭମାନଙ୍କୁ ବହୁ ଅର୍ଥବ୍ୟୟରେ ଯେଉଁ ପୁଞ୍ଜିବାଦର ଅର୍ଥନୀତି ଶିକ୍ଷା ଦିଆଯାଉଥିଲା ସେଥିରେ ତାଙ୍କର ବିରକ୍ତି ଜନ୍ମିଥିଲା ଓ ସେହିଦିନଠାରୁ ପୁରାପୁରି ସାମ୍ୟବାଦୀ ହୋଇନଥିଲେ ମଧ୍ୟ ସାମ୍ୟବାଦର ନୀତି ଆଲୋଚନା କରି କ୍ରମେ କ୍ରମେ ସେହି ମନ୍ତ୍ରରେ ଦୀକ୍ଷିତ ହେବାକୁ ଲାଗିଲେ । ଏମ୍.ଏ. ପାଶ୍ ପରେ କଟକ ଫେରି ଆସି ଗୋଟିଏ ସାମ୍ୟବାଦୀ କ୍ଲବ କରି ସେଥିରେ ସାମ୍ୟବାଦର ବିଭିନ୍ନ ବିଭିନ୍ନ ସମସ୍ୟା ଆଲୋଚନା କରିବାକୁ ଲାଗିଲେ । ସେହିଦିନଠାରୁ ସେ ସାମ୍ୟବାଦ ମୂଳମନ୍ତ୍ରରେ ଏପରି ଦୀକ୍ଷିତ ହୋଇଥିଲେ ଯେ, ସେ କେବଳ ସାମ୍ୟବାଦର ଆଲୋଚନାରେ ତୃପ୍ତ ନ ହୋଇ ସାମ୍ୟବାଦର ଜୀବନ୍ତ ପ୍ରତିମୂର୍ତ୍ତି ସୋଭିଏଟ୍ ଋଷିଆର କମ୍ୟୁନିଷ୍ଟ ପାର୍ଟି ପ୍ରତି ଆକୃଷ୍ଟ ହେଲେ । କଂଗ୍ରେସର ସାମ୍ୟବାଦୀ ଦଳରେ ନରହି ଓଡ଼ିଶାରେ ବେଆଇନ୍ କମ୍ୟୁନିଷ୍ଟ ପାର୍ଟି ଗଢ଼ିବାରେ ଲାଗିଲେ ଓ ସେଥିପାଇଁ ତାଙ୍କୁ ଅନେକ କଷ୍ଟ ସ୍ୱୀକାର କରି ଲୁଚାଇ ଛପାଇ କାମ କରିବାକୁ





ପଡୁଥିଲା । ତାଙ୍କର ଏ ପାର୍ଟି କରିବାର ଚେଷ୍ଟା କରୁଥିବା ସମୟରେ ଆମ ଦେଶର ଗୁପ୍ତଚରମାନଙ୍କ କରାମତିରୁ କମ୍ୟୁନିଷ୍ଟ ଷଡଯନ୍ତ୍ର ମାମଲାରେ ମୁଦଲା ହୋଇ ଅଠର ମାସ ଜେଲ୍ ଯିବାକୁ ପଡିଥିଲା ।

"ମୁଁ ଏ କଥା ଗର୍ବ କରି କହିପାରେ ଯେ ଓଡ଼ିଶା ଭଗବତୀଙ୍କ ତିରୋଧାନରେ ଜଣେ ଖାଣ୍ଟି ଦେଶପ୍ରେମୀ ବୀରପୁରୁଷ ହରାଇଛି ।"

ଗୋପବନ୍ଧୁ ଦାସଙ୍କ ପ୍ରତିଷ୍ଠିତ "ସମାଜ"ର ତତ୍‌କାଳୀନ ସମ୍ପାଦକ ଉଦୟନାଥ ଷଡଙ୍ଗୀ ଲେଖିଥିଲେ - "ଭଗବତୀଙ୍କ ସ୍ୱଭାବ ଚରିତ୍ର ଏପରି ମଧୁର ଓ ସରସ ଯେ ତାଙ୍କ ସହିତ ଯେ ଥରେ ମାତ୍ର ପରିଚିତ ହୋଇଛି ତାହା ସେ ଅନୁଭବ କରିପାରିବ । ତାଙ୍କର ୧୩/୧୪ ବର୍ଷ ବୟସ ସମୟରୁ ୩୫ ବର୍ଷ ବୟସରେ ମୃତ୍ୟୁ ପର୍ଯ୍ୟନ୍ତ ମୁଁ ତାଙ୍କର ଯୋଡିଏ ଗୁଣ ବିଭାଗର ଲକ୍ଷ୍ୟ କରିଆସିଛି । ସେ ଦୁଇଟି ଗୁଣରୁ ଗୋଟିଏ ଗୁଣ ହେଉଛି ସରସତା ଓ ଅନ୍ୟଟି ହେଉଛି ଦୃଢତା ।

*****

"ତାଙ୍କର ଆଉ ଏକ ବିଶେଷଗୁଣ ସେ ଯାହା ବୁଝୁଥିଲେ, ସେଥିରେ ଦୃଢତାର ସହତ ଲାଗିଯାଉଥିଲେ, ନିଜ ବିବେକ ମୁତାବକ କାର୍ଯ୍ୟ କରିବାକୁ କଦାପି ପଶ୍ଚାତପଦ ହୋଇନାହାନ୍ତି ।"

କବି ଅନନ୍ତ ପଟ୍ଟନାୟକ ଲେଖିଥିଲେ - "ଭଗବତୀ ଲଢୁଥିଲେ ଲୋକଙ୍କ ମୁହଁରେ ଅନ୍ନଜଳ ଦେବା ଲାଗି ସମାଜରୁ ଶୋଷଣ, ଅତ୍ୟାଚାର ଲୋପ କରିବା ଲାଗି । ଛାତ୍ର ଜୀବନ ସରୁ ନ ସରଣୁ ସେ ରାଜନୀତିରେ ଯୋଗ ଦେଇଥିଲେ । ସେ ସାହିତ୍ୟିକ ଥିଲେ, ଲେଖକ ଥିଲେ । ମାତ୍ର ଏସବୁ ଉପରେ ସେ ଥିଲେ ଲୋକସେବକ । ତାଙ୍କର ସାହିତ୍ୟ ଜନତାର ଦୁଃଖ ଓ ମୁକ୍ତିର ବିଷୟ ନେଇ ଗଢିଉଠିଥିଲା । ଅନ୍ୟତମ ବିଶିଷ୍ଟ ଆଇନଜୀବୀ ହରିହର ମହାପାତ୍ର ଲେଖିଥିଲେ -

"ଭଗବତୀ ସହିତ ସମ୍ପର୍କ ଗଲା ୧୮ ବର୍ଷ ମଧ୍ୟରେ ଅତ୍ୟନ୍ତ ଘନିଷ୍ଠ ହୋଇଥିଲା । ବିଦ୍ରୋହ ତା ଜୀବନର ମଜ୍ଜାଗତ ଥିଲା । ଆଜି ନୁହେଁ, ପିଲାଦିନରୁ, ସେଥିପାଇଁ ନୂତନ ଚିନ୍ତାଧାରାର ପଥିକ ହେବା ପାଇଁ ଏବଂ ସେଥିପାଇଁ ଜୀବନ ପାତ କରିବା ପାଇଁ ତା'ର କୁଣ୍ଠା କେବେ ହେଲେ ହୋଇନାହିଁ ।"

"ସରସ ସୁନ୍ଦର ସ୍ୱଭାବ ଥିଲା ଭଗବତୀର ଆଉ ଗୋଟିଏ ଆକର୍ଷଣ, ବୟୋଜ୍ୟେଷ୍ଠ ଗୋଷ୍ଠିରେ ସେ ଯେପରି ସ୍ନେହ ପାଉଥିଲା, କନିଷ୍ଠଙ୍କ ମଧ୍ୟରେ ସେହିପରି ସମ୍ମାନ ପାଉଥାଏ । ଦୁଃଖ ହୁଏ ଯାହା ବଢିଆସୁଥିଲା ତାହା ଆଜି ସତୀ ଚଉରାରେ ସ୍ଥିର ହୋଇ ରହିଗଲା ।

ତତ୍‌କାଳୀନ କେନ୍ଦ୍ର ଆସେମ୍ବ୍ଲିର କଂଗ୍ରେସ ସଭ୍ୟ ଭୁବନାନନ୍ଦ ଦାସ ତାଙ୍କ ଶୋକବାର୍ତ୍ତାରେ ଜଣାଇଥିଲେ ଯେ - "ଭଗବତୀ ପାଣିଗ୍ରାହୀଙ୍କ ଅକାଳ ମୃତ୍ୟୁରେ ତରୁଣ କମ୍ୟୁନିଷ୍ଟ ପାର୍ଟିର ଓଡ଼ିଶାରେ ଅପୂରଣୀୟ କ୍ଷତି ଘଟିଲା ।

ଓଡ଼ିଶା କଂଗ୍ରେସ ଆସେମ୍ବ୍ଲି ଦଳର ନେତା ଶ୍ରୀଯୁକ୍ତ ବିଚିତ୍ରାନନ୍ଦ ଦାସ ଲେଖିଥିଲେ - ଓଡ଼ିଶାରେ ଲୋକେ ଦୈନ୍ୟରେ ପେଷି ହୋଇ ଯାଉଛନ୍ତି । ଦିନକୁ ଦିନ ଚାଷୀ ମୂଲିଆ ବୁଡିବାକୁ ବସିଛି, ଛାତ୍ରବସ୍ଥାରେ ଏହା ଲକ୍ଷ୍ୟ କରି ତାଙ୍କର ହୃଦୟ କାନ୍ଦି ଉଠିଥିଲା । ଅସଙ୍ଗଠିତ ଓ ଅସହାୟ ଜନତାର ଉନ୍ନତି ଆଣି ନୂଆ ଜୀବନ ସଞ୍ଚାର କରିବା ସକାଶେ ସେ ତାଙ୍କର ଆଶାମୟ ପ୍ରାଣକୁ ସମର୍ପି ଦେଇଥିଲେ । ତ୍ୟାଗ ଓ ଦାରିଦ୍ର୍ୟର ଜୀବନ ବରଣ କରିଥିଲେ । ଗରୀବ କୃଷକ କୁଳର ଉଦ୍ଧାର ସକାଶେ ଅକ୍ଲାନ୍ତ ପରିଶ୍ରମ କରୁଥିଲେ । ଭଗବତୀ ଉଚ୍ଚକୂଳରେ ଜନ୍ମିଥିଲେ । ତାଙ୍କର ମଣିଷ ଜାତି ପ୍ରତି ପ୍ରଗାଢ ଶ୍ରଦ୍ଧା, ଭୋକିଲା ଜନତାର ଦୁଃଖ କମାଇ ତାର ଭାଙ୍ଗିପଡିଥିବା ଶକ୍ତିକୁ ସଙ୍ଗଠିତ ଓ ଏକତ୍ର କରାଇବା ଦିଗରେ ତାଙ୍କୁ ଟାଣି ନେଇଥିଲା ।

ଓଡ଼ିଶା ରିଲିଫ୍ କମିଟିରେ ମୋର ଜଣେ ସହକର୍ମୀ ଭାବରେ ତାଙ୍କର ପ୍ରକୃତ ଖାଣ୍ଟି ସୁନାଭଳି ଗୁଣର ପରିଚୟ ପାଇବା ପାଇଁ ମୋତେ ସୁଯୋଗ ମିଳୁଥିଲା ।"

ଏପରି ବହୁଗୁଣରେ ପରିପୂର୍ଣ୍ଣ, ବହୁଜନ ପ୍ରଶଂସିତ, ସ୍ନେହରପାତ୍ର ସ୍ୱର୍ଗୀୟ ଭଗବତୀଙ୍କ ଜନ୍ମଶତବାର୍ଷିକୀରେ ଆମେ ତାଙ୍କୁ ସ୍ମରଣ କରିବା ସହିତ ତାଙ୍କର ଆଦର୍ଶ ଓ ତ୍ୟାଗକୁ ଅନୁସରଣ କରିବା ଦ୍ୱାରା ହିଁ ତାଙ୍କ ପ୍ରତି ଉପଯୁକ୍ତ ସମ୍ମାନ ପ୍ରଦର୍ଶନ ହେବ ।





# ମୋ ବାପା ଯାହାଙ୍କ କାନ୍ଧରେ ବସି ସମାଜବାଦ ରଥଯାତ୍ରା ଦେଖିବାର ସୌଭାଗ୍ୟ ମୋର ହୋଇନାହିଁ

*- ଶ୍ରୀମତୀ ଚନ୍ଦ୍ରିକା ମହାପାତ୍ର*

ବାପାଙ୍କ ବିଷୟରେ ମୋ ପରି ଅଯୋଗ୍ୟା ତଥା ଅକିଞ୍ଚନ ସନ୍ତାନ କିଛି ଲେଖିବାରେ ଆସ୍ପର୍ଦ୍ଧା କରିବା ଦୁଃସାହସ ମାତ୍ର କାରଣ ଅତି ଶୈଶବର ଏଭଳି ମହାନ୍ ବ୍ୟକ୍ତିଙ୍କ ପିତୃ ସ୍ନେହରୁ ବଞ୍ଚିତ କେବଳ ହତଭାଗ୍ୟ ସନ୍ତାନ କପାଳରେ ଘଟିଥାଏ । କେତୋଟି ଘଟଣା ଯାହା ପରବର୍ତ୍ତୀ ସମୟରେ ପରିବାରର ଗୁରୁଜନଙ୍କ ଦ୍ୱାରା ବାରମ୍ବାର କଥିତ ହୋଇ ମନଭିତରେ ଅବିସ୍ମରଣୀୟ ହୋଇ ରହିଯାଇଛି ସେତିକି ଏଇ ଦୀର୍ଘ ପଂଚଷଠି ବର୍ଷ ଧରି ସତେଜ କରି ସାଁଉଟି ରଖିବାର ଦୃଢ ପ୍ରୟାସ ମାତ୍ର କରିଛି, ଏକ ଉଚ୍ଚଶିକ୍ଷିତ ସମ୍ଭ୍ରାନ୍ତ ଉଚ୍ଚମଧ୍ୟବିତ ପରିବାରର କୋଳପୋଛା ଅତି ଆଦରର ସନ୍ତାନ ରୂପେ ଜନ୍ମ ଗ୍ରହଣ କରି ମଧ୍ୟ ସେ ଯେଉଁ ବୈପ୍ଳବିକ ଚିନ୍ତାଧାରା ର ଦିଶାରୀ ଥିଲେ, ସେଇ ଚିନ୍ତାଧାରା ସାମ୍ୟବାଦୀ ଦର୍ଶନ,-ଆଦର୍ଶ, ନୀତି ଓ ମାନବବାଦ ତଥା ତାଙ୍କର ସାହିତ୍ୟ ସୃଷ୍ଟି ପରବର୍ତ୍ତୀ ବହୁ ଚିନ୍ତାଶୀଳ, ଜ୍ଞାନ ଗୁଣୀଙ୍କୁ ପ୍ରଭାବିତ କରିଛି । ଓଡିଶାର ଜନମାନସରେ ଅତି ଆଦରଣୀୟ ଓ ପରମ ଶ୍ରଦ୍ଧେୟ ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରମୁଖ ଆସନ ଗ୍ରହଣ କରିଛନ୍ତି ।

କେତେ ବା ବର୍ଷ ବୟସର ଜୀବନକାଳ ତାଙ୍କର ଥିଲା ? ଚଉତ୍ରିଶ ପଞ୍ଚତ୍ରିଶ ବର୍ଷ ବୟସ, ଯେଉଁ ବୟସର ଯୁବ ସମାଜ କର୍ମ ଆରମ୍ଭ କରିବାର ରାସ୍ତାର ସନ୍ଧାନରେ ଥାଏ ସେଇ ବୟସ ହେଲା ପୂର୍ବରୁ ଦୁନିଆଁକୁ ନୂତନ ଯୁଗର ଅଭ୍ୟୁଥାନ ପାଇଁ ବାଟ କଢାଇ ନିଜର ଜୀବନ ପାତ କରିଥିଲେ । ମାତ୍ର ବାଲ୍ୟ, କିଶୋର ଅବସ୍ଥା ଅତିକ୍ରମୀ ତରୁଣରୁ ଯୁବାବସ୍ଥା ଭିତରେ ମାତ୍ର ସମୟ ସୀମା ଥିଲା ନଅ ବର୍ଷ । ସେଥିରୁ ଦୁଇ ବର୍ଷରୁ ଅଧିକ କାଳ ଜେଲରେ କଟିଥିଲା ବାକୀ ମାତ୍ର ଛଅ ସାତ ବର୍ଷ ମଧ୍ୟରେ ପରାଧୀନ ଦେଶକୁ ସ୍ୱାଧୀନତା ହାସଲରେ ସୀମିତ ନରହି ସମାଜରେ ରହିଥିବା ସାମାଜିକ କୁସଂସ୍କାର, ଅର୍ଥନୈତିକ ଅସମାନତାର ମୂଳୋତ୍ପାଟନ ନିମନ୍ତେ ସାମ୍ୟବାଦୀ ବିପ୍ଳବର ଆବଶ୍ୟକତାକୁ ଅନୁଭବ କରି, ସେଥି ନିମନ୍ତେ ଖସଡା ପ୍ରସ୍ତୁତ କରିବା, ସାଧାରଣ ମେହନତୀ ମଣିଷକୁ ତା'ର ଅଧିକାର ସଂପର୍କରେ ସଚେତନ କରିବା ନିମନ୍ତେ, ଜାଗ୍ରତ କରିବା ନିମନ୍ତେ ବିଭିନ୍ନ ପତ୍ର ପତ୍ରିକା ପ୍ରକାଶନ, ସଂପାଦନ ଜରିଆରେ ସାହିତ୍ୟ କ୍ଷେତ୍ରରେ ଏକ ନୂତନ ଯୁଗର ସ୍ରଷ୍ଟା ହେବା - ଏ ସବୁ କିପରି ସମ୍ଭବ ହୋଇ ପାରିଥିଲା ସେହି ସ୍ୱଳ୍ପ ସମୟ ସୀମା ଭିତରେ ? ସେ ଏକ ସାଲିସ୍‌ହୀନ ସଂଗ୍ରାମରେ ବିଶ୍ୱାସ କରିଥିଲେ ଯାହା ତାଙ୍କ ଲେଖନୀରେ ପ୍ରକାଶ ପାଇଥିଲା "ସାପ ମରିବନି କି ବାଡି ଭାଂଗିବ ନାହିଁ" - ଏ ନୀତି ସେ ସର୍ବଦୌ ପରିହାର କରିଥିଲେ । ଲକ୍ଷ୍ୟରେ ପହଞ୍ଚିବାକୁ ହେଲେ ସାଲିସ୍ ହୀନ ଯାତ୍ରା କରିବାକୁ ହେବ, ଦେଶ ତଥା ଦେଶର ଅଗଣିତ ଜନତାଙ୍କ ସ୍ୱାର୍ଥ ବ୍ୟକ୍ତିଗତ କିମ୍ବା ଗୋଷ୍ଠିଗତ ସ୍ୱାର୍ଥ ଠାରୁ ଅତି ଉର୍ଦ୍ଧରେ ଏହାହିଁ ଥିଲା ତାଙ୍କର ମୂଳମନ୍ତ୍ର । ସେଥିପାଇଁ ନିଜ ପରିବାର ସ୍ୱାର୍ଥ ତାଙ୍କ ପାଇଁ ଥିଲା ନିତାନ୍ତ ଗୌଣ । ଅଥଚ ଏପରି ସାଲିସ୍‌ହୀନ ବ୍ୟକ୍ତିଥିଲେ ଅଜାତଶତ୍ରୁ । ତାଙ୍କର ସଦାହାସ୍ୟୋଜ୍ଜ୍ୱଳ ପରିହାସର ପ୍ରିୟ ଆକର୍ଷଣୀୟ ବ୍ୟକ୍ତିତ୍ୱରେ ଯେ କେହି ବିମୋହିତ ହେଉଥିଲେ ତାଙ୍କର ବୈପ୍ଳବିକ ସାମ୍ୟବାଦ ଚିନ୍ତାଧାରା, ତଥା ଆଦର୍ଶକୁ ବିରୋଧ କରୁଥିବା ବନ୍ଧୁ ବ୍ୟକ୍ତି ବିଶେଷ ତାଙ୍କର ଅତ୍ୟନ୍ତ ଆପଣାର ଅନ୍ତରଙ୍ଗ ଥିଲେ । ତାଙ୍କ ମୃତ୍ୟୁ ପରେ ସେହି ବ୍ୟକ୍ତି ବିଶେଷ ମାନଙ୍କ ସ୍ନେହ ମମତା ଆମ୍ଭମାନଙ୍କ ପ୍ରତି ମଧ୍ୟ ଅତୁଟ ରହିଥିଲା ।

ବାପାଙ୍କ ଚିନ୍ତାଧାରାରେ ଥିଲା ଦେଶର ଅଗଣିତ ଦରିଦ୍ର ସର୍ବହରାଙ୍କ ଉତ୍ଥାନ । ଦେଶର ଅବହେଳିତ ଶୋଷିତ ଅସହାୟ ଚାଷୀମୂଲିଆଙ୍କ ଉନ୍ନତି ନିମନ୍ତେ କୃଷି ଓ ଗ୍ରାମ୍ୟ ଶିଳ୍ପର ଗୁରୁତ୍ୱ ସେ ଉପଲବ୍ଧି କରିଥିଲେ । ପରିବାରର ସବୁଠାରୁ ସୁକୁମାର ଓ ସୌଖୀନ ସନ୍ତାନ ହୋଇ ମଧ୍ୟ ଖଦଡକୁ ନିଜର କରି ଆଦରି ନେଇଥିଲେ । କାରଣ ଯାହା କଥାରେ କୁହାଯାଏ ତାହା ସର୍ବପ୍ରଥମେ ସେହି ବ୍ୟକ୍ତି ନିଜେ ନିଜ ବ୍ୟକ୍ତିଗତ ଜୀବନଧାରାରେ ଆପଣେଇ ନେବା ଉଚିତ୍ ବୋଲି ତାଙ୍କର ବିଶ୍ୱାସ ଥିଲା । ସବୁ ବେଳେ ସେ ଖଦଡ ପିନ୍ଧୁଥିଲେ, ଏପରି କି ଗାଧୋଇ ଆସି ଓଦା ଲୁଗା ପାଲଟିବା ପାଇଁ ଯଦି ଖଦଡ ଗାମୁଛା ଭିନ୍ନ ଅନ୍ୟ ଗାମୁଛା କିଏ ହାତକୁ ବଢେଇ ଦେଲେ ସେ ଖଦଡ ଗାମୁଛା ମିଳିବା ପର୍ଯ୍ୟନ୍ତ ଓଦାଲୁଗାରେ ଅପେକ୍ଷା କରୁଥିଲେ । ଆହାରର ରୁଚି ମଧ୍ୟ ବଦଳି ଗଲା । ଚଟି ଜୋତା ପିନ୍ଧିବା ଛାଡି





ଦେଲେ । ବୈଶାଖ ଜ୍ୟେଷ୍ଠ ମାସର ଖରାରେ ଖାଲି ପାଦରେ ଯିବା ଦେଖି ବଡ଼ ଭାଇନା ବ୍ୟଥିତ ହୋଇ ଚଟି କିଣି ଦେବାର ପ୍ରସ୍ତାବ ଦିଅନ୍ତେ ତାଙ୍କୁ ପଚାରିଥିଲେ ଦେଶର ଅଧିକାଂଶ ଖାଲି ପାଦରେ ଚାଲୁଥିବା ମଣିଷଙ୍କୁ କଣ ଚଟି କିଣି ଦେଇପାରିବେ ?

ଏକ ନୂତନ ଯୁଗର ସାହିତ୍ୟସ୍ରଷ୍ଟା ଭାବେ ତାଙ୍କ ଲେଖା ଆଜିର ସାହିତ୍ୟିକ, ଆଲୋଚକଙ୍କୁ ନୂଆ ଦିଗର ସନ୍ଧାନ ଦେଇଛି । ସମାଜ ତଥା ସାଧାରଣ ମଣିଷଙ୍କୁ ସଚେତନ କରିବା ପାଇଁ 'ଆଧୁନିକ', 'ସାରଥୀ' କୃଷକ ଆଦି ପତ୍ରିକାର ପ୍ରକାଶନ ଓ ସଂପାଦନାର ଦାୟୀତ୍ୱ ନେଇଥିଲେ । ଆଧୁନିକର ସଂପାଦକୀୟ ଥିଲା ଅନନ୍ୟ ।

କମ୍ୟୁନିଷ୍ଟ ପାର୍ଟିର ପ୍ରତିଷ୍ଠାତା ସଂପାଦକ ହିସାବରେ ପାର୍ଟିର ମୁଖପାତ୍ର 'ମୁକ୍ତିଯୁଦ୍ଧ'ର ସଂପାଦନା ମଧ୍ୟ କରିଥିଲେ । ଜେଲ୍‌ରେ ଥିବା ସମୟରେ ପୃଥିବୀର ଇତିହାସ ରଚନା କରିଥିଲେ । କିନ୍ତୁ ଦୁର୍ଭାଗ୍ୟ ବଶତଃ ୬ଟି ଭାଗରୁ ମାତ୍ର ଦ୍ୱିତୀୟ ଓ ଚତୁର୍ଥ ଖଣ୍ଡ ମିଳିଥିଲା । ବାକୀ ୪ଖଣ୍ଡ ପାଣ୍ଡୁଲିପି ଚୋରୀ ହୋଇଯାଇଥିଲା । ପାର୍ଟିର ସଦସ୍ୟ ଓ ଅର୍ଦ୍ଧଶିକ୍ଷିତ କର୍ମୀମାନଙ୍କ ମନରେ ମାର୍କ୍ସିଜିମ୍‌ର ମୂଳଦୂଆ ପକାଇବା ନିମନ୍ତେ କମ୍ୟୁନିଷ୍ଟ ମାନିଫେଷ୍ଟୋ ଓଡ଼ିଆ ଅନୁବାଦ କରି କର୍ମୀମାନଙ୍କ ପାଖରେ ପହଞ୍ଚିବାର ଆବଶ୍ୟକତା ସେ ଅନୁଭବ କରି ଏହାର ଓଡ଼ିଆ ଭାଷାନ୍ତର କରିଥିଲେ 'ଶିକାର' ପରି ଯୁଗାନ୍ତ ସୃଷ୍ଟିକାରୀ ଗଳ୍ପ , "ଯାଆରେ ମନ ଯାଅରେ" — ପରି କବିତା ସଂପର୍କରେ ଆଲୋଚନା କରିବାର ଦୁଃସାହାସ କରିପାରିବି ନାହିଁ ।

ସେ କେବଳ ସ୍ରଷ୍ଟା ନଥିଲେ । ସେ ଥିଲେ ଭବିଷ୍ୟତ ଦ୍ରଷ୍ଟା । ମଣିଷର ମୁକ୍ତିର ବାଟ ସନ୍ଧାନରେ ସେ ଜାଣିଥିଲେ ଯେ ଏକ ଉଚ୍ଚତର ଚେତନାର ଅଧିକାରୀ, ଏକ ପରିପୂର୍ଣ୍ଣ ଜଗତର ଅଧିବାସୀ ହେବା ପାଇଁ ପ୍ରଥମେ ମଣିଷର ନିମ୍ନତମ ମୌଳିକ ଦାବୀପୂରଣ ହେବା ନିତାନ୍ତ ଜରୁରୀ - ଯଥା ଖାଦ୍ୟ, ବସ୍ତ୍ର, ବାସ ଏବଂ ପୃଥିବୀରେ ନିରନ୍ନ ଜନତାର ବୁଭୁକ୍ଷା ଥିବା ପର୍ଯ୍ୟନ୍ତ ଶୋଷକ ଓ ଶୋଷିତ ଶ୍ରେଣୀ ଥିବା ପର୍ଯ୍ୟନ୍ତ ସେଇ ମହତ୍ତ୍ୱର ଅବସ୍ଥାର ଅନୁଭବ ନିରର୍ଥକ, ତାଙ୍କର ସ୍ୱପ୍ନ ଥିଲା ଏକ ଶ୍ରେଣୀହୀନ ସମାଜ - ଏକ ମୁକ୍ତ ପୃଥବୀ ଏବଂ ଏହି ମୁକ୍ତ ପୃଥିବୀର ମୁକ୍ତ ମଣିଷ ।

ପରିବାର ପାଇଁ ତାଙ୍କର ଥିଲା ସ୍ୱଳ୍ପ ସମୟ - ସେଇ ସମୟ ଆମ ପାଇଁ ମହାର୍ଘ୍ୟ ଥିଲା । ବାପା ଆମକୁ ଗପ କହୁଥିଲେ - ସେ କହୁଥିଲେ ଫରାସୀ ବିପ୍ଳବ, ରୁଷ ବିପ୍ଳବର କଥା Hunch back of Notredam ପରି ମହାନ୍ ଉପନ୍ୟାସର ଗଳ୍ପ Zoya ଓ Shura ର ବୀରତ୍ୱ କାହାଣୀ । ମୁଁ ବା କ'ଣ ବୁଝୁଥିଲି ଏ ଗଳ୍ପରୁ ? କିନ୍ତୁ ପରୀ କାହାଣୀ ଶୁଣିବା ପରି ନିବିଷ୍ଟ ମନରେ ବସି ଶୁଣୁଥିଲି । କାରଣ ବାପାଙ୍କ କୋଳର ଆରାମ ଓ ଉଷ୍ଣମ ମୋ ପାଇଁ ଥିଲା ପରମ ଲୋଭନୀୟ । କିନ୍ତୁ ସେ ସ୍ମୃତିତ ଏ ମନ ଭିତରେ ନିରନ୍ତର ଜଳୁଥିବା ପ୍ରଦୀପରେ ସ୍ନିଗ୍ଧ ଆଲୋକ । ବାପାଙ୍କଠାରୁ ଶୁଣିଥିବା ଏସବୁ ଗପ, କାହାଣୀ ସେଇ ଶୈଶବ ଅବସ୍ଥାରୁ ଆମ ମନରେ ନିଶ୍ଚିତ ରୂପେ ଗଭୀର ପ୍ରଭାବ ପକାଇ ଥିଲା - କାରଣ ବାପାଙ୍କ ଗପ କହିବାର ଶୈଳୀ ଥିଲା ଅନବଦ୍ୟ, ତେବେ ଏପରି ଗପଚୟନ କରି ଆମକୁ କିପରି ଗଢିବାକୁ ଚାହୁଁଥିଲେ ? ତାଙ୍କ ଉପଯୁକ୍ତ କରିବା ପାଇଁ ତ ସମୟ ନଥିଲା ।

ଆଜି ବାପାଙ୍କ କଥା ଲେଖିଲା ବେଳେ ସେଇ ଗୋଟିଏ ପ୍ରଶ୍ନ ତୁହାକୁ ତୁହା ମନରେ ଉଠେ - ଏଭଳି ଜଣେ ମଣିଷ ମାତ୍ର ୬୫ ବର୍ଷ ପୂର୍ବେ ଓଡ଼ିଶା ପରି ରାଜ୍ୟରେ, ଓଡ଼ିଶାର ବାତାବରଣରେ ସମ୍ଭବପର ହେଲେ କିପରି ? ମାତ୍ର ୩୩/୩୪ ବର୍ଷ ଜୀବନ କାଳ ମଧ୍ୟରେ ଜଣେ ଏଭଳି ପ୍ରଚଣ୍ଡ ତ୍ୟାଗ ଓ କୃତିତ୍ୱର ଦୃଷ୍ଟାନ୍ତ ରଖିଗଲେ କିପରି ??

ତାଙ୍କ ଜ୍ୟେଷ୍ଠଭ୍ରାତା କାଳିନ୍ଦୀଚରଣଙ୍କ ଭାଷାରେ

"ସୌଜନ୍ୟ ଜଗି ଗୁଣସୁମରିବ  କିବା ତୋ' ସୋଦରଭାଇ ?

ଦେଶଯାକ ଖାଲି ଜାଲ ଜୁଆଚୋରୀ,

ଭଗବତୀ ଗଲା କାହିଁ ?





# ଭଗବତୀଚରଣ

- ସୌରୀବନ୍ଧୁ କର

ଓଡ଼ିଶାରେ ସାମ୍ୟବାଦୀ ଆନ୍ଦୋଳନର ଭଗୀରଥ, ପ୍ରଗତିଶୀଳ ସାହିତ୍ୟର ଆଦ୍ୟ ପ୍ରବର୍ତ୍ତକ, ଭାରତୀୟ କମ୍ୟୁନିଷ୍ଟ ପାର୍ଟି, ଓଡ଼ିଶାର ପ୍ରତିଷ୍ଠାତା ଓ ସମ୍ପାଦକ, ମୁକ୍ତି ସଂଗ୍ରାମର ମହାନ୍ ଯୋଦ୍ଧା, କୃଷକ ଓ ଗଡଜାତ ଆନ୍ଦୋଳନର କର୍ଣ୍ଣଧାର ସ୍ୱର୍ଗତ ଭଗବତୀ ପାଣିଗ୍ରାହୀ ଜନ୍ମ ଶତବାର୍ଷିକୀର ବର୍ଷ ଆଉ କେତେମାସ ପରେ ପୂର୍ଣ୍ଣ ହେବାକୁ ଯାଉଛି । ତାଙ୍କ ରାଜନୈତିକ ଜୀବନ, ସାହିତ୍ୟିକ ଜୀବନର ଆଲୋଚନା ବର୍ତ୍ତମାନ ପରିପ୍ରେକ୍ଷୀରେ ଏକାନ୍ତ ଜରୁରୀ, ଆମେ ଯେତେବେଳେ ନବ୍ୟ ଉଦାରବାଦୀ ଜଗତୀକରଣ ମଧ୍ୟରେ ପେଶି ହୋଇ ଯାଉଛନ୍ତି ।

ରାଜନୀତି ହେଉ, ଅର୍ଥନୀତି ହେଉ, ସଂସ୍କୃତି ବା ସାହିତ୍ୟ ହେଉ ଏହାର ବର୍ତ୍ତମାନକୁ ବୁଝିବାକୁ ହେଲେ ଅତୀତର ଅନୁଭବ ଏବଂ ସକାରାତ୍ମକ ପୃଷ୍ଠଭୂମିକୁ ବୁଝିବାକୁ ହେବ । ଯେଉଁମାନେ ଅତୀତକୁ ସଂପୂର୍ଣ୍ଣ ଉପକ୍ଷୋକରି, ବର୍ତ୍ତମାନକୁ ବୁଝିବାକୁ ଚେଷ୍ଟା କରନ୍ତି ଏବଂ ସେହି ଅନୁସାରେ କାର୍ଯ୍ୟ କରିବାକୁ ଶୂନ୍ୟରେ ଚେଷ୍ଟା କରନ୍ତି, ସେମାନଙ୍କ ବିଚାର ଅରାଜକତାବାଦୀ କୁହାଯାଇପାରେ । ଏ ଦୃଷ୍ଟିକୋଣରୁ ଭଗବତୀଙ୍କୁ ବୁଝିବାକୁ ଓ ବିଚାର କରିବାର ଆବଶ୍ୟକତା ରହିଛି ।

୧୯୧୭ ନଭେମ୍ବର ୭ ତାରିଖ ଦିନ ଏକ ମହାନ୍ ଐତିହାସିକ କ୍ରାନ୍ତି ମଧ୍ୟରେ ସମାଜବାଦ ରାଷ୍ଟ୍ର ସୋଭିଏତ୍ ସଂଘର ସ୍ଥାପନା ହେଲା । ହୁଏତ ବର୍ତ୍ତମାନ ସୋଭିଏତ୍ ରାଷ୍ଟ୍ର ଭାଙ୍ଗି ଖଣ୍ଡ ବିଖଣ୍ଡିତ ହୋଇଯାଉଛି କିନ୍ତୁ ସେହି ମୁକ୍ତି ସଂଗ୍ରାମ ବିଶ୍ୱର ବିଚାରଧାରାକୁ ମୁହୂର୍ତ୍ତକ ମଧ୍ୟରେ ପରିବର୍ତ୍ତନ କରିଦେଲା, ଏହାକୁ କେହି ଅସ୍ୱୀକାର କରିପାରିବ ନାହିଁ । ସେହିଥିରୁ ଜନ୍ମଲାଭ କଲା କମ୍ୟୁନିଷ୍ଟ ପାର୍ଟି । ସ୍ଥାପନା ୨୬, ଡିସେମ୍ବର, ୧୯୨୫ ମସିହାରେ କାନପୁର ଠାରେ ହୋଇଥିଲା । ଓଡ଼ିଶାରେ ଏହାର ମୂଳଭିତ୍ତି ସ୍ଥାପନ କରିଥିଲେ ୧୯୩୬ ମସିହାରେ ସ୍ୱର୍ଗତ ଭଗବତୀ ଚରଣ ପାଣିଗ୍ରାହୀ, ସ୍ୱର୍ଗତ ପ୍ରାଣନାଥ ପଟ୍ଟନାୟକ ଓ ଗୁରୁଚରଣ ପଟ୍ଟନାୟକ ।

ବର୍ତ୍ତମାନ ଏକ ନୂତନ ସଭ୍ୟତାର ସୂର୍ଯ୍ୟ ପଶ୍ଚିମରେ ଉଦୟ ହେଲା, ଯାହା ଅତ୍ୟନ୍ତ ନାଗରୀୟ ପୁଞ୍ଜିବାଦୀ ଅର୍ଥ ବ୍ୟବସ୍ଥାକୁ ମୂଳରୁ ଉପାଡି ଫିଙ୍ଗିଦେଲା । ଏହି ସମାଜ ବ୍ୟବସ୍ଥାରେ ଯେଉଁ ସ୍ୱାଧୀନତା ରହିଛି, ଏହା ଦୁନିଆଁରେ କୌଣସି କୁହାଯାଉଥିବା ସଭ୍ୟ ଜାତି ମଧ୍ୟରେ ମଧ୍ୟ ନାହିଁ । ପୁଂଜିବାଦୀ ସଭ୍ୟତାକୁ ବିରୋଧ କରିବାକୁ ହେବ, ଜନସାଧାରଣଙ୍କୁ ବୁଝାଇବାକୁ ହେବ କାରଣ ଯାହା ସତ୍ୟ, ତାହାର ବିଜୟ ଦିନେ ନା ଦିନେ ହେବ ଏବଂ ନିଶ୍ଚୟ ହେବ । ଏହାଥିଲା ଭଗବତୀଙ୍କର ସ୍ପଷ୍ଟ ଓ ଦୃଢଧାରଣା । ସେଇ ଲକ୍ଷ୍ୟକୁ ଆଖିଆଗରେ ରଖି ସେ ମୁକ୍ତି ସଂଗ୍ରାମରେ, କୃଷକ ଆନ୍ଦୋଳନରେ, ଗଡଜାତ ପ୍ରଜାମେଳିରେ ସକ୍ରିୟ ଅଂଶଗ୍ରହଣ କରିବା ସହିତ ଚେତନାର ଉତ୍ତରଣ ପାଇଁ ସାହିତ୍ୟ ରଚନା ଓ ପତ୍ରିକା ସଂପାଦନା କାର୍ଯ୍ୟ ସୂଚାରୁ ରୂପେ ସଂପାଦନ କରିଥିଲେ ।

ଭଗବତୀ ପୁରୀ ଜିଲ୍ଲା କୁଶଭଦ୍ରା ନଦୀକୂଳଠାରୁ ଅଳ୍ପ ଦୂରରେ ବିଶ୍ୱନାଥପୁର ଗ୍ରାମରେ ୧୯୦୮ ମସିହା ଫେବୃୟାରୀ ୧ ତାରିଖରେ ଏକ ବୁଦ୍ଧିଜୀବୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଭଗବତୀଙ୍କର ବାପା ସ୍ୱପ୍ନେଶ୍ୱର ଥିଲେ ପୁରୀର ଆଇନଜୀବୀ, ତାଙ୍କର ବଡ଼ଭାଇନା ଦିବ୍ୟସିଂହ ପାଣିଗ୍ରାହୀ ଓ ମଝିଆ ଭାଇନା କାଳନ୍ଦୀଚରଣ । ପୁରୀ ଜିଲ୍ଲା ସ୍କୁଲରେ ପଢିବା ବେଳେ ଭଗବତୀଙ୍କର ଘନିଷ୍ଠ ହୋଇଥିଲେ ପ୍ରାଣନାଥ ପଟ୍ଟନାୟକ । ଅବଶ୍ୟ ପ୍ରାଣନାଥ ଉପର କ୍ଲାସରେ ପଢୁଥିଲେ । ଛାତ୍ର ଜୀବନରୁ ଭଗବତୀ ଜାତୀୟ ଆନ୍ଦୋଳନରେ ଉତ୍ସାହୀ ହୋଇଥିଲେ । ଭଗବତୀ ପାଟନାରୁ ଏମ୍.ଏ. ପାଶ୍‌କରି ରେଭେନ୍ସା କଲେଜରେ ଆଇନ୍ ଶ୍ରେଣୀରେ ଯୋଗ ଦେଲେ । ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ଭଗବତୀ ପାଟନା ଠାରେ ଅଧ୍ୟୟନ କାଳରେ ପୁଞ୍ଜିବାଦୀ, ନୈରାଜ୍ୟବାଦୀ, ସାମ୍ରାଜ୍ୟବାଦୀ ଚିନ୍ତାଧାରା ସଂପର୍କରେ ଅବଗତ ହୋଇଥିଲେ । ସ୍ୱାଧୀନତା ସଂଗ୍ରାମ କଂଗ୍ରେସ ନେତୃତ୍ୱରେ ଚାଲିଥାଏ କିନ୍ତୁ ଏହାକୁ ଏକ ଗଣଆନ୍ଦୋଳନର ରୂପ ଦେବା ପାଇଁ ଏଥିରେ କୃଷକ, ଶ୍ରମିକ, ଛାତ୍ର ଏବଂ ଯୁବକ ଓ ମହିଳାମାନଙ୍କର ଯୋଗଦାନକୁ ବ୍ୟାପକ କରିବା ପାଇଁ କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ଜନ୍ମଲାଭ କଲା । ୧୯୩୪ ମସିହାରେ ଆଚାର୍ଯ୍ୟ ନରେନ୍ଦ୍ର ଦେବ, ସଂପୂର୍ଣ୍ଣା ନନ୍ଦ ଓ ଜୟପ୍ରକାଶଙ୍କ ନେତୃତ୍ୱରେ ଭାରତରେ କଂଗ୍ରେସ ସୋସିଆଲିଷ୍ଟ ପାର୍ଟିର ଜନ୍ମ ଓ ଓଡ଼ିଶାରେ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ ଓ ସ୍ୱର୍ଗୀୟ ଭଗବତୀଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ ଓଡ଼ିଶା କଂଗ୍ରେସ ସୋସିଆଲିଷ୍ଟ ପାର୍ଟିର ଜନ୍ମ । ୧୯୩୪ ଜୁନ୍ ୫ ତାରିଖରେ କଟକଠାରେ ପ୍ରାଣନାଥ ପଟ୍ଟନାୟକଙ୍କ ସଭାପତିତ୍ୱରେ ପ୍ରଥମେ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ୧୯୩୬ରେ କୃଷକମାନଙ୍କୁ ସଂଗଠିତ କରି ଜମିଦାରୀ ପ୍ରଥାର ବିଲୋପ, ଚାଷୀଙ୍କୁ ଜମି, ବେଠି ବେଗାରୀ ଲୋପ, ମଠଧନ କୋଠ ହେଉ, ଗଛ ମାଛରେ ଚାଷୀର ଅଧିକାର ରହୁ ଆହ୍ୱାନରେ ଚାଷୀ ଆନ୍ଦୋଳନ ଗଢିଉଠିଲା ।





୧୯୩୬ ସେପ୍ଟେମ୍ବର ମାସରେ ପ୍ରଥମେ ଗୁରୁଚରଣ, ଅକ୍ଟୋବର ୩୦ ତାରିଖରେ ପ୍ରାଣନାଥ ଓ ଡିସେମ୍ବର ମାସରେ ଭଗବତୀ କଲିକତାଠାରେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହେଲେ ଓ ଓଡ଼ିଶା ଫେରି ଆସି ଏ ଦିଗରେ କାର୍ଯ୍ୟ ଆରମ୍ଭ କଲେ । ସେତେବେଳକୁ କମ୍ୟୁନିଷ୍ଟ ପାର୍ଟି ବେଆଇନ୍ । ଯେଉଁଦିନ ବ୍ରିଟିଶ୍ ସରକାର କମ୍ୟୁନିଷ୍ଟ ମାନଙ୍କୁ ଗିରଫ କରି କମ୍ୟୁନିଷ୍ଟ ଷଡଯନ୍ତ୍ର ମାମଲା ଆରମ୍ଭ କଲା, ସେଦିନ ପ୍ରକାଶ୍ୟରେ ଓଡ଼ିଶାର ଜନସାଧାରଣ କମ୍ୟୁନିଷ୍ଟ ପାର୍ଟିକୁ ଜାଣିଲେ । ତାହାଥିଲା ୧୦.୭.୧୯୪୦ । ଗୁରୁଚରଣ - ପ୍ରାଣନାଥ ଓ ଭଗବତୀଙ୍କୁ ନେଇ ଆରମ୍ଭ ହୋଇଥିବା କମ୍ୟୁନିଷ୍ଟ ପାର୍ଟିର ସଂପାଦକ ହେଲେ ଭଗବତୀ । ସେତେବେଳକୁ ମାର୍କ୍ସବାଦ ଦର୍ଶନରେ ଶାଣିତ ହୋଇଯାଇଥିଲେ ଭଗବତୀ । ୧୯୩୪ ମଇ ପହିଲାରେ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ ଓ ଭଗବତୀ ପ୍ରଭୃତିଙ୍କ ଉଦ୍ୟମରେ ଓଡ଼ିଶାର ପ୍ରଥମ ସମାଜବାଦୀ ପତ୍ରିକା ସାପ୍ତାହିକ 'ସାରଥୀ' ପ୍ରକାଶ ପାଇଲା ଓ ଏଥିରେ ଲେଖିଥିଲେ ଭଗବତୀ । ସାହିତ୍ୟକୁ ବାସ୍ତବତା ଭିତ୍ତିକ ଓ ସାମ୍ରାଜ୍ୟବାଦୀ ବିରୋଧୀ ସଂଗ୍ରାମଶୀଳ କରିବା ପାଇଁ ୨୯.୧୧.୩୫ରେ ଆରମ୍ଭ ହେଲା ନବଯୁଗ ସାହିତ୍ୟ ସଂସଦ ଓ ପ୍ରଗତିଶୀଳ ଲେଖକ ସଂଘ ।

ଛାତ୍ର ଜୀବନରୁ ଭଗବତୀଙ୍କ ସାହିତ୍ୟିକ ଜୀବନର ସ୍ଫୁରଣ ଘଟିଥିଲା । ସେ ଯୁଗବୀଣା, ଉତ୍କଳ ସାହିତ୍ୟ, ସହକାର, ନବଭାରତ, ପ୍ରଗତି ଆଦି ପତ୍ରିକାରେ ଜାତୀୟତାବାଦୀ ଶୀର୍ଷକ ଲେଖା ଲେଖୁଥିଲେ କିନ୍ତୁ ସମାଜବାଦ ନୀତି ପ୍ରତି ଆକୃଷ୍ଟ ହେବା ପରେ ତାଙ୍କ ସାହିତ୍ୟ ସାଧନାର ଗତିପଥ ପରିବର୍ତ୍ତନ ହେଲା । ସେ 'ସାରଥୀ', ଆଧୁନିକ କୃଷକ, ପ୍ରଗତି, ମୁକ୍ତିଯୁଦ୍ଧ ଇତ୍ୟାଦି ପତ୍ରପତ୍ରିକାରେ ଭାବଗର୍ଭକ ଓ ଚିନ୍ତାଦ୍ୟୋତକ ରଚନାମାନ ଲେଖୁଥିଲେ । ମାର୍କ୍ସବାଦୀ ଭାବଧାରାର ପ୍ରଥମ ପ୍ରବର୍ତ୍ତକ ଭାବରେ ସେ ଓଡ଼ିଆ ସାହିତ୍ୟରେ ଏକ ନୂତନ ସୋତ ଆଣିଦେଲେ । ସାହିତ୍ୟିକ ହିସାବରେ ଭଗବତୀ ଚରଣ ୧୩ ଗୋଟି ଗଳ୍ପ ଯଥା : ସମୟାତୀତ, ଜୀବନର ସମାଧି, ମିସ୍ତ୍ରିଙ୍କ କୋପ, ବଞ୍ଚିବା, ଜଙ୍ଗଲି, ମଜଲିସ୍, ଶିକାର, ମୃତ୍ୟୁର ବିବେଚନା, ଝଡ, ଆରମ୍ଭ ଓ ଶେଷ, ହାତୁଡି ଓ ଦା, ମୀମାଂସା ଓ ସ୍ୱୀକାରୋକ୍ତି ରଚନା କରିବା ସହିତ ଅଳ୍ପ କେତୋଟି କବିତା, ରାଜନୈତିକ ଓ ଅର୍ଥନୈତିକ ସମସ୍ୟା ଉପରେ କେତୋଟି ପ୍ରବନ୍ଧ, ସମାଲୋଚନାମୂଳକ କେତୋଟି ପ୍ରବନ୍ଧ ଓ ପତ୍ରପତ୍ରିକାର ସଂପାଦକ ହିସାବରେ ତାଙ୍କର ଲେଖା ପ୍ରକାଶିତ ହୋଇଥିଲା । ତାଙ୍କର ଏହି ଗଳ୍ପଗୁଡ଼ିକ ଭଗବତୀଚରଣ ଗଳ୍ପମାଳା ନାମରେ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଇଣ୍ଡିଆ ଦ୍ୱାରା ଏବେ ପ୍ରକାଶ ପାଇବ । ୧୯୩୬ ମସିହାରେ ଆଧୁନିକ ପ୍ରଥମ ସଂଖ୍ୟା ପ୍ରକାଶ ପାଏ । ଏହାର ସଂପାଦକୀୟରେ ଭଗବତୀ ସାହିତ୍ୟ ପ୍ରତିକାର ନୀତି ନିର୍ଦ୍ଧାରଣ କରିଲେଖିଥିଲେ, 'ସାହିତ୍ୟ ପତ୍ରପତ୍ରିକାମାନଙ୍କର ସାଧାରଣ ନୀତି ହେଉଛି ସାପ ମରିବ ନାହିଁ କିମ୍ବା ବାଡି ଭାଙ୍ଗିବ ନାହିଁ । ସାପ ସହିତ ସେମାନଙ୍କର କୌଣସି ସଂପର୍କ ନାହିଁ । ନିଜ ବାଡିଟି ବଜାୟ ରଖିବା ସେମାନଙ୍କର ଲକ୍ଷ୍ୟ । ଆଧୁନିକର କିନ୍ତୁ ତା' ନୁହେଁ । ବାଡି ଭାଙ୍ଗିଯାଉ ପଛେ ସାପ ମରୁ । ଏହାହିଁ ତାହାର ନୀତି । ବାଡି ଉଞ୍ଚେଇ ସାପକୁ ଘଉଡାଇ ଦେଲେ ଖାଲି ହେଲା ନାହିଁ, ସେ ଆଘାତ କରିବାକୁ ଚାହେଁ, ବାଡି ଭାଙ୍ଗୁ ଅବା ରହୁ । ଯେଉଁସବୁ ବଦ୍ଧମୂଳ ଧାରଣା ଓ ସଂସ୍କାର ମାନବର ସାମାଜିକ ତଥା ବ୍ୟକ୍ତିଗତ ଜୀବନକୁ ଆଛନ୍ନ କରି ରଖିଛି ତାହାର ମୂଳରେ ଏହାର ପ୍ରଧାନ ଆଘାତ । ୧୯୨୯ରେ ପ୍ରଥମେ ଭଗବତୀ ଜଙ୍ଗଲି ଗଳ୍ପ ଲେଖିଥିଲେ । ସେତେବେଳକୁ ଓଡ଼ିଆ ଗଳ୍ପ ସେତେବେଶି ପ୍ରସାରିତ ହୋଇନଥିଲା । ଫକୀରମୋହନଙ୍କ ସାମାଜିକ କୁସଂସ୍କାର ଓ ଦୋଷ ଦୁର୍ବଳତା ଉପରେ ମାତ୍ର ସାମାନ୍ୟ ଆଘାତ କରିଥିଲେ । ଭଗବତୀ ଏହାକୁ ଲକ୍ଷ୍ୟ କରି କହିଥିଲେ, ଆଧୁନିକ ଅର୍ଥରେ ଯାହାକୁ କଥା ସାହିତ୍ୟ କୁହାଯାଏ, ଓଡ଼ିଶାରେ ତାହା ନାହିଁ, ଭାରତ ବର୍ଷରେ ମଧ୍ୟ ବିରଳ । ଉଚ୍ଚଧରଣର କଥାସାହିତ୍ୟ ଏ ଦେଶରେ ଉଦ୍ଭବ ନହେବାର କାରଣ - ଦେଶବାସୀଙ୍କ ଜୀବନ ଏକାବେଳକେ ବୈଚିତ୍ର୍ୟହୀନ, ନିଷ୍ଫଳ, ଚଞ୍ଚଳ, ଧାରାବାହିକ ଭାବେ ଜୀବନ ଯାପନ କରିବାରୁ ଆମ୍ଭମାନଙ୍କ ଜୀବନ ଘଟଣାବହୁଳ ନୁହେଁ । ସେଥିପାଇଁ କଥା ସାହିତ୍ୟ ପାଇଁ ଉପକରଣ ଏ ଦେଶରେ ଅତିକମ୍ । ଡକ୍ଟର ନିତ୍ୟାନନ୍ଦ ଶତପଥୀ ତାଙ୍କର ଗଳ୍ପ ସଂପର୍କରେ ଲେଖିଛନ୍ତି, ୧୯୨୯ରେ ଉତ୍କଳ ସାହିତ୍ୟରେ ପ୍ରକାଶିତ ତାଙ୍କର ଜଙ୍ଗଲି ଗଳ୍ପ ଯଦି ତାଙ୍କର ପ୍ରଥମ ପ୍ରକାଶିତ ସଫଳ ଗଳ୍ପ ହୁଏ, ତେବେ ଏହାର ସିଦ୍ଧି ତାଙ୍କ କ୍ଷୋଭର ପରିପୂର୍ତ୍ତି ପାଇଁ ଏକ ସଚେତନ ଉଦ୍ୟମ ବୋଲି କହିବାରେ ଆମକୁ କୁଣ୍ଠା ନାହିଁ । ଏତ କେବଳ ଗଳ୍ପଟିଏ ମାତ୍ର ନୁହେଁ, ଫ୍ରଏଡ୍ ପ୍ରମାଣିତ ଯୌନ ମନସ୍ତତ୍ତ୍ୱର ଏକ ଚମତ୍କାର ଝଲକ ବୋଲି କହିବାକୁ ହେବ । ଗୋଟିଏ କଞ୍ଚା ହାତରୁ ଏତେ ପାକଳ ଓ ସଫଳ ଗଳ୍ପ କିପରି ଉତ୍ତୁରିପାରେ, ଏହାତ ଏକାନ୍ତ ବିସ୍ମୟର କଥା । ଏପରି ଗଳ୍ପଟିଏ ପଛରେ କେତେ ସାଧନା ଓ ଅଧ୍ୟୟନ ରହିଛି, ତାହା ଏଠାରେ ପ୍ରମାଣ କରିବାକୁ ଆମ ହାତରେ ଯଥେଷ୍ଟ ଉପାଦାନ ନାହିଁ ।

ଭଗବତୀ ଚରଣଙ୍କର ଗଳ୍ପରୁ ଦୁନିଆ ସାଧାରଣ ମଣିଷର ଦୁନିଆ । ସେ ସମାଜରେ ଘଟୁଥିବା ପରିବର୍ତ୍ତନକୁ ଅତି ନିବିଡ ଭାବରେ ଲକ୍ଷ୍ୟକରି ଯେଉଁମାନେ ସେହି ପରିବର୍ତ୍ତନର ସ୍ରୋତକୁ ଅବରୁଦ୍ଧ କରିବେ, ସେମାନେ ସମାଜର ଶତ୍ରୁ ବୋଲି ସେ ବିବେଚନା କରିଛନ୍ତି । ତାଙ୍କର ଦ୍ୱିତୀୟ ଗଳ୍ପ ଜୀବନର ସମାଧି ସହକାରର ୧୩୩୯ ସାଲ୍ ୮ମ





ସଂଖ୍ୟାରେ ପ୍ରକାଶ ପାଇଥିଲା । ପୁଞ୍ଜିବାଦୀ ସମାଜରେ ଶ୍ରମିକର ଶ୍ରମକୁ କିପରି ଭାବରେ ମାଲିକ ଶ୍ରେଣୀ ଶୋଷଣ କରନ୍ତି, ତାହାର ଚିତ୍ର ଏହି ଗଳ୍ପର ଉପାଦାନ ।

ଭଗବତୀ ଚରଣଙ୍କର ଯୁଗାନ୍ତକାରୀ ଗଳ୍ପ 'ଶିକାର' । ଏହି ଗଳ୍ପ ମାଧ୍ୟମରେ ଦଳିତ ଓ ଅତ୍ୟାଚାରିତ ହେଉଥିବା ଲୋକମାନଙ୍କ ମଧ୍ୟରେ ସେ ଦୃଢ଼ ଆତ୍ମବିଶ୍ୱାସ ଓ ଶୋଷଣ ବିରୋଧରେ ସଂଗ୍ରାମ କରିବାକୁ ଆହ୍ୱାନ ଦେଇଛନ୍ତି । ଭଗବତୀଙ୍କ ଗଳ୍ପର ନାୟକ ନାୟିକାମାନେ ସମାଜର ସବୁଠାରୁ ନିମ୍ନବର୍ଗର ଲୋକ । ଶିକାର ଗଳ୍ପର ଘିନୁଆ, ଝଡରେ କୃଷକ ପଲ୍ଲୀର ଧୀବର, ଆରମ୍ଭ ଓ ଶେଷରେ ଧରମା ଆଉ ମଣି, ହାତୁଡ଼ି ଓ ଦାରେ ଜାହାଜର ଖଲାସୀ ସୁଦାମ ଏମାନେ ସମାଜର ଅବହେଳିତ, ନିଷ୍ପେସିତ ଓ ନିର୍ଯାତିତ । ଶିକାର ଗଳ୍ପରେ ଘିନୁଆର ସଂଗ୍ରାମୀ ଚିତ୍ର ପରିସ୍ଫୁଟ ହୋଇଥିଲା । ନଟବର ସାମନ୍ତରାୟ ଶିକାର ଗଳ୍ପ ସଂପର୍କରେ ଆଲୋଚନାକରି ଲେଖିଥିଲେ, ମାସକ ତଥା ଶୋଷଣର ଅବସାନ, ଆତ୍ମବିଶ୍ୱାସ ତଥା ବ୍ୟକ୍ତି ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା ଭିତରେ ଭାଗ୍ୟ ପୁରୋହିତଙ୍କୁ ଅସ୍ୱୀକାର ଶ୍ରେଣୀହୀନ ସମାଜ ସ୍ଥାପନ ଭିତରେ ବ୍ୟକ୍ତିର ଯଥାର୍ଥରେ ବ୍ୟକ୍ତିତ୍ୱ ତଥା ମାନବିକତାକୁ ସମ୍ମାନ ପ୍ରଦର୍ଶନ ସ୍ଥୂଳତଃ ବ୍ୟକ୍ତି ଜୀବନର ବଳିଷ୍ଠ ଅଭିବୃଦ୍ଧି ଓ ସହଜ ପରିପ୍ରକାଶ ପାଇଁ ସାମାଜିକ ତଥା ରାଜନୈତିକ ବିଧି ବ୍ୟବସ୍ଥାର ପୂର୍ଣ୍ଣ ସଂଗଠନ ।

ଏ ନୂତନ ରାଜନୈତିକ ଚିନ୍ତାଧାରା ପୃଥିବୀର ସାହିତ୍ୟ ଭିତରେ ଧରାଦେଇ ୧୯୩୫/୩୬ ସାଲ୍ ବେଳକୁ ଓଡ଼ିଶାକୁ ଆସିଲା ଶୋଷଣ ସତ୍ୟ, ଏ ଶୋଷଣର କାରଣ ହେଉଛି ଦେଶର ଧନୀକ ଓ ପୁରୋହିତ ଶ୍ରେଣୀ ଧନୀକ ଓ ପୁରୋହିତର ବିଲୟରେ ଶୋଷଣର ବିନାଶ ତଥା ବ୍ୟକ୍ତି ସ୍ୱାତନ୍ତ୍ରର ପ୍ରତିଷ୍ଠା - ଏ ମତବାଦ ଭିତରୁ ପ୍ରଥମଟି ଅର୍ଥାତ୍ ଶୋଷଣର ସତ୍ୟତା କେବଳ ୧୯୩୬ ସାଲ୍ ପୂର୍ବେ ଓଡ଼ିଆ ସାହିତ୍ୟରେ ଦେଖାଦେଇଥିଲା । କିନ୍ତୁ ଦ୍ୱିତୀୟଟି ଅର୍ଥାତ୍ ଶୋଷଣର କାରଣ ଯେ, ଦେଶର ଧନିକ ଓ ପୁରୋହିତ ଶ୍ରେଣୀ, ତାହା ସ୍ପଷ୍ଟତ କେଉଁଠି ଘୋଷିତ ହୋଇନଥିଲା । ତୃତୀୟ ଅର୍ଥାତ୍ ଶୋଷଣର ଅବସାନ ତଥା ବ୍ୟକ୍ତି ସ୍ୱାତନ୍ତ୍ରର ପ୍ରତିଷ୍ଠା ଏ ସାହିତ୍ୟରେ ଥିଲା ସଂପୂର୍ଣ୍ଣ ସ୍ୱପ୍ନ । ଘିନୁଆ ଜୀବନ ସମନ୍ୱିତ ଶିକାର ଗଳ୍ପରେ ଉପରୋକ୍ତ ତିନୋଟି ସତ୍ୟର ଚିତ୍ର ସ୍ପଷ୍ଟ ଅଙ୍କିତ । ଘିନୁଆର ବିଚାରଧାରାରେ ଜୀବନର ଏକ ନୂତନ ମୂଲ୍ୟବୋଧ ସ୍ୱତଃ ପ୍ରକଟିତ ଓ ପ୍ରତିଷ୍ଠିତ ।

ଭଗବତୀ ଚରଣଙ୍କର ସାହିତ୍ୟ କେବଳ ସାହିତ୍ୟ ପାଇଁ ଉଦ୍ଦିଷ୍ଟ ନଥିଲା । ତାଙ୍କ ସାହିତ୍ୟର କେନ୍ଦ୍ରବିନ୍ଦୁ ଥିଲା ସମାଜ ଓ ଜୀବନ । ହିନ୍ଦୀ ସାହିତ୍ୟରେ ପ୍ରେମଚାନ୍ଦଙ୍କ ଠାରୁ ଆରମ୍ଭ ହୋଇଥିବା ପ୍ରଗତିଶୀଳ ଧାରାର ସଫଳ ପ୍ରବର୍ତ୍ତକ ଭଗବତୀ ଚରଣଙ୍କର ଗଳ୍ପର ଶୈଳୀ ଓ ଆଙ୍ଗିକ ମାର୍କସୀୟ ଦ୍ୱନ୍ଦ୍ୱବାଦ । ଭଗବତୀଚରଣଙ୍କ ଶିକାର ଗଳ୍ପ ଉପରେ ଆଧାରିତ ମୃଗୟା ଚଳଚ୍ଚିତ୍ର ବାସ୍ତବ ଭାବରେ ଶ୍ରେଣୀ ଚେତନାକୁ ପ୍ରତିଫଳିତ କରିପାରିନି ।

ଭଗବତୀଙ୍କର ଅନ୍ୟ ଏକ ଗଳ୍ପ ହାତୁଡ଼ି ଓ ଦା'ର କଲିକତାରେ ରହୁଥିବା ଓଡ଼ିଆ ଶ୍ରମିକ ମାନଙ୍କର ଚିତ୍ର ଅତ୍ୟନ୍ତ ବାସ୍ତବବାଦୀ ରୀତିରେ ପରିବେଷିତ ହୋଇଛି । ମହାଜନ ଓ ସାହୁକାରମାନଙ୍କର ଉତ୍ପୀଡ଼ନରେ ଭିଟାମାଟି ଛାଡ଼ି ଏମାନେ ପଳାଇ ଆସିଛନ୍ତି କଲିକତା ଜୀବିକାର ସନ୍ଧାନରେ । କିନ୍ତୁ ଶୋଷଣର ମାଙ୍କଡଶା ଜାଲ ବୁଣି ହୋଇଯାଇଛି ସବୁଠୁ - ଗାଆଁଠାରୁ ଆରମ୍ଭ କରି ସୁଦୂର କଲିକତା ପର୍ଯ୍ୟନ୍ତ । ଶ୍ରମିକ ଶୋଷଣର ଚିତ୍ର ଓ ବାସ୍ତବତାର ଦ୍ୱନ୍ଦ୍ୱ ମଧ୍ୟରେ ଭଗବତୀଙ୍କର ଗଳ୍ପ ଓଡ଼ିଆ ସାହିତ୍ୟରେ ଅନନ୍ୟ । କମ୍ୟୁନିଷ୍ଟ ଷଡଯନ୍ତ୍ର ମାମଲାରେ କଟକ ଓ ଅନୁଗୁଳ ଜେଲ୍‌ରେ ବନ୍ଦୀ ଥିବାବେଳେ ସେ ଲେଖିଥିଲେ, ବିଶ୍ୱ ଡିହାସ । ଯାହାର ପାଣ୍ଡୁଲିପିଟି ଲୋକଲୋଚନକୁ ଆସିପାରି ନାହିଁ । ଭଗବତୀଚରଣଙ୍କ ଗଳ୍ପ ବ୍ୟତୀତ ତାଙ୍କର ଆଧୁନିକ ପତ୍ରିକାର ୬ଟି ସଖ୍ୟାରେ ସଂପାଦକୀୟ, ଅର୍ଥ ଓ ପାରମାର୍ଥ, ସାହିତ୍ୟରେ ଯୁବକ, ସାହିତ୍ୟରେ କଳାବୈଚିତ୍ର୍ୟ ଇତ୍ୟାଦିରୁ ତାଙ୍କ ପ୍ରଗତିଶୀଳ ଦୃଷ୍ଟିକୋଣ ମଧ୍ୟ ଜଣାପଡେ ।

ଭଗବତୀ ଥିଲେ ସମାଜବାଦୀ ବାସ୍ତବବାଦ କ୍ରାନ୍ତିକାରୀ ସାରସ୍ୱତ ଚିନ୍ତାର ଭଗୀରଥ । ଦୁଃଖ, ଦୈନ୍ୟ, ଅତ୍ୟାଚାର ଓ ନିର୍ଯାତନା ମଧ୍ୟରେ ସେ ଦେଖାଇଥିଲେ ନିଜ ବୁଦ୍ଧିର ବିଚକ୍ଷଣ, ଚିନ୍ତାର ଗଭୀରତା, ପ୍ରକାଶ ଭଙ୍ଗୀର ସ୍ୱଚ୍ଛତାର ତୀବ୍ରତା ଓ ସଂଗ୍ରାମ ପାଇଁ ଅହରହ ଉଦ୍ୟମ । ଅନାଟନ ଓ ଅନାହାରରେ ମାତୃଭୂମିର ମୁକ୍ତିଲାଗି ଆତ୍ମହରା ହୋଇ କାର୍ଯ୍ୟ କରିବା ସମୟରେ ଖାଦ୍ୟ ଓ ଚିକିତ୍ସାର ଅବହେଳାରୁ ଭଗବତୀଙ୍କର ଅକାଳରେ ମୃତ୍ୟୁ ଏ ଜାତିର ଅପୂରଣୀୟ କ୍ଷତି । ୧୯୪୩ ଅକ୍ଟୋବର ୨୩ ତାରିଖରେ ଭଗବତୀ ଏହି ମହାନାୟକ, ପ୍ରଗତିଶୀଳ ଚିନ୍ତା ଓ ଚେତନାର ବାର୍ତ୍ତାବହଙ୍କର ଜୀବନାବସାନ ଘଟିଲା । ତାଙ୍କର ସଂଗ୍ରାମ ଏବେବି ସଂପୂର୍ଣ୍ଣ ହୋଇନାହିଁ । ଏବେ ବି ସାମ୍ରାଜ୍ୟବାଦ ଚକ୍ରାନ୍ତର ଘେରରେ ଭାରତର କୋଟି କୋଟି ନରନାରୀ ସନ୍ତୁଳିତ ଓ ଜର୍ଜରିତ । ଅନାହାର, ଅର୍ଦ୍ଧାହାରରେ ଏବେ ବି ଓଡ଼ିଶାର ଲକ୍ଷ ଲକ୍ଷ ଲୋକ ପୀଡ଼ିତ । ଏବେ ବି କୃଷକ ଆତ୍ମହତ୍ୟା କରେ, ଶ୍ରମିକ କାମ ନପାଇ ଦାଦନ ଶ୍ରମିକ ହୁଏ, ନାରୀ ଶୋଷଣର ଶିକାର ହୁଏ । ଫରକ୍ କେବଳ ଏତିକି, ସେତେବେଳେ ଭାରତ ଥିଲା ପରାଧୀନ, ଏବେ କିନ୍ତୁ ସ୍ୱାଧୀନ । କିନ୍ତୁ ଏଇ ସ୍ୱାଧୀନ ଭାରତରେ ଭଗବତୀଙ୍କ ପରି ମହାନ୍ ସଂଗ୍ରାମୀଟିଏ ମିଳିବା କେବଳ କଷ୍ଟକର ନୁହେଁ ବରଂ ଦୁଃସାଧ୍ୟ । ତାଙ୍କ ଜନ୍ମ ଶତବାର୍ଷିକୀରେ -

ଭଗବତୀ ! ! ତୁମେ ଭଗବତୀ !

ତୁମ ପାଇଁ ଝରିଯାଏ ଏ ଜାତିର ଅଶେଷ ପ୍ରଣତି ।







# ଇତିହାସର ଆୟୁଧ ଭଗବତୀ

- ଦିବାକର ନାୟକ

ସେ ଆସିଥିଲେ ଆଜିକୁ ଠିକ୍ ଶହେ ବର୍ଷ ତଳେ । ବଞ୍ଚିଥିଲେ ତାଙ୍କୁ ଶହେ ବର୍ଷ ପୂର୍ଣ୍ଣ ହୋଇଥାଆନ୍ତା । କିନ୍ତୁ ସେ ବିଦାୟ ନେଇଗଲେ ମାତ୍ର ୩୫ ବର୍ଷ ବୟସରେ । ମାନବ ସଭ୍ୟତାର ପଞ୍ଜିକାରେ ଶହେ ବର୍ଷ ହୁଏତ କିଛିନୁହେଁ, କିନ୍ତୁ ଶ୍ରେଣୀ ସଂଗ୍ରାମର ପଞ୍ଜିକାରେ ଅନେକ ବେଶି । ସେ ଆସିଥିଲେ ଓଡ଼ିଶା ମୂଲକକୁ ଶ୍ରେଣୀ ସଂଗ୍ରାମର ଏକ ନିର୍ଦ୍ଦିଷ୍ଟ ପର୍ଯ୍ୟାୟରେ । ସେ ଆସିଥିଲେ ନୁହେଁ, ତାଙ୍କୁ ଆସିବାକୁ ପଡିଥିଲା ଇତିହାସର ଆୟୁଧ ହୋଇ । ଇତିହାସର ଆବଶ୍ୟକତାକୁ ପୂରଣ କରିବା ପାଇଁ ନିର୍ଦ୍ଦିଷ୍ଟ ସମୟରେ ଭଗୀରଥମାନଙ୍କୁ ଏମିତି ଆସିବାକୁ ହୁଏ ।

ସେ ଆସିଥିଲେ ଓଡ଼ିଶା ମାଟିରେ କମ୍ୟୁନିଜମ ବୀଜ ବପନ କରିବା ପାଇଁ । ଏହା ବ୍ୟତୀତ ତାଙ୍କର ଆଉ ଅନ୍ୟ ଉପାୟନଥିଲା, କାରଣ କମ୍ୟୁନିଜମ୍ ଯେଉଁ ଶ୍ରେଣୀର ଚିନ୍ତାଧାରା, ସେଇ ଶ୍ରେଣୀ ସେତେବେଳକୁ ଯେତେ କମ୍ ସଂଖ୍ୟାରେ ହେଲେ ମଧ ଓଡ଼ିଶାରେ ଭୂମି ହୋଇସାରିଥିଲା । ସେ ଖୋଜୁଥିଲା ଜଳ ଓ ଆଲୋକ ବିକାଶ ଲାଭ କରିବା ପାଇଁ । ତେଣୁ ଯୁଗସ୍ରଷ୍ଟା ଭଗବତୀ ୧୯୩୫ ମସିହାରେ ତାଙ୍କର ହାତଗଣତି କେତେଜଣ ଯୁବସାଥୀଙ୍କୁ ନେଇ 'ନବଯୁଗ ସାହିତ୍ୟ ସଂସଦ' ପ୍ରତିଷ୍ଠା ଓ ଓଡ଼ିଆ ସାହିତ୍ୟରେ ମାର୍କ୍ସବାଦୀ ଚିନ୍ତନର କେବଳ ପ୍ରବର୍ତ୍ତନ କରିନଥିଲେ; ସହଯୋଦ୍ଧା ଗୁରୁଚରଣ ଓ ପ୍ରାଣନାଥଙ୍କୁ ସାଥିରେ ନେଇ ମାତ୍ର ୩ ଜଣ ଯୁବକ ଓଡ଼ିଶା ମାଟିରେ ୧୯୩୬ରେ କମ୍ୟୁନିଷ୍ଟ ପାର୍ଟିର ବୀଜ ବପନ କରିଥିଲେ । ସେ ବୁଝିଥିଲେ, ଏହି ବୀଜ ମଧରେ ଦ୍ରୁମ ନିହିତ ଅଛି ଏବଂ ଜଳ ଓ ଉତ୍ତାପ ପାଇଲେ ମାଟି ସହିତ ବୀଜର ସଙ୍ଘର୍ଷ ଅନିବାର୍ଯ୍ୟ । ଏହି ସଂଘର୍ଷର ପରିଣାମ ସ୍ୱରୂପ ମାଟିକୁ ବିଦୀର୍ଣ୍ଣ କରି ବୀଜ ନିଶ୍ଚିତ ଭାବରେ ଅଙ୍କୁରିତ ହେବ ଏବଂ ସୂର୍ଯ୍ୟର ଆଲୋକରେ ଦିନେ ପରିଣତ ହେବ ମହାଦ୍ରୁମରେ ।

ହଁ, ଭଗବତୀଙ୍କର ସୀମିତ ଜୀବନ କାଳରେ ସେ ବୀଜ ଅଙ୍କୁରିତ ହୋଇଥିଲା । କେବଳ ଅଙ୍କୁରିତ ନୁହେଁ, ୧୯୩୬ ରୁ ୧୯୪୩ ମାତ୍ର ଏହି ସାତ ବର୍ଷ ମଧରେ ଏହା ପଲ୍ଲବିତ ହୋଇଥିଲା, ଶାଖା ପ୍ରଶାଖା ମେଲିଥିଲା ଶ୍ରମିକ, କୃଷକ ଓ ଗଡଜାତ ପ୍ରଜା ଆନ୍ଦୋଳନର ଆଗ୍ନେୟ ନିଃଶ୍ୱାସରେ । ସେଇ ପୁରା ବୃକ୍ଷର କଅଁଳ ପତ୍ରର ପରଶରେ ଅତ୍ୟାଚାରୀ ପ୍ରବଳ ପ୍ରତାପୀ ଢେଙ୍କାନାଳ ରାଜ ଜ୍ୱରରେ ପ୍ରକମ୍ପିତ ହେଉଥିଲା, ପ୍ରଳାପ ମଧ କରୁଥିଲା ଏବଂ ପୌଷପୂର୍ଣ୍ଣିମାର ରାତ୍ରିରେ ରଣପୁର ହାଟ ଗୁଳିରେ 'ବାୟୋଷ୍ଟିକ୍' ପ୍ରହାରରେ ମହାମହିମ ଇଂରେଜ୍ ସରକାରର ପ୍ରତିନିଧି ପଲିଟିକାଲ ଏଜେଣ୍ଟ ବେଜେଲ୍ ଗେଟ୍‌ର ପ୍ରାଣବାୟୁ ଉଡିଯାଇଥିଲା ।

ଭଗବତୀଙ୍କର ଜନ୍ମ ଓ ବିଦାୟ ଏବଂ ବର୍ତ୍ତମାନ - ଏହାରି ମଧରେ ଅନେକ । ବଦଳିଛି ସମୟ, ବଦଳିଛନ୍ତି ଶାସକ ଓ ଶୋଷକ କିନ୍ତୁ ବଦଳିନାହିଁ ସେମାନଙ୍କର ଚରିତ୍ର ଓ ଖଟିଖିଆ ମଣିଷର ଦୈନ୍ୟ । ସେଦିନ ପରାଧୀନ ଓଡ଼ିଶାରେ ଆର୍ତ୍ତମଣିଷର ହାହାକାରରେ ଏ ଜାତିର ଜୀବନ ମ୍ରିୟମାଣ ହୋଇପଡୁଥିଲା । ଆଜି ସ୍ୱାଧୀନତାର ୬୦ ବର୍ଷ ପରେ ଓଡ଼ିଶାର ଆର୍ତ୍ତମଣିଷ ପେଟ ବକଲରେ ଆମ୍ବ କୋଇଲି ଖାଉଛି; କେ.ବି.କେ. ଅଞ୍ଚଳର ମାଆ ଅତଫାଡି ଜନ୍ମ ଦେଇଥିବା ଶିଶୁକୁ କୁକୁଡା ଦରରେ ବିକ୍ରି କରୁଛି; ଜାତୀୟ ନମୁନା ସର୍ଭେର ୬୧ ତମ ରିପୋର୍ଟ ଅନୁଯାୟୀ ଓଡ଼ିଶାର ୮ଟି ଜିଲ୍ଲାରେ ବିଶ୍ୱର ସବୁଠାରୁ ଦରିଦ୍ରତମ ଲୋକେ ବାସ କରୁଛନ୍ତି ।

ସେଦିନ ଦରିଆପାରିର ଶାସକ ଏ ଦେଶର ସଂପଦକୁ ନିଜ ଦେଶକୁ ବହିନେଇ ମୁନାଫାର ପାହାଡ ଗଢୁଥିଲା । ଆଜି ଏ ରାଜ୍ୟର ଶାସକ ଶିଳ୍ପାୟନ ନାଁରେ ଦେଶୀ-ବିଦେଶୀ କମ୍ପାନୀମାନଙ୍କୁ ଡାକିଆଣି, କୋଟି କୋଟି ବର୍ଷର ପ୍ରାକୃତିକ ପ୍ରକ୍ରିୟାରେ ସୃଷ୍ଟି ହୋଇଥିବା ଖଣିଜ ସଂପଦକୁ ସେମାନଙ୍କ ହାତରେ ଟେକିନେଇ, ରତ୍ନଗର୍ଭା ଓଡ଼ିଶାରେ କଳାକନା ବୁଲାଇବା ସହିତ ଏ ଜାତିର ବଂଶଧରମାନଙ୍କ ଭବିଷ୍ୟତକୁ ଅନ୍ଧକାରର ଆତଳ ଗହ୍ୱର ମଧକୁ ଠେଲିଦେବାକୁ ବସିଛି ଏବଂ ତାର ଚେଲାଗୁଣ୍ଡାମାନେ ଓଡ଼ିଶାକୁ ଦୁର୍ନୀତିର ଅଭୟାରଣ୍ୟରେ ପରିଣତ କରିଦେଇଛନ୍ତି । ସେଦିନ ସାଲାଇନ୍ ଓ ଉନ୍ନତ ମାନର ଔଷଧ ନପାଇ ଭଗବତୀ ମୃତ୍ୟୁବରଣ କରିଥିଲେ ବୋଲି ଆମେ ଶୁଣିଥିଲୁ । ଆଜି ବିଜ୍ଞାନରର ଅତ୍ୟାଧୁନିକ ଯୁଗରେ ଗୋଟିଏ ଜିଲ୍ଲାରେ ଗୋଟିଏ ମାସରେ ହଜାରେ ରୁ ଊର୍ଦ୍ଧ୍ୱ ଲୋକ ହଇଜାରେ ମରିଛନ୍ତି । ଔଷଧ ଓ ସାଲାଇନ୍ ସବୁ ନକଲି । ୫୦ଟି ସାଲାଇନ୍ ପରେ ବି ରୋଗୀ ମରୁଛି । ଦେଶୀ-ବିଦେଶୀ କମ୍ପାନୀ ଓ ମୃତ୍ୟୁ ବେପାରୀ ମାନଙ୍କଠାରୁ ଶହ ଶହ କୋଟି ଙ୍କା ଲାଞ୍ଚ ନେଇଥିବା ଶାସକ "ନିର୍ମଳ ଭାବ ମୂର୍ତ୍ତି"ର ମହାନ୍ ଅବତାର ବୋଲି ଅହୋରାତ୍ର ପ୍ରଚାର ଚାଲିଛି ।

ଅନ୍ୟପକ୍ଷରେ "ମହାନ୍ ଶାସକ"ଙ୍କ ସହଯୋଗୀମାନେ ସର୍ବଧର୍ମ ସମନ୍ୱୟର ପବିତ୍ର ଭୂଇଁ ଓଡ଼ିଶାରେ ସାଂପ୍ରଦାୟିକତାର ବିଷମଞ୍ଜି ବୁଣି, ଦଙ୍ଗା ଓ ରକ୍ତପାତର ଘୋଷଯାତ୍ରା ଜରୀଆରେ ନିଜ ବିଧାୟକ ଓ ସାଂସଦ ସଂଖ୍ୟାରେ ମେଦବୃଦ୍ଧି ପାଇଁ ବୀଭତ୍ସ ଉଦ୍ୟମ ଚଳାଇଛନ୍ତି ।

ଏ ଜାତିର ଏଭଳି ସଂକଟଜନକ ସମୟରେ ଓଡ଼ିଶାର ଭବିଷ୍ୟତକୁ ରକ୍ଷା କରିବା ପାଇଁ ସମସ୍ତ ବାମପନ୍ଥୀ ଓ ଗଣତାନ୍ତ୍ରିକ ଶକ୍ତି ଐକ୍ୟବଦ୍ଧ ହେବାର ଐତିହାସିକ ଆବଶ୍ୟକତା ସାଙ୍ଗକୁ ଭଗବତୀଙ୍କ ଦ୍ୱାରା ରୋପିତ ବୃକ୍ଷକୁ ଦ୍ରୁମରେ ପରିଣତ କରିବା ସକାଶେ ସଂକଳ୍ପବଦ୍ଧ ହୋଇ କର୍ତ୍ତବ୍ୟ ସଂପାଦନ କରିବା ହେଉଛି ଜନ୍ମଶତବାର୍ଷିକୀର ଆହ୍ୱାନ ।



ଛତ୍ରପୁର ବ୍ଲକର ସମୁହ
ଉନ୍ନତି ଓ ବିକାଶ ପଥରେ

# ସ୍ୱର୍ଗତ ଭଗବତୀ ପାଣିଗ୍ରାହିଙ୍କ

ଶତବାର୍ଷିକ ଉତ୍ସବରେ ଶୁଭେଛା - ୨୦୦୮



ସୁର ରଂଜନ ଶତପଥି
ବି.ଡି.ଓ.
ଛତ୍ରପୁର ପଞ୍ଚାୟତ ସମିତି

ଏନ୍. ସିମାଞ୍ଚଳ ରେଡି
ଅଧକ୍ଷ୍ୟ,
ଛତ୍ରପୁର ପଞ୍ଚାୟତ ସମିତି

# REHABILITATION: HUMAN TOUCH (CSR)




7000 jobs to Land Oustees, Pucca Roads, Water supply, Schools, Shopping Centre, Worship Centre, Dispensary, Veterinary Centre, Post Office, Community Centre, Electricity ... etc. at Rehabilitation Sites






















**MCL bringing Smile in Every hut...** महानदी

Printed & Published by : Bhagabati Birth Centenary Committee, DTP : Vikash Graphics, Cover Design : Com. Satish, Printed at : Shree Nilakhanta Printers, BBSR

ସହଯୋଗ ରାଶି : ଟ.୨୫/-